ପ୍ରକାଶକ
**ଶ୍ରୀ ଅନନ୍ତ ମିଶ୍ର, ପ୍ରୋପ୍ରାଇଟର**
**କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର**
ବାଲୁବଜାର, କଟକ—୨

ପ୍ରଥମ ସଂସ୍କରଣ
ନଭେମ୍ବର, ୧୯୬୫

ମୁଦ୍ରାକର
**ଶ୍ରୀ କିଶୋରଚନ୍ଦ୍ର ମିଶ୍ର**
କବିତା ପ୍ରେସ, କଟକ-୧

**ପାଞ୍ଚ ଟଙ୍କା ମାତ୍ର**

## ନିଜ କଥା

ଆଜ ଏତେ ଦିନ ପରେ "ଶ୍ରୁତି ସଞ୍ଚୟନ" ବାହାରିଲା । ଯେଉଁମାନେ ଲେଖାସବୁ ସଙ୍କଳନ କରି ଛାପନ୍ତି ସେମାନେ ଏହା ଦେଖି ହୁଏତ କହିବେ ଅନ୍ୟମାନଙ୍କର କେତେକ ଲେଖା ସଙ୍କଳନ କରି ମୁଁ ଛାପିଛି । ବେଦ ବେଦାନ୍ତ କଥା ଶୁଣିଥିବା ବ୍ୟକ୍ତିମାନେ ହଠାତ୍ ଧରି ନେଇ ପାରନ୍ତି ଯେ ଶ୍ରୁତି ବା ବେଦରୁ କେତେଗୁଡ଼ିଏ ଅଂଶ ଓଡ଼ିଆରେ ଅନୁବାଦ କରି ମୁଁ ସଙ୍କଳନ କରିଛି । ଅନ୍ୟ କେହି କେହି ପାଠକ ଲୋକ ରଚନାର କୌଶଳ ଦୃଷ୍ଟିରୁ ବିଚାର କରିପାରନ୍ତି; କିନ୍ତୁ ମୋର ବାଉଳିଆ ଜୀବନ ଭିତରେ ଯେଉଁଠି ଯେଉଁ କଥା ଶୁଣିଥିଲି ତାର ଭିତରୁ କେତୋଟି ବଛା ବଛା ଘଟଣାକୁ ଏଥିରେ ରୂପ ଦେଇଛି ମାତ୍ର ।

ଆଜିକାଲି ଯୁଗରେ ଲୋକ-ସାହିତ୍ୟ ଖୁବ୍ ମୁଣ୍ଡ ଟେକି ଉଠିଛି । ଜୀବନ ଜଞ୍ଜାଳମୟ ହୋଇଯାଉଛି । ଆଉ ସେ ଯୁଗ ନାହିଁ ଯେତେବେଳେ କି ମହାଭାରତ, ଭାଗବତ ବା ରାମାୟଣ ପଢ଼ିବା ପାଇଁ ବହୁତ ସମୟ ଧରି ଅବସର ମିଳିବ । ପ୍ରତ୍ୟେକ ଲୋକ ନିଜ ନିଜର ଗୁଜୁରାଣ ମେଣ୍ଟାଇବାରେ ବ୍ୟସ୍ତ । ସ୍ୱାଧୀନ ଭାରତବର୍ଷରେ ଓଡ଼ିଶା ଲୋକେ ଏ ଦିଗରୁ ଅଭିଶପ୍ତ କହିଲେ ଚଳେ । ଯେତେ ଯାହା ହେଉଛି, ହାତୀ, ଘୋଡ଼ା, ଭୂତ, ଡାହାଣୀ କଥା ଶୁଣାଯାଉଛି, ଲୋକଙ୍କର ପେଟ ଦାନା କନା ସମସ୍ୟା ସବୁଠାରୁ ବଡ଼ ହୋଇ ରହିଛି ।

ରଜା ଗଲେ, ମନ୍ତ୍ରୀ ଆସିଲେ । ଦେବାନ୍ ଗଲେ, ହାକିମ ହୁକୁମା ଆସିଲେ; କିନ୍ତୁ ଓଡ଼ିଶାର ଜନ-ଜୀବନ ଚିରକାଳ ନିସ୍ତରଙ୍ଗ ହ୍ରଦ ଭଳି ରହିଛି । ଏପରିକି ଟେକାଟିଏ ପଡ଼ିଲେ ମଧ୍ୟ ତରଙ୍ଗ ଉଠିବାର ଦେଖାଯାଉନାହିଁ । ଏଭଳି ଅବସ୍ଥାରେ ପୁରାଣ ଗ୍ରନ୍ଥ ଧରି ବସିବାରେ ସମୟ ମିଳିବ କୁଆଡ଼ୁ ? ରେଡ଼ିଓ ଷ୍ଟେସନ ଥିବାରୁ ହୁଏତ ବେଶୁରା ହୋଇ ମଧ୍ୟ ଛାନ୍ଦ

ଚନ୍ଦ୍ରପଟାରୁ ପଦେ ଅଧେ ଶୁଣିବାକୁ ହେଉଛି । ତାହା ପୁଣି ବହୁ ସମୟ ରେକର୍ଡ଼-ସଙ୍ଗୀତ ପ୍ରସାଦରୁ ମିଳୁଛି । ଏ ଜାତିର ଜୀବନ ସ୍ପନ୍ଦନ ବୋଲି କହୁ ନାହିଁ ।

ଓଡ଼ିଶାର ଲୋକେ ବହି ପଢ଼ନ୍ତି ନାହିଁ ବୋଲି ଶହେ ବର୍ଷ ତଳେ ଜଣେ ସାହେବ ଲେଖିଗଲେ । ଏଟା ମିଛ ନୋହିପାରେ; କିନ୍ତୁ କଥାଟା ଆହୁରି ସତ ଓ ରୁଚିକର ହୋଇଥାନ୍ତା ଯଦି ଓଡ଼ିଶାର ଅର୍ଥନୈତିକ ଜୀବନକୁ ଲକ୍ଷ୍ୟ ରଖି ଏକଥା କୁହାଯାଇଥାନ୍ତା; କିନ୍ତୁ ଭାରତର ଅନ୍ୟାନ୍ୟ ଅଞ୍ଚଳ ପରି ଓଡ଼ିଶାର ଜନଜୀବନରେ ପରିବର୍ତ୍ତନ ଘଟିଛି; କିନ୍ତୁ ତାହାର ସ୍ପନ୍ଦନ ଯେତିକି ବଳଶାଳୀ ହେବାର କଥା ସେତିକି ହୋଇପାରି ନାହିଁ ।

ଏ ଦୃଷ୍ଟିରୁ ଓଡ଼ିଶାର ସାହିତ୍ୟ ପାଠକମାନଙ୍କ ହାତରେ 'ଶ୍ରୁତି-ସଞ୍ଚୟନ' ଅର୍ପଣ କରିବାର ବାସନା ଅନେକ ଦିନରୁ ଥିଲା । ଲେଖାଗୁଡ଼ିକ ଏଥି ପୂର୍ବରୁ ପ୍ରକାଶ ପାଇଥିଲା । କେବଳ ଏହି ନାମରେ ଏବେ ପୁସ୍ତକ ରୂପେ ପ୍ରକାଶିତହେଲା । ଆମେ ଓଡ଼ିଶା ବୋଲି ଯାହାକୁ ବୁଝୁ ଓ ଅନ୍ୟ ଦେଶର ଲୋକଙ୍କୁ ବୁଝାଇଥାଉ ତାହା ହେଉଛି କେବଳ ଓଡ଼ିଶାର ରାଜ-ମାର୍ଗ । ସେ ରାଜମାର୍ଗ କଟକ ସହରର ଗଳି କନ୍ଦି ପରି ସଙ୍କୀର୍ଣ୍ଣ ହେଉ କିମ୍ବା ଭୁବନେଶ୍ୱରର ରାସ୍ତା ଘାଟ ପରି ପ୍ରଶସ୍ତ ହେଉ ତହିଁରେ କିଛି ତଫାତ୍ ନାହିଁ । ଯାହାହେଲେ ବି ସେଟା ବାହାରର ଗୋଟାଏ ଛବି ।

ଓଡ଼ିଶାର ପ୍ରକୃତ ପ୍ରାଣ ଚିହ୍ନିବାକୁ ହେବ ପଲ୍ଲୀ ଅଞ୍ଚଳରୁ । ସହର-ବାସୀଙ୍କ ପାଇଁ ଯେଉଁମାନେ ଶୀତକାକରରେ ହାଡ଼ଭଙ୍ଗା ପରିଶ୍ରମ କରନ୍ତି; ଅଥଚ ସଭ୍ୟତାର ସୁଯୋଗ ପାଆନ୍ତି ନାହିଁ, ସେମାନଙ୍କୁ ଛାଡ଼ିଦେଲେ ଏ ଜାତିର ପ୍ରାଣକୁ କେହି ଚିହ୍ନିପାରିବ ନାହିଁ । ସେଥିପାଇଁ ମୁଁ ଯେତେ ଯେତେ କଥା ଶୁଣିଛି ତା ମଧ୍ୟରୁ ବଛା ବଛା କେତୋଟି କଥା ମୋର ଏ କଲମ ମୁନରେ ଫୁଟାଉଛି ମାତ୍ର । ସେଥିରେ ସାହିତ୍ୟର ରସ ରହିଲା କି ନାହିଁ, ବ୍ୟାକରଣର ନିୟମାବଳୀ ଲାଗୁହେଉଛି କି ନାହିଁ, ମାପଚୂପ କରି ଚରିତ୍ରମାନଙ୍କୁ ପ୍ରାଧାନ୍ୟ ଦିଆଯାଇଛି କି ନାହିଁ, ଜୀବନ-ଦର୍ଶନ ଠିକ୍ ଜାଗାରେ ଓ ଠିକ୍ ଭାବରେ ଫୁଟିଲା କି ନାହିଁ, ଏ ସବୁ କଥା ପ୍ରତି ଆଖି ରଖି ମୁଁ ଏ ଗଳ୍ପ ଗୁଡ଼ିକ ଲେଖିନାହିଁ । ମୋର ଅନ୍ତଃସଲିଳା-ମାନସନଦୀ

ଶଯ୍ୟାରେ ଶ୍ରୁତ ଘଟଣା ଗୁଡ଼ିକର ଯେଉଁ ତରଙ୍ଗାୟିତ ପ୍ରବାହ ଉଠନ୍ତି ଭାଷା ଭଙ୍ଗିକାରେ ମୁଁ ତାକୁ ରୂପ ଦେଇଛି ମାତ୍ର । କୌଣସି ଘଟଣା ମୋ ମନରେ ବିଦ୍ରୋହ ବହ୍ନି ଜାଳିଦେଇଛନ୍ତି—କୌଣସି ଘଟଣାରେ ମୁଁ ଏକା-ବେଳେକେ ବିବ୍ରତ କିମ୍ବା ବିସ୍ମିତ ହୋଇ ପଡ଼ିଛି; କିନ୍ତୁ ଅନେକ ଗୁଡ଼ିଏ ଘଟଣା ମୋତେ ବ୍ୟକ୍ତି ବିଶେଷଙ୍କ ପ୍ରତି ଅତ୍ୟନ୍ତ ସମ୍ବେଦନଶୀଳ କରି-ଦେଇଛି, ଏମିତି ଘଟଣା ଶୁଣିଛି ଯାହା ଆପାତତଃ ହାସ୍ୟରସରେ ମନୁଷ୍ୟକୁ ମୁଖର କରିଦେବ; କିନ୍ତୁ ଘଟଣାର ପରିଣତିରେ ଦେହ ଶିହରି ଉଠିବ । ଏହି ତ ଆମର ସଂସାର, ଏଇ ତ ଆମର ଘରପଟର ନରନାରୀ, ଏଇ ତ ଆମର ନିତି ଦିନର ସାଙ୍ଗସାଥି, ଯାହାଙ୍କୁ ନେଇ ଆମେ ବିରାଟ ସମାଜ ଗଠନ କରିବା ଦିଗରେ ନାନା କଳ୍ପନା ଜଳ୍ପନା କରୁଛୁ !

ଲେଖକ ଲେଖିଯାଏ, ପାଠକ ପଢ଼େ ନିଜ ଦୃଷ୍ଟିରୁ; କଳା କୃତିତ୍ୱର ମହତ୍ତ୍ୱବୋଧ ସୁଯୋଗ୍ୟ ପାଠକ ଉପରେ ନ୍ୟସ୍ତ । ତଥାପି ଯେଉଁ ଟିକିକ ସଂକେତ ଦେଲେ ଅନୁରାଗୀ ପାଠକ ରସବୋଧ କରିବାକୁ ଟିକିଏ ସାହାଯ୍ୟ ପାଇପାରେ, ସେତକ ଦେଇ ଦେବାକୁ ଲେଖକର ସ୍ପୃହା ଜନ୍ମିବା ସ୍ୱାଭାବିକ । ଏଠାରେ ସେତିକ ମାତ୍ର କରାଯାଇଛି ।

ଶ୍ରୀ ରାମଚନ୍ଦ୍ର ଭଞ୍ଜ
ମେଡ଼ିକାଲ କଲେଜ ହସ୍ପିଟାଲ
କନକା କଟେଜ,
ତା ୧୧।୧୧।୬୫

} **ଗୋଦାବରୀଶ ମହାପାତ୍ର**

# ସୂଚୀ

# ହର ସୁଆରର ଗାନ୍ଧୀଟୋପି

ଖଲକୋଟ ଗଡ଼ ଦାଣ୍ଡରେ ରାତିରେ ଯେତେବେଳେ ପାଞ୍ଚ ଦଶଟା କୁକୁର ଏକାବେଳକେ ଭୁକିଉଠନ୍ତି ସେତେବେଳେ ଜଣାଯାଏ ଯେ ଏଗାର ବାଜିଲା । କି ଖରା, କି ବର୍ଷା, କି ଶୀତ, ସବୁ ଋତୁରେ ରାତିରେ ଠିକ୍ ସମୟରେ ଘଣ୍ଟା ବାଜିଲା ପରେ କୁକୁରଗୁଡ଼ାକ ଭୁକି-ଉଠନ୍ତି । ଅପରିଚିତ ବାଟୋଇ କିମ୍ବା କାହା ଘରକୁ ଆସିଥିବା ବନ୍ଧୁ ବାନ୍ଧବ ମନେ କରିବା ସ୍ୱାଭାବିକ ଯେ, ହଠାତ୍ ଗଡ଼ରେ କେଉଁଠି ଦୁର୍ଘଟଣା ଘଟିଲା, ଚୋର ତସ୍କର ଦେଖାଦେଲେ, କିନ୍ତୁ ଗଡ଼ର ଲୋକେ ଠିକ୍ ଜାଣନ୍ତି ହର ସୁଆର ଦେଉଳରୁ ବାହାରିଲା ।

ହର ସୁଆର ଜଗନ୍ନାଥ ଦେଉଳର ପୂଜାରି । ତାର ଗୋସେଇଁ ବାପ ଅମଳରୁ ଜଗନ୍ନାଥ ମନ୍ଦିରରେ ସେବାପୂଜା କାମ ଚାଲି ଆସିଛି । ରାଜା ନାରାୟଣ ମର୍ଦ୍ଦରାଜଙ୍କ ସମୟରେ ସେବାପୂଜାର ଯେ ବିଧିବ୍ୟବସ୍ଥା ହୋଇଥିଲା ହର ସୁଆରର ଗୋସେଇଁ ବାପ ପ୍ରଥମେ ସେହି କାର୍ଯ୍ୟରେ ନିଯୁକ୍ତ ଥିଲା । ଗୋସେଇଁ ବାପ ଗଲା, ବାପ ଚାଲିଗଲା, ତାପରେ ସେଇ ଭାର ପଡ଼ିଲା ହର ସୁଆର ଉପରେ । ଏ ଭିତରେ ରାଜବଂଶର ଦୁଇ ପୁରୁଷ ଚାଲିଗଲେଣି । ରାଜବଂଶର ତିନିପୁ ପୁରୁଷଙ୍କ ନାମରେ ମନ୍ଦିରରେ ଦର୍ଶ

ବଜେଇ, ଭୋଗରାଗ ସାରି ହରି ସୁଆର ଯେତେବେଳେ ଘରକୁ ଫେରେ ସେତେବେଳକୁ ଠିକ୍ ରାତି ଏଗାର । ଘଣ୍ଟା ବରଂ ଭୁଲ୍ ହୋଇପାରେ, ବନ୍ଦ ହୋଇପାରେ; କିନ୍ତୁ ହରି ସୁଆରର ସମୟାନୁବର୍ତ୍ତିତା, ନିଷ୍ଠା କେବେ ଏପାଖ ସେପାଖ ହେବାର କେହି ଜାଣନ୍ତି ନାହିଁ ।

ହରି ସୁଆର ଦେଉଳରୁ ବାହାରିଲେ ଆଗ ଗୋଟାଏ ଶବ୍ଦ ଶୁଭେ । ଗୃହିଁଥିବା ଲୋକେ ଜାଣିଯାନ୍ତି ଦେଉଳ ଦୁଆର ପଡ଼ିଲା । ତାପରେ ଉଆସ ଦିଗରୁ ଗୋଟାଏ ନିଆଁ ଖୁଣ୍ଟା ହଲିବାର ଦେଖାଯାଏ । ଲୋକେ ଜାଣନ୍ତି ସେହି ହେଉଛି ହରି ସୁଆର । ଦେଉଳ ଭିତରେ ଲଣ୍ଠନର ତ କାରବାର ନ ଥିଲା, ତେଣୁ ହରି ସୁଆର ଦେଉଳରୁ ବାହାରିଲାବେଳେ ଅନ୍ଧାର ରାତିରେ ବାଟ ବାରିବା ପାଇଁ, ଆଉ, ବୁଲା କୁକୁରଙ୍କୁ ଘଉଡ଼ାଇବା ପାଇଁ ବେଢ଼େଇ ଶାଳରୁ ଏକମାତ୍ର ଅସ୍ତ୍ର ଆଣିଥାଏ ଖଣ୍ଡେ ନିଆଁ ଖୁଣ୍ଟା, ନିଆଁ ଦହକୁ ଥାଏ, ତାକୁ ସେ ହଲେଇ ହଲେଇ ଯେତେବେଳେ ରାଜଦାଣ୍ଡରେ ବାହାରିପଡ଼େ ତାର ସବୁବେଳର ପରିଚିତ କୁକୁରଗୁଡ଼ାକ ତଥାପି ନ ଚିହ୍ନି ଲମ୍ବ ପରି ଭୁକିଉଠନ୍ତି । ସେଥିରେ ଅନେକ ଲୋକଙ୍କର ନିଦ ଭାଙ୍ଗିଯାଏ । ପିଣ୍ଡାରେ ବସିଥିବା କେହି କେହି ହରି ସୁଆରକୁ ଅପେକ୍ଷା କରି ରହନ୍ତି । କାରଣ, ହରି ସୁଆର ଖାଲି ନିଆଁ ଖୁଣ୍ଟା ଧରି ନ ଥାଏ, ଗୋଟାଏ ହାତରେ ବିରାଟ ଥାଳିଏ ଟେକି ତା ଭିତରେ ଡଟକା ଜଗନ୍ନାଥବଲ୍ଲଭ ପିଠା ଧରିଥାଏ । ଗୋଟାକୁ ଦି' ପଇସା, ବୃରିଟାରେ ଗ୍ରାସେ ଭୋଜନ । ଡଟକା ଘିଅରେ ଛଣାଯାଇ ନବାତରେ ପାଗ ଦିଆଯାଇଥାଏ । ଏ ସୁବିଧା ଛାଡ଼େ କିଏ ? କୁକୁରଗୁଡ଼ାକ ସେଇ ଲୋଭରେ ବୋଧହୁଏ ଭୁକିଉଠନ୍ତି । ଗୁଲିଆ ଗଞ୍ଜେଡ଼ିମାନେ ଅଥବା ଘରର ଅବୋଲକରା ହେଞ୍ଜଡ଼ା ପିଲାମାନେ ସେହି ସ୍ୱରରେ ସତର୍କ ହୋଇପଡ଼ନ୍ତି । ହରି ସୁଆରର ସେହି ହେଉଛି ବ୍ୟବସାୟ ।

ଉପରେ ଯେଉଁ ସମୟର ଘଟଣା କୁହାଗଲା ସେ ସମୟଟା ହେଉଛି ୧୯୨୦-୨୧ ସାଲ, ଆଜିକି ପ୍ରାୟ ୩୮ ବର୍ଷ ତଳର ଘଟଣା । ୩୮ ବର୍ଷ ତଳେ ହରି ସୁଆର ଯେଉଁ ଜଗନ୍ନାଥବଲ୍ଲଭ ଖଜା ଦୁଇ ପଇସାକୁ ବିକୁ-

ଥିଲା ଏ ଭିତରେ ସେ ଖଜାର ବହୁତ ଉନ୍ନତ ହୋଇଯାଇଛି । ତାହା ଦୁଇ ପଇସାରୁ ଆଠ ପଇସା, ଅର୍ଥାତ୍, ଚାରି ଗୁଣ ଉନ୍ନତରେ ପହଞ୍ଚି ପାରିଛି ! ସେ ସମୟର ବୁଢ଼ା ବୁଢ଼ା ଲୋକେ ଏବେ ଜଗନ୍ନାଥବଲ୍ଲଭ ଖଜା କିଣିଲା-ବେଳେ ନାକ ଟେକି କହୁଛନ୍ତି—ଆଉ ସେ ମାଲ୍ ନାହିଁ, ସେ ଘିଅ ନାହିଁ, ସେ ନବାତ ନାହିଁ, ସେ ପୁର ନାହିଁ; କିନ୍ତୁ କେହି କହୁନାହାନ୍ତି ସେ ସମୟର ହରି ସୁଆର ଅଛି କି ନାହିଁ । ସେ ସମୟର ହରି ସୁଆର ବର୍ତ୍ତମାନ କୁଆଡ଼େ ଗଲା, ଯାଇ ଯାଇ କେଉଁଠି ପହଞ୍ଚିଲା ସେଇକଥା ଏ ଗଳ୍ପରେ କୁହାଯିବ ।

୧୯୨୦-୨୧ ସାଲ ଭାରତର ଇତିହାସରେ ସ୍ମରଣୀୟ ବର୍ଷ । ଖଲିକୋଟ ଗଡ଼ଦାଣ୍ଡରେ ସେ ସମୟର ହରିସୁଆର ଘୋର ଅନ୍ଧାର ରାତିରେ ନିଆଁ ଖୁଣ୍ଟା ହଲାଇ ହଲାଇ ତାର ଗନ୍ତିପଥ ଠିକ୍ କଲାପରି ୧୯୨୦-୨୧ ସାଲଟା ଭାରତର ଘନ ତମସାବୃତ୍ତ ଦୁର୍ଗମ ପଥରେ ଦୀପ ଜାଳିଦେଲା । ସାବରମତୀର ମହାମାନବଙ୍କ ଆହ୍ୱାନରେ ଭାରତର ଏ ମୁଣ୍ଡ, ସେ ମୁଣ୍ଡ ଯାଏଁ ଗୋଟାଏ ଭୂମିକମ୍ପ ଦେଖାଦେଲା । ମୁମୂର୍ଷୁ ଜାତି ଚେଇଁ-ଉଠିଲା । ଆଶାର କ୍ଷୀଣାଲୋକରେ ଅନ୍ଧାର ଭିତରେ ଲୋକେ ବାଟ ପାଇବାକୁ ସାହସ ବାନ୍ଧିଲେ । ସେତିକିବେଳେ ଖଲିକୋଟ ଗଡ଼ର ସେହି ହରି ସୁଆର ହାତର ବ୍ରେଷଘରର ନିଆଁ ଖୁଣ୍ଟା ସଙ୍ଗେ ମିଶି ତା' ହୃଦୟ ଭିତରେ ଆଉ ଏକ ନିଆଁ ଜଳିଲା ଯାହାକୁ କି ବିଳାସବ୍ୟସନଲିପ୍ତ-ବିଦେଶୀଭାବାପନ୍ନ ଦୁରଗୃଧ୍ର ରାଜା ଜମିଦାରମାନେ ଲିଭେଇବା ପାଇଁ ଚେଷ୍ଟା କରୁଥିଲେ । ଖଲିକୋଟର ସେ ସମୟର ଶକ୍ତିଶାଳୀ ଜମିଦାର ସେ ଗୋଷ୍ଠୀରୁ ବାଦ ପଡ଼ି ନଥିଲେ; କିନ୍ତୁ ସେ ହରିସୁଆରର ଅନ୍ତରର ନିଆଁକୁ ଲିଭେଇ ନପାରି ଲିଭାଇଦେଲେ ତା'ର ହାତର ନିଆଁଖୁଣ୍ଟାକୁ । ଫଳରେ ବାହାରର ନିଆଁ ଯାଇ ଭିତରର ନିଆଁ ସହିତ ସହଯୋଗ କରି ଖଲିକୋଟର ଲକ୍ଷେ ଲୋକଙ୍କ ଭିତରେ ବିପ୍ଳବ ସୃଷ୍ଟି କଲା ।

କଥାଟା ହେଉଛି, ହରି ସୁଆର ଜଗନ୍ନାଥ ମନ୍ଦିରରେ ପୂଜା ଆଳତି ବେଳେ ଆଗେ ଯେ ଡାକ ଦେଉଥିଲା—'ଜୟ ଜଗନ୍ନାଥ !' ତା ସହିତ ଆଉ ଏକ ସ୍ୱର ମିଶାଇଲା –'ଜୟ, ମହାତ୍ମା ଗାନ୍ଧୀଙ୍କ ଜୟ !' ଏ ଡାକଟା ଯାଇ ରାଜାଙ୍କ ଉଆସରେ ପହଞ୍ଚିଲା । ବୁଝ୍ ବୁଝ୍ ଜଣାଗଲା ମନ୍ଦିରର ହରି ସୁଆର ଖଲିକୋଟର ଏକ ଗଳି କନ୍ଦିର ଗୋଟିଏ ଛୋଟ ଗୃହଘରେ ଏକ ଆଶ୍ରମର "ଗାନ୍ଧୀ" ହୋଇଛି ! ମନ୍ଦିରର ଭୋଗରାଗ ସାରିଲା ପରେ ତା ମୁଣ୍ଡରେ ଗାନ୍ଧୀଟୋପି ଶୋଭା ପାଉଛି, କେତେ ଜଣଙ୍କୁ ସାଥି କରି ସେ ସୂତାକଟା ଆରମ୍ଭ କରିଛି, ଦୁଆର ମୁହଁରେ ପତାକା ପୋତିଛି, ଆଉ, ଲୋକଙ୍କୁ କହୁଛି—ସମସ୍ତେ ଏକଜୁଟ୍ ହୁଅ, ଏ ସର୍କାରକୁ ଶେଷ କରିଦେବା । ରକ୍ତମୁଖା ଜମିଦାରର ରକ୍ତ ତାଳୁକୁ ଉଠିଗଲା ।

ଏହାପରେ ସମପୁରରେ ଦିନେ ଶୁଣାଗଲା—ଖଲିକୋଟଗଡ଼ରେ କଂଗ୍ରେସ ସଭା ହେବ । ସଭା କରିବାକୁ ହେଲେ ଲୋକଙ୍କୁ ଡାକିବା ଲଗି ଟମକ ଦର-କାର । ସେ ଟମକ ଏପରି ହେବା ଦରକାର ଯାହାକୁ ବାଡ଼େଇଲେ କି ସେ ସମପୁର ଜମିଦାରର ଲଳ-ବସ୍ତ୍ର ଟଣିଆ ଦେଡ଼ ଶହ ବଳିଷ୍ଠ କୁକୁରଙ୍କର ସ୍ୱରଠାରୁ ଆହୁରି ତୀବ୍ର ହେବ, ଆଉ,ତାହା ଯାଇ ଜନତାର ଅନ୍ଦରମହଲରେ ପହଞ୍ଚିପାରିବ; କିନ୍ତୁ ଟମକ ଦେବ କିଏ ? ଜମିଦାର ବିଚଳିତ ହୋଇ-ପଡ଼ିଲେ । ଯେତେ ଥିଲେ କାନକୁହା, ପଛକୁହା, ଖୋସାମଦିଆ ସେମାନଙ୍କ ସହିତ ସବୁ ପୋଷାକୁକୁର ବି ବିଚଳିତ ହୋଇଗଲେ । ହାଡ଼ିମାନେ ରାଜି ହେଲେନାହିଁ ଟମକଦେବାକୁ ।

କିନ୍ତୁ ହରି ସୁଆରର ହୃଦୟ ଭିତରେ ଯେଉଁ ନିଆଁ ଜଳୁଥିଲା ତାକୁ କିଏ ଏଥିରେ ନିଭେଇଦେବ ? ହଠାତ୍ ପୂର୍ବଦିନ ଦେଖାଗଲା ଯେଉଁ ହରି ସୁଆର ମନ୍ଦିରରେ ଭୋଗ କରେ, ଆଳତିବେଳେ 'ହେ ପତିତପାବନ' ବୋଲି ଡାକିଦିଏ, ସିଂହାସନ ପାଖରେ ରହି ଜଗନ୍ନାଥଙ୍କ ବେକରେ ଦୟଣାମାଳ ଖଞ୍ଜିଦିଏ ତା ଗଳାରେ ଏକ ଟମକ ଝୁଲୁଛି, ଆଉ, ସେ ବଡ଼ଦାଣ୍ଡସାକ ବୁଲି ବୁଲି ଟମକ ପିଟି କହୁଛି—କଂଗ୍ରେସ ସଭା ହେବ, ସମସ୍ତେ 'ସାହେବ ବନ୍ଦ' ପଡ଼ିଆରେ ଗୁରୁବାରବେଳେ ଏକଜୁଟ୍ ହୁଅ, ମହାତ୍ମାଗାନ୍ଧୀଙ୍କ ବାର୍ତ୍ତା ଶୁଣିବ । ଏଥିରେ ଖଲିକୋଟର ଦରିଦ୍ର କୁଟୀରଠାରୁ

ପାହାଡ଼ ତଳେ ନଗରପଦାରେ ଥିବା ରଜାଘରର ଦେଉଳ ଶଙ୍ଖ ବଜାଇ ଉତ୍ସବ ଭିତରେ ଲୋକଙ୍କର ଶିରାପ୍ରଶିରା ଚମକିଗଲା । ଅନେକେ ମନେକଲେ, ହରି ସୁଆର ଏଇଠି ଶେଷ !

ଠିକ୍ ସେଯା ହେଲା । ସଭା ତ ହେଲା, ହରି ସୁଆର ମୁହଁରୁ ଲୋକ ତ ମହାତ୍ମା ଗାନ୍ଧୀଙ୍କର ବାଣୀ ଶୁଣିଲେ; କିନ୍ତୁ ଦେଉଳ ଭିତରେ କେହି ଶୁଣିପାରିଲେ ନାହିଁ ତା କଣ୍ଠର ସେହି 'ହେ ପତିତପାବନ' ଡାକ । ତହିଁର କାରଣ ହେଉଛି, ଏହା ଫଳରେ ହରି ସୁଆର ଅଜାତିଆ ହେଲା ବୋଲି ରଜାଘର ଆଡ଼ୁ ଘୋଷଣା କରାଗଲା । ତାର ବୃତ୍ତିଚ୍ଛେଦ ହେଲା । କେତେ ପୁରୁଷରୁ ଥିବା ସୁଆର ହେତା ଜମିରୁ ସେ ବେଦଖଲ ହେଲା । ଦେଉଳ ଦୁଆର ତାକୁ ସମ୍ପୂର୍ଣ୍ଣ ମନାହେଲା । ତେଣେ ଜମିଦାରର ଷଡ଼ଯନ୍ତ୍ର ଫଳରେ ଜାତି ଭାଇ ଧରିବସିଲେ, ପ୍ରାୟଶ୍ଚିତ ନ କଲେ ହରି ସୁଆର ଆଉ ହରି ସୁଆର ହୋଇ ରହିବ ନାହିଁ !

ସେଦିନର ହରି ସୁଆରକୁ ରଜାଘର ଦେଉଳ ଦୁଆର ମନା କରିବାହାରି ଖଳଟୋକଠରେ ତାକୁ ଜାଣିଥିବା ଲୋକେ ଯେ ଖୁସି ହେଲେ ତା ନୁହେଁ । ଯେଉଁ ଦିନ ସେ ଦେଉଳ ଭିତରେ ପତିତପାବନଙ୍କ ପାଦତଳେ ମୁଣ୍ଡି ଆ ମାରି ଗରୁଡ଼ ଖମ୍ବ ଆଗରେ ଆଖି ବୁଜି, ହାତଯୋଡ଼ି ଠିଆହୋଇ ବାହାରକୁ ଚାଲିଆସିଲା, ଅନେକେ ମନେ ମନେ ଭାବିଲେ— ନାରାୟଣ ଚାଲିଗଲେ ଦେଉଳ ଭିତରୁ । ଦିନ ଯେତିକି ଗଡ଼ିଲା ଏ ଧାରଣା ଲୋକଙ୍କ ମନରେ ସେତିକି ଦୃଢ଼ୀଭୂତ ହେଲା । ଦେଶର ଯେଉଁ ଅଗଣିତ ଦରିଦ୍ର-ନାରାୟଣଙ୍କ ସେବାପାଇଁ ମହାତ୍ମାଗାନ୍ଧୀ ଡାକ ଦେଇଥିଲେ ସେହି ଦରିଦ୍ର-ନାରାୟଣଙ୍କ ଭିତରେ ସେ ଜଣେ ହୋଇଗଲେ । ଦେଉଳରୁ ତାର ବୃତ୍ତିଚ୍ଛେଦ ହେଲା ପରେ କେତେ ଦିନ ସେ ରାତି ଏଗାରଟାରେ ବଡ଼ ଦାଣ୍ଡରେ ବୁଲିଲା; ତାର ପରିଚିତ ବୁଲା କୁକୁରଗୁଡ଼ାକ ତାକୁ ଦେଖି ଭୁକିଲେ ।

ସେହି ସମୟଠାରେ ତାଙ୍କୁ ଜାଣିଥିବା ଲୋକେ ତା ସହିତ ଗୁପ୍‌ଚୁପ୍‌ କଥାବାର୍ତ୍ତା ହେଲେ, କହିଲେ—ଆହା, ବିଚରା ଚାଲିବ କିମିତି !

ହରି ସୁଆରର ପାଇଁ ସମସ୍ତେ ସିନା ଚିନ୍ତା କଲେ; କିନ୍ତୁ ହରି ସୁଆର ଚିନ୍ତା କଲା ସମସ୍ତଙ୍କ ପାଇଁ । ପାଣିକି ଠେଙ୍ଗାରେ ପିଟିଲେ ଦି'ଭାଗ ହୁଏ ନାହିଁ, ଚାରିଆଡ଼କୁ ଛିଟିକି ପଡି ପୁଣି ଏକାକାର ହୋଇଯାଏ । ପାଖରେ ଯିଏ ଥାଏ ସେହି ଛିଟିକା ତାହା ଉପରେ ପଡ଼େ । ହରି ସୁଆରର ହୃଦୟ-ସାଗର ଦେଶପ୍ରେମରେ ଉଚ୍ଛୁଳୁଥିଲା । ଖଲିକୋଟ ରାଜା ସାହେବ ତାଙ୍କର ଶାସନଦଣ୍ଡରେ ଯେତେବେଳେ ପ୍ରହାର ଦେଲେ ତାହା କ୍ଷୁଦ୍ର କ୍ଷୁଦ୍ର ସହସ୍ର ବିନ୍ଦୁରେ ସମଗ୍ର ଖଲିକୋଟ ଲୋକଙ୍କ ଉପରେ ଯାଇ ଚଢ଼ିଲା । ହରିସୁଆରର ପ୍ରାଣ-ସାଗର ସେ ମାଡ଼ରେ ବିଦୀର୍ଣ୍ଣ ନହୋଇ ସଙ୍ଗେ ସଙ୍ଗେ ସମସ୍ତଙ୍କ ସହିତ ଏକାକାର ହୋଇଗଲା । ଲୋକେ ଦେଖିଲେ ହରିସୁଆର ଦେଉଳରୁ, ପିତୃପିତାମହ ଭୋଗ କରୁଥିବା ସମ୍ପତ୍ତିରୁ, ଶେଷରେ ମଣିଷ ତିଆରି ସୀମାରେଖା ଜାତିରୁ ରାଜଶାସନରେ ଅଲଗା ହେଲେ ମଧ୍ୟ ସମସ୍ତଙ୍କୁ ସେ ଛୁଇଁ-ପାରିଛି ! ଲୋକେ 'ଆହା' କଲେ ସହାନୁଭୂତିରେ । ରାସ୍ତାରେ ବାଟେଘାଟେ ଏକାନ୍ତରେ ତା ସମ୍ବନ୍ଧ କଥା ହେଲେ ରାଜାଙ୍କ ଭୟରେ । ଏଇଥିରେ ହିଁ ହରିସୁଆରର ସାର୍ଥକତା । ସେ ହାଡ଼ିଯାହିର ଝମକ କାନ୍ଧରେ ଟେକାଇ ଯେ ବାର୍ତ୍ତା ପ୍ରଚାର କରିବାପାଇଁ, ଯେ କଥା ଲୋକଙ୍କୁ ଶୁଣାଇବା ପାଇଁ ସଭା ଡାକୁଥିଲା ତାହା ସେତେବେଳେ ସଫଳ ହୋଇ ନଥିଲା, ତାହା ସଫଳ ହେଲା ସେ ଯେତେବେଳେ ଜାତିରୁ, ଦେଉଳରୁ ଏବଂ ସମ୍ପତ୍ତିପଦରୁ ଅଲଗା ହେଲା !!

ମଣିଷର ମନବଳ ଠାରୁ ବଳ ଆଉ ନାହିଁ । ଅଭାବର ତାଡ଼ନାରେ ହରିଆସୁରର ଦେହର ବଳ ଭାଙ୍ଗିଲା । ପାଦରେ ଚାଲି ଚାଲି ଠିପ ଛାଡି ରକ୍ତ ବାହାରିଲା । ନ ଖାଇ ମୁହଁ ଶୁଖିଗଲା । ଖରା କାକରରେ ଦେହ କଳା ପଡ଼ିଗଲା; କିନ୍ତୁ ତାର ମନର ବଳ ଟିକିଏ ହେଲେ କମିଲା ନାହିଁ । ତାର ଚିନ୍ତାର ଛିଟିକା ସେଦିନ ଯାହାଙ୍କ ପାଖରେ ଲାଗିଥିଲା, ଯାହାଙ୍କ ପ୍ରାଣରେ ପଡ଼ିଥିଲା ସେମାନେ ତା ସହିତ ଏକଯୁଟ ହେଲେ । ଖଲିକୋଟ ଗଳିକନ୍ଦିର ଏକ କୁଡ଼ିଆ ଭିତରେ ସୂତାକଟା ଚାଲିଲା । ସେଇଠି ପତାକା ଟେକାଗଲା ।

ଝଲିକୋଟ ଅଞ୍ଚଳରେ କେତେ ଲୋକଙ୍କର କେତେ ପକାଘର ନାହିଁ, କେତେ ଧନାଢ୍ୟ ଲୋକ ନାହାନ୍ତି; କିନ୍ତୁ ପୁଲିସର ଆଖି ପଡ଼ିଲା ହରିମୁଆରର ସେହି ଛପର ନଥିବା କାନ୍ଥଭଙ୍ଗା କୁଡ଼ିଆ ଉପରେ । ଦେହକୁ ସଜାଗ ରଖିବା ପାଇଁ ହରି ମୁଆର ହୋଟେଲ ଖୋଲିଲା । ହୋଟେଲରେ ବିକା ହେଲା ଚା’, ଏଣ୍ଡୁରି ପିଠା । ଲୋକେ ହୋଟେଲକୁ ଚା’ ଖାଇବାକୁ ଗଲେ, ହରି ମୁଆରର ଅଭିବାଦନ ଶୁଣିଲେ ‘ମହାତ୍ମା ଗାନ୍ଧୀକି ଜୟ !’ ଚା’ ଖାଇ ଫେରିଲେ ସେଇ ଡାକ । ତାର ଏହି ପ୍ରଚାରର ମାଧ୍ୟମ ବେଶି ଦିନ, ବି ରହିଲା ନାହିଁ । ରଜାଙ୍କ ଶନି ଦୃଷ୍ଟିରେ ତାର କୁଡ଼ିଆଟା ବି ପୋଡ଼ି-ଜଳିଗଲା ! ତେଣିକି ହରିମୁଆର ହେଲା ନିତିଦିନର ପଦଯାତ୍ରୀ । ବାଟେ-ଘାଟେ କାନ୍ଧରେ ମୁଣି ପକାଇ, ତାକୁଡ଼ିରେ ସୂତା କାଟି କାଟି ସେ କହିଲା ରଜାଘରର ଅତ୍ୟାଚାରର କାହାଣୀ । ଯାନିଯାତ୍ରା ଉତ୍ସବରେ ଶିବ ମନ୍ଦିର ଠାରୁ ବିଷ୍ଣୁ ମନ୍ଦିରଯାଏ, ବିଭାବ୍ରତ ଠାରୁ ଓଷାବ୍ରତ ପର୍ଯ୍ୟନ୍ତ ଲୋକେ ଯେଉଁଠି ଜମାହେଲେ ସେଇଠି ଦେଖାଗଲା ହରିମୁଆର । ତେଣିକି ହରି-ମୁଆରକୁ କୁହାଗଲା—ସେ ବିଦ୍ରୋହର ଏକ ଜୀବନ୍ତ ଛବି । ଦେଶରେ ଲୁଣମରା ଆହ୍ୱାନରେ ସେ ଦେଲା ହୁଙ୍କାର । ‘ଭାରତ ଛାଡ଼’ ଆନ୍ଦୋଳନରେ ସେ ନାଚିଉଠିଲା । ଯେଉଁ ଦିନ କଂଗ୍ରେସ ସଭାପତି ନେହେରୁ ଖଲିକୋଟ ଗଡ଼ରେ କଂଗ୍ରେସ ବାର୍ତ୍ତା ପ୍ରଚାରପାଇଁ ସଦଳବଳେ ମୋଟରରେ ଉପସ୍ଥିତ ହେଲେ ରଜାଙ୍କ ଆଦେଶରେ ଜନହୀନ ରାଜରାସ୍ତା ଭିତରେ କେବଳ ତାହାରି ସ୍ୱର ଶୁଣାଗଲା—‘ମହାତ୍ମା ଗାନ୍ଧୀକି ଜେ !’

ଏପରି ହରିମୁଆରକୁ ଭୁଲିବ କିଏ ? ପ୍ରଥମ ନିର୍ବାଚନ ଆସିଲା । ସେତେବେଳେ ହରିମୁଆର କଂଗ୍ରେସ ପକ୍ଷରେ ପ୍ରଚାର ଆରମ୍ଭ କରିଦେଲା । ତାର ପ୍ରଚାରର ବାଣୀ ଆଉ କିଛି ନୁହେଁ, ସେ ନିଜେ । ସେ କହିଲା— ମୁଁ ହେଉଛି ବର୍ତ୍ତମାନର ‘ଖଲିକୋଟ’ । ସେ ଦଶ ପାଞ୍ଚ ଜଣ ଲୋକଙ୍କ ଆଗରେ ଠିଆହୋଇ କଙ୍କାଳସାର ଦେହକୁ ଦେଖାଇ କରୁଣ କଣ୍ଠରେ କହିଲା—ମୁଁ ହେଉଚି ରାଜଶାସନର ନମୁନା । ଦେଖ, ଏକ ଦିଗରେ ଶତାଧିକ କୁକୁର ରଜାଙ୍କ ଉଆସରୁ ବାହାରି ଲଲିବିସ୍କୁଟ ଜଳଖିଆ ଖାଇ ରାଜ୍ୟର ହୋଇଛନ୍ତି ପ୍ରଜା, ଆଉ, ମୋତେ ମିଶାଇ ତୁମେମାନେ ରଜାଙ୍କର ହୋଇଛ ବାହକ । ଆମରି ବାହାରର କପରତରେ ରଜା ନେଉଚି ଜମିରୁ

ଭାଗ, ଆଉ, ସେଇ ଭାଗ ଟଙ୍କାରେ ସେ ଗଢ଼ିଛି କୁକୁରବାହିନୀ ! ବର୍ତ୍ତମାନ ଆପଣମାନେ ରଜାଙ୍କୁ ଭୋଟ ଦେବେ କି ଖଲିକୋଟର ପ୍ରତିନିଧିଙ୍କୁ ଭୋଟ ଦେବେ ବିଚାର କରନ୍ତୁ ।

ପ୍ରଥମ ଭୋଟ ଗଲା, ଦ୍ୱିତୀୟ ଭୋଟ ଆସିଲା । ହରି ସୁଆର ପୁଣି ଦେଖାଦେଲା । ତାର ସେହି ସ୍ୱର ସେହିପରି ଥିଲା; କିନ୍ତୁ ସେତେବେଳକୁ ପ୍ରଚ୍ଛନ୍ନ ହୋଇଥିଲା ହରି ସୁଆର ପାଗଳ ହୋଇଯାଇଚି ! ତେଣିକି ପାଗଳ ହରି ସୁଆର ଯାହା କହିଲା କିଏ ଶୁଣିଲା କିଏ ନ ଶୁଣିଲା; ତଥାପି ପାଗଳ- ହରି ସୁଆରର ମୁଣ୍ଡରେ ଗାନ୍ଧୀଟୋପି, ଦେହରେ ଶତଚ୍ଛିଦ୍ର ଖଦଡ଼ ପରିଧାନ, କାନ୍ଧରେ ମଇଳା ମୁଣି ଓ ହାତରେ ଖଣ୍ଡିଏ ବାଡ଼ି । ହରି ସୁଆର କରେ କଣ ? ତା କଥା ଯେ କେହି ଶୁଣୁ ନାହାନ୍ତି !

ଭୋଟ ଦିନର ସକାଳ । ଭୋଟକେନ୍ଦ୍ର, କଂଗ୍ରେସୀ ଓ ବେକଂଗ୍ରେସୀ କର୍ମୀ ଗହଳରେ ଭରପୂର ହୋଇଉଠିଛି । ଦଳେ କହିଲେ— କଂଗ୍ରେସର ଜୟ ହେଉ, ଆଉ ଦଳେ କହୁଛନ୍ତି—ରଜାର ପତନ ହେଉ । ଯେଉଁମାନେ କହୁଛନ୍ତି ରଜାର ପତନ ହେଉ ସେ ଭିତରେ ହରି ସୁଆର ଠିଆ- ହୋଇଚି । ତାହାରି ପାଟିର ସ୍ୱର ବେଶି ଶୁଭୁଚି । ସେ କହୁଚି— କଂଗ୍ରେସକୁ ଭୋଟ ଦିଅ; କିନ୍ତୁ ରଜାକୁ ଭୋଟ ଦିଅ ନାହିଁ । ଏହିପରି ସମୟରେ ଆଜାନୁଲମ୍ବିତ ବିଶାଳବପୁ ରାଜାସାହେବ ବିପରୀତ ଦିଗରେ ମୋଟରରୁ ଓହ୍ଲାଇ ଠିଆହେଲେ । ସେତେବେଳେ ହରି ସୁଆରକୁ ଆଉ ମନାକରେ କିଏ ? ଏକା ଲୟରେ ଏକାତାଳରେ ସେ ଘନ ଘନ ଗର୍ଜନ କରି ଉଠିଲା – ଅତ୍ୟାଚାରୀ ରାଜାର ପତନ ହେଉ, ସ୍ୱାର୍ଥପର ରାଜାର ଶାସନ ଶେଷ ହେଉ । ଜୟ ଖଲିକୋଟର ଜୟ ! ଜୟ କଂଗ୍ରେସର ଜୟ !!

ସେତିକିବେଳେ ହଠାତ୍ ଉଦ୍‌ବିଦିଆ ଗାନ୍ଧୀଟୋପି ଲଗାଇଥିବା ଦୁଇ ଚାରି ଜଣ କର୍ମୀ ତା ପାଖକୁ ମାଡ଼ିଆସି ପାଟିରେ ହାତ ଦେଇ କହିଲେ—ଆରେ ହରି, କହୁଛୁ କଣ ? ରଜା ପରା ଏବେ କଂଗ୍ରେସ !!! ରାଜା ତ ହାରିବେ, ଆଉ କଂଗ୍ରେସ ଜିଣିବ କପରି ?

ହରି ସୁଆରର ପ୍ରାଣଟା ଛଟପଟ ହେଲା । ସେ ଉତ୍ତେଜିତ ହୋଇ କହିଲା – ନା, ନା, ମୁଁ ସେଇକଥା କହୁଚି—ଅତ୍ୟାଚାରୀ ରଜା ଧ୍ୱଂସ ହେଉ, କଂଗ୍ରେସର ଜୟ ହେଉ । ଉତ୍ତେଜନାରେ ତାର ହାତଗୋଡ଼ ସବୁ ଥରଉଠିଲା । କାନ୍ଧରେ ଓହଳାଇଥିବା ଝୁଲିମୁଣି କମ୍ପିଲା । ନାକବାଟେ ଘନ ଘନ ନିଃଶ୍ୱାସ ବାହାରିଲା । କହିଲା—କଂଗ୍ରେସ ? ରଜା କଂଗ୍ରେସ ! ମିଛ କହୁଚ । କେବେ ହୋଇପାରେ ନା । କଂଗ୍ରେସ ସାଧି, କଂଗ୍ରେସ ମଜା ! ରଜାର ପତନ ହେଉ, କଂଗ୍ରେସର ଜୟ ହେଉ ।

ଗୋଳମାଳ ଏତେ ବଢ଼ିଲା ଯେ କେନ୍ଦ୍ରରେ ଶ୍ୱେତ ଗ୍ରହଣରେ ବାଧା ପଡ଼ିଲା । ସଙ୍ଗେ ସଙ୍ଗେ କାହାର ନିର୍ଦ୍ଦେଶରେ ହରି ସୁଆରର ଦୁଇ ପଟୁ ଦୁଇ ଜଣ ପୁଲିସ କର୍ମଚାରୀ ଆସି ତାହାର ଦୁଇ ବାହୁକୁ ଧରି ଟାଣି ନେଇଗଲେ, କହିଲେ—ଚୁପ ରହ । ହରି ସୁଆର ଦେଖିଲା ତାକୁ ଟେକି ଟେକି ନେଇ ରଜାଙ୍କ ମୋଟରେ ପାଖେ ଠିଆକରାଯାଇଛି । ରଜା ହସୁଛନ୍ତି । ସାତ ଇଞ୍ଚ ଲମ୍ବା ବଙ୍କା ଧୂଆଁଖିଆନଳୀ ବାହାରୁ ରେଳରୁ ଧୂଆଁ ବାହାରିଲା ପରି ଧୂଆଁ ବାହାରୁଚି । ଆପାଦମସ୍ତକ ଖଦଡ଼ ବିଭୂଷିତ । ସେ କହିଲେ—ହରି ସୁଆର, ଚିହ୍ନି ପାରୁଚ ? ତୁମେ ଏଥର ବି ଭୁଲ କରୁଚ । ହରି ସୁଆର କହିଲା—ମୁଁ ଭୁଲ କରୁଚି ? ନା, ହରି ସୁଆର କେବେ ଭୁଲ କରିପାରେ ନା, ଖଲିକୋଟ ରଜା କେବେ ଶ୍ୱେତରେ ଜିଣି ପାରେନା । ସେତିକବେଳେ ହରି ସୁଆରର ଜଣେ ଘନିଷ୍ଠ ସହକର୍ମୀ ତା କାନ ପାଖେ ପାଖେ କହିଲା – ଆରେ ହରି, ଏବେ ସବୁ ଓଲଟି-ଯାଇଚି । ରଜା ଆଉ ଏଥର ରଜା ହୋଇ ଠିଆହୋଇନାହାନ୍ତି । ସେ ଏବେ କଂଗ୍ରେସରୁ ପ୍ରାର୍ଥୀ ହୋଇଛନ୍ତି । ଦେଖୁନୁ ନା ତାଙ୍କ ମୁଣ୍ଡରେ ଗାନ୍ଧୀଟୋପି । ଏପରି କେବେ ଥିଲା ?

ହରି ସୁଆର ସେତିକିବେଳେ ଦମ୍ ମାରିଲା । କହିଲା – ଏଁ, ଏବେ ରଜାଟା କଂଗ୍ରେସ ? ଯା ମୁଣ୍ଡରେ ଗାନ୍ଧୀଟୋପି ? ଲଙ୍କାରେ ହରି ବେଦ ! ତା ପରେ ଅତି ଲଜ୍ଜିତ ହେଲାପରି ନିଜ ମୁଣ୍ଡରୁ ଗାନ୍ଧୀଟୋପିଟି କାଢ଼ି ତାକୁ ନିକ୍ଷେପଣ କରି ସମ୍ମୁଖରେ ରଜାଙ୍କ ମୁଣ୍ଡର ଗାନ୍ଧୀଟୋପିକି

ବୁହିଁ କହିଲା—ହରି ସୁଆରର ଗାନ୍ଧୀଟୋପିଠାରୁ ତ  ରଜାର ଗାନ୍ଧୀଟୋପି ବଡ଼ ! ମୁଁ ଆଉ ଏଠି କଣ କହିବ ? ଏହା କହି ଲୋକ ଗହଳରେ ସେ କୁଆଡ଼େ ବୁଲିଗଲା ଯେ, ଆଉ ଫେରିଚ କ ନାହିଁ ଖଲକୋଠ ଲୋକେ ଜାଣନ୍ତୁ ନାହିଁ ।

# ରଙ୍ଗ, ଭୁ ଯାଆ ନା ଚର !

ତା ମାଆ ତା ନାଁ କାହିଁକି 'ଦୁଖୀ' ବୋଲି ଦେଇଥିଲା ଗାଁ ଲୋକେ ତାହା ବୁଝିଲେ ନାହିଁ । ସମସ୍ତେ କହନ୍ତି—ଦୁଖୀ ପରି ସୁଖୀ କେହି ନାହିଁ । ଦୁଖୀକି ଦେଖିଲେ ଅନେକେ ଖୁସି ହୁଅନ୍ତି । କେହି କେହି ଦୁଃଖିତ ମଧ୍ୟ ହୁଅନ୍ତି । ଏହି ଶ୍ରେଣୀର ଲୋକେ କହନ୍ତି—ବିଧାତାର ବିଚାର ଠିକ୍ ନୁହେଁ । ଗୋଲାପ ଫୁଟେଇଲା, ଅଥଚ ତା ତଳେ କଣ୍ଟା ରଖିଦେଲା ! ଦୁଖୀ ପରି ଝିଅକୁ ଗଢ଼ିଲା, ଅଥଚ ତାକୁ ଜନ୍ମ ଦେଲା ଧୋବା କୁଳରେ !

ଦୁଖୀ ଧୋବଣୀ । ତା ଘରେ ସେ କେବଳ ଧୋବଣୀ ନୁହେଁ, ସେ ହେଉଛି ସାରା ଗାଁରେ । ଗାଁର ସକଳ ମଇଳା ତାର କାନ୍ଧରେ । ଗାଁର ସମସ୍ତଙ୍କ ପରିହାସ ତାର ଆଗରେ । କାନ୍ଧରେ ପର୍ବତ ପ୍ରମାଣ ଲୁଗା ବୁଜୁଳା, ହାତରେ ମଇଳା ଲୁଗା, ତାର ଭିତରେ ସେ କେତେବେଳେ ହସିଦେଲେ ତା ଆଖପାଖରୁ ମଳିନତା କୁଆଡ଼େ ଉଡ଼ିଯାଏ ! ତା ଅର୍ଥ, ଦୁଖୀର ବର୍ଣ୍ଣ ଗୌର, ଗାଁର ନାମଜାଦା ସରବରାକାରଙ୍କ ଝିଅ-ବୋହୂଙ୍କ ଠାରୁ ଆହୁରି ଚୋଖା । କବି ଯେ ଦାନ୍ତର ବର୍ଣ୍ଣନା କରନ୍ତି ବୋଧହୁଏ ଦୁଖୀ ପରି କାହାକୁ ଜଣେ ନ ଦେଖି ବର୍ଣ୍ଣନା କରିଛନ୍ତି । ତା ନ ହେଲେ ଦୁଖୀ ମୁହଁରେ ହସ ଦେଖିଲେ ଗାଁର ପଣ୍ଡିତେ କାବ୍ୟରେ ଦଶନ ବର୍ଣ୍ଣନାର ଅଭାବ ରହିଯାଇଛି ବୋଲି ମତ ଦିଅନ୍ତେ ନାହିଁ । ସେଇ ଗାଁ ଲୋକେ ମରାଳ ଦେଖି ନାହାନ୍ତି; ମାତ୍ର ଗାଁର ବଡ଼ କବିରାଜ କହନ୍ତି ସେ ମରାଳ ଦେଖିଛନ୍ତି ଏବଂ ତାର ଚାଲି ଦୁଖୀର ଚାଲିଠାରୁ କୌଣସି ଅଂଶରେ ଭଲ ନୁହେଁ ।

ଗାଁର ଜଣେ ସେବାସୂତ୍ରର ଏପରି ରୂପବର୍ଣ୍ଣନା କରିବା ହୁଏତ ସମସ୍ତଙ୍କୁ ଭଲ ଲାଗି ନ ପାରେ; କିନ୍ତୁ ଯେଉଁମାନଙ୍କୁ ତାର ରୂପ ଭଲ ଲାଗେ ସେମାନଙ୍କ ଆଗରେ ତାର ନିନ୍ଦା କଲେ ଆଉ ଉଦ୍ଧାରର ବାଟ ନାହିଁ । ଦୁଖୀ ସେ ଗାଁରେ ଏହିପରି ଏକ ଯୁବତୀ ।

ଦୁଖୀର ମାଆ ବୋଧହୁଏ ଜାଣି ପାରିଥିଲା ଯେ ଝିଅ ଶେଷରେ ଦୁଃଖ ଭୋଗ କରିବ । ତେଣୁ ସେ ଦୁଃଖଭୋଗକୁ ଆଗରୁ କଟେଇଦେବା ପାଇଁ ତା ନାଁ ଦେଇଥିଲା ଦୁଖୀ; କିନ୍ତୁ ଫଳ ଓଲଟା ହେଲା । ଦୁଖୀ ଆଗ ପାଇଲା ସୁଖ; କିନ୍ତୁ ପରେ ଭୋଗକଲା ଦୁଖ ।

ସେହି ରାତିକୁ ମିଶେଇ ଦୁଖୀ ସାତ ରାତି ଶୋଇନାହିଁ । ସେ କେବଳ ଅନିଦ୍ରା ଥିଲା ତା ନୁହେଁ, ଆଖପାଖ ଦଶଖଣ୍ଡି ଗାଁର ହଜାରେ ଦେଢ଼ ହଜାର ଲୋକଙ୍କ ଆଖିକୁ ସେ ସମୟରେ ରାତିରେ ନିଦ ଆସୁ ନ ଥିଲା । ଦୁଖୀ ଆଖିକୁ ନିଦ ଆସୁ ନଥିଲା କାନ୍ଦି କାନ୍ଦି; କିନ୍ତୁ ସମସ୍ତେ ହସି ହସି ଗ୍ରହୁଁଥିଲେ ।

ସହରଠାରୁ ବହୁତ ଦୂରରେ ଏକ ମଫସଲ ଗାଁରେ ଦୁଖୀର ଘର । ଘରଟା ପୁଣି ଗାଁ ବାହାରେ । ସେ ଘର ପୁଣି ଅଧେ ଛପର ଅଧେ ମେଲା । ତାହାର ଭିତରେ ଶେଷ ଜୀବନ ତାର ସଂସାର—ସେ ଆଉ ରଙ୍କ । ରଙ୍କ ଜାଣେ ନାହିଁ ସେ ତାର ଗୋସେଇଁମାଆ ବୋଲି । ମାଆ ତାକୁ ଛାଡ଼ିଯାଇଥିଲା ଜନ୍ମ ଦେବାର ମାସକ ପରେ । ତେଣୁ ତାର ଲାଳନ-ପାଳନ ଭାର ଦୁଖୀ ହିଁ ନେଇଥିଲା । ଦିନେ ସେ ତାକୁ କହିଦେଇ ନାହିଁ—ରଙ୍କ ରେ, ମୁଁ ତୋର ମାଆ ନୁହେଁ, ମୁଁ ତୋର ଗୋସେଇଁ ମାଆ । ରଙ୍କ ଦିନେ ପଚାରି ନାହିଁ – ମାଆ, ଆମର ଆଉ କିଏ ଥିଲେ ନା ନାହିଁ ?

ରଙ୍କ ପିଲାଦିନୁ ବେପରୁଆ । ଦୁଖୀ ଆଣ୍ଠୁ ଏ ପାଣିରେ ଠିଆହୋଇ ଲୁଗା କାଚିଲାବେଳେ ରଙ୍କ ହୁଡ଼ାରେ ରହି ଲୁଗା ଶୁଖାଏ, ଲୁଗା ଚଉତେ, ଆଉ, ସେହି ଲୁଗା କାନ୍ଧରେ ବୋହି ଗାଁରେ ଘରେ ଘରେ ଦେଇଆସେ । ଦୁଖୀ ପ୍ରତି ପୂର୍ବ ମମତାରୁ ହେଉ କମ୍ବା ରଙ୍କ ପରି ପିଲାର କାର୍ଯ୍ୟ ଦେଖି ହେଉ, ଗାଁ କବିରାଜଙ୍କର ରଙ୍କ ପ୍ରତି କାହିଁକି ଅତି ମମତା ବଢ଼ିଲା । ତାକୁ ନେଇ ସେଇ ସ୍କୁଲରେ ନାଁ ଲେଖେଇଦେଲେ । ରଙ୍କ ପାଠ ପଢ଼ିଲା, ଭଲ ପଢ଼ିଲା । ଗାଁ ସାଆନ୍ତମାନଙ୍କ ପୁଅ ଝିଅଙ୍କ ଠାରୁ ତାର ଭଲ ବୁଦ୍ଧି ବୋଲି ଅବଧାନେ ବରାବର କହିଲେ । ଶ୍ରେଣୀକୁ ଶ୍ରେଣୀ ଉଠି ଉଠି ରଙ୍କ ଯେତେବେଳେ ମାଇନର ଶ୍ରେଣୀପାଏଁ ଗଲା, ଦୁଖୀର ସେତେବେଳକୁ ଅଙ୍ଗ ପ୍ରତ୍ୟଙ୍ଗ ପଡ଼ିଆସୁଚି । ସେତେବେଳକୁ ରଙ୍କର ବୁଦ୍ଧି ହୋଇଗଲାଣି । ସେ ଭଲ ମନ୍ଦ ଜାଣିଲାଣି । ଲାଜ ସରମ କାହାକୁ କହନ୍ତି ସେ ବୁଝିଲାଣି । ସେତେବେଳକୁ ସେ ତା' ଘର ଭଙ୍ଗା କୁଡ଼ିଆର କାନ୍ଥସାକ ସିନେମା ଛବିରେ ଭରିଦେଲାଣି । ସିନେମା ଗୀତ ବୋଲିବା ଆରମ୍ଭ କଲାଣି । ବେଳେବେଳେ ବଇଁଶୀ ବଜେଇ ଦୁଖୀକୁ ଗୀତ ଶୁଣେଇଲାଣି । ଦିନେ ସେ ଗୋପାଳକୃଷ୍ଣଙ୍କର ଗୋଟିଏ ଗୀତ ବଇଁଶୀ ସ୍ୱନରେ ବୋଲି ଦୁଖୀକୁ ଶୁଣେଇଲା—

"ଏତେବେଳକୁ ହେ ମୁଖ
ଦିଶିଲା କି ଆଜ

ପଥବଣା ହୋଇଲ କି
ବ୍ରଜ ଯୁବରାଜ ?"

ଗୀତଟି ଗାଇସାରି ରଙ୍କ ଯେତେବେଳେ ଦୁଖୀକି ପଚାରିଲା— ମାଆ, ଆଉ ବୋଲିବି ? ଦେଖିଲା, ମାଆ ସେତେବେଳେ ତାର ଆଖିକୋଣ ଲୁଗାକାନିରେ ପୋଛୁଛି । ସେ ଥକାଗଲା । ସେହିଦିନ ତାର ଧାରଣା ହେଲା ଆସିଲା ମାଆ ଆଗରେ ଗୀତ ବୋଇଲେ ମାଆ କାନ୍ଦୁଛି । ସେ ଜାଣିପାରିଲା ନାହିଁ, ଗୀତ ଶୁଣି ମାଆର କାହା ମୁହଁ ମନେ ପଡ଼ୁଛି । ମାଆ କଳୁ ସେ କଥା ବୁଝିଲା । ଦିନେ ଦିନେ ରଙ୍କ ଆସି ଘର ଭିତରେ

ଦେଖେ, ମାଆ କାନ୍ଥରେ ମରାଯାଇଥିବା ଯୁବତୀଙ୍କର ଛବିଗୁଡ଼ିକୁ ତା'ର ବନ୍ଧ ବର୍ଷ ଧରି ଲୁଗା ଶପୁଡ଼ା କର୍କଶ କରାଙ୍ଗୁଳରେ ଆଉଁସୁଛି । ରଙ୍କ କହେ—ମାଆ, ହାତ ମାରେ ନା, ମଇଳା ଲାଗିଯିବ । ଦୁଖୀ ଚମକିଲା ପରି କହେ—ହଁରେ ପୁଅ, ମଇଳା ଲାଗିଯିବ । ଦେଖୁନୁ ମୋ ଦେହଟା କମିତି ହୋଇଗଲା ! ଏ କଥା କହିଦେଇ ପୁଣି ସେ ଚମକିଲାପରି ହୋଇ-ଯାଏ । ଭାବେ, ଏ କଥା ରଙ୍କୁ ନ କହିଥିଲେ ଭଲ ହୋଇଥାନ୍ତା । ଯୌବନ ଯେ ଦିନେ ମାଟି ହୋଇଯାଏ, ତା ଦେହରେ ଶିଉଳ ମାଡ଼ିଯାଏ, କନକ ଅଙ୍ଗରେ ଧୂଳି ପଟଳ ପଡ଼ି ଲେସିହୋଇଯାଏ, ଏକଥା ଦୁଖୀ ବର୍ଣ୍ଣନା କରି ନ ପାରିଲେ ମଧ୍ୟ ବୁଝିପାରେ । ରଙ୍କ କିନ୍ତୁ ଏ ସବୁର ତତ୍ତ୍ୱ ବୁଝେ ନାହିଁ ।

ଆଗରୁ କୁହାଯାଇଛି ଦୁଖୀ ଆଖିକୁ ପାତ ରାତି ନିଦ ଆସିଲା ନାହିଁ କାହିଁକି । ସହରଠାରୁ ଦୂରରେ ଥିବା ସେହି ମଫସଲ ଗାଁରେ ଦିନେ ଏକ ସର୍କସଦଳ ଯାଇ ହାଜର ହେଲା । ଗାଁ ମୁଣ୍ଡେ ଦୁଖୀର ଘର । ଦୁଖୀର ଘରପାଖ ପଡ଼ିଆରେ ସର୍କସ ଚାଲିଲା । ସର୍କସ ବୋଇଲେ ଗୋଟିଏ ଭାଲୁ, ଦୁଇଟି ଛେଳି, ଦୁଇଟି ମାଙ୍କଡ଼, ଗୋଟିଏ ଓଟ ଛଡ଼ା ଦଶଟି ଥିଲେ ଯୁବତୀ । ଲୋକେ ଭାଲୁ, ମାଙ୍କଡ଼, ଛେଳିଙ୍କ ନାଟ ଦେଖିବାକୁ ଯେତେ ଆସୁ ନଥିଲେ ଆସୁଥିଲେ ସେହି କଳାକୁଶଳୀ ଯୁବତୀମାନଙ୍କର ଅଙ୍ଗଭଙ୍ଗୀଜନିତ ନୃତ୍ୟ ଦେଖିବା ପାଇଁ ।

ରାତି ଆଠଟାରୁ ସର୍କସ ଆରମ୍ଭ ହୋଇ ସକାଳ ବେଳକୁ ଘଣ୍ଟା ଏକ ବାଜେ । ଲୋକେ ଗାଁକୁ ଫେରିଲାବେଳକୁ କିଏ ଶୁଏ ଦୁଇଟା ବେଳେ, କିଏ ଶୁଏ ଚାରିଟା ବେଳେ, କିନ୍ତୁ ଦୁଖୀ ଆଦୌ ଶୁଏ ନାହିଁ । ଯେଉଁ ଦିନ ଶୁଣାଗଲା ଯେ ସର୍କସ ଦଳ ଆଉ ଦି'ଦିନ ପରେ ସେ ସ୍ଥାନ ଛାଡ଼ି ଅନ୍ୟ ଆଡ଼େ ଚାଲିଯିବେ ଦୁଖୀ ସେ ଦିନ ପାହାନ୍ତିଆ ପହରରେ ଭାବୁ ଭାବୁ କହିପକାଇଲା—ରଙ୍କ, ତୁ ଯାଆନା ରେ ! ଭାବିଥିଲା ରଙ୍କ ସେତେବେଳକୁ ନିଘୋଡ଼ ନିଦରେ ଶୋଇଥିବ; କିନ୍ତୁ ସେ ଜାଣେନା, ସର୍କସ ଆସିଲା ଦିନୁ ରଙ୍କ ଆଖିକୁ ମଧ୍ୟ ନିଦ ନାହିଁ । ଦୁଖୀ କାନକୁ କେତେ ଆଡ଼ୁ କେତେ କଥା ଆସିଲା । ସବୁ କଥାର ସାର ଅର୍ଥ ହେଲା—ରଙ୍କ ପାଠପଢ଼ା ଛାଡ଼ି

ସର୍କସ ଦଳରେ ଚାଲିଯିବ । ସେଇ ଯେଉଁ ସୁବର୍ଣ୍ଣ—ନାଁ ତାର ଇନ୍ଦୁ କ ବନ୍ଦୁ କ ସିନ୍ଧୁ, ସେ ଜାଣେନା, ତାରି ସାଙ୍ଗରେ ସେ କଥା ହୋଇଚି । ସେଇ କଥା ଭାବି ଭାବି ଦୁଃଖୀ କହିପକାଇଲା—ରଙ୍କ, ତୁ ଯାଆନା ରେ !

ରଙ୍କ କେବଳ ତହିଁର ଏତିକ ଉତ୍ତର ଦେଲା – ମାଆ !

ଦୁଃଖୀ ପୁଣି କହିଲା—ରଙ୍କ, ତୁ ଯାଆନା ରେ !

ଏତିକ କହି ମଇଳା ଲୁଗା ବୁଜୁଳା ଭିତରେ ମୁଣ୍ଡ ଗୁଞ୍ଜି ଦୁଃଖୀ ପଡ଼ି ରହିଲା । ଯେତେବେଳେ ମୁହଁ ଟେକିଲା ସୂର୍ଯ୍ୟ ଉଠି ସାରିଲେଣି । ରଙ୍କ ବି ଶେଯରୁ ଉଠିସାରିଲାଣି । ଦିନ ହେଲେ ବି ତାକୁ ଅନ୍ଧାର ଦିଶିଲା । ଆଖି ବୁଜି ଜୀବନର ମୂଳରୁ ଏ ପର୍ଯ୍ୟନ୍ତ ସେ ସବୁ ଦେଖି ଆସିଲା । ଦେଖିଲା—ଯୌବନ ଛଳଛଳ ତାର ସେଇ ଅଙ୍ଗ ଗୌରବ ଦେଖି କେତେ ଭ୍ରମର ଉଡ଼ି ଆସୁଛନ୍ତି ତାରି ଆଡ଼କୁ । କେତେ ଆସି ତାର ସେଇ ଗୋଲାପ କଣ୍ଟାରେ ବନ୍ଧା ହୋଇଯାଉଛନ୍ତି । କେତେ କଏ ପୁଷ୍ପ-ରଜରେ ଅନ୍ଧ ହୋଇଯାଉଛନ୍ତି । କେତେବେଳେ ଚନ୍ଦ୍ର ଅସ୍ତ ହେଲା, ଫୁଲ ମଉଳି ଗଲା, ନଦୀର ସ୍ରୋତ ଶୁଖିଗଲା, ସେ ବ୍ୟାକୁଳ ହୋଇ ଉଠିଲା ! ଆଖି ଫିଟେଇ ଦେଖିଲା, ଯାହାର ପଛରେ ଏତେ କଥା ହେଉଥିଲା ସେ କୁଆଡ଼େ ଚାଲିଯାଇଛି !! ତା ଜାଗାରେ ଭଙ୍ଗା କୁଡ଼ିଆରେ ବସିଛି ଦୁଃଖୀ । କହୁଛି—ରଙ୍କ, ତୁ ଯାଆନା ରେ !

ଷାଠିଏ ଟି ବସନ୍ତ ପାର ହେଲା ପରେ ଦୁଃଖୀ ଆଖିରେ ଯେ ଏତେ ଲୁହ ଥିଲା ସେ ଭାବି ପାରି ନଥିଲା । ଜୀବନର ଶେଷ ରକ୍ତ ବୋଧହୁଏ ପାଣି ଫାଟି ତାହାର ଦୁଇ ଆଖି ବାଟେ ଦୁଇ ଧାର ହୋଇ ବୋହିଗଲା । ଜଗତଟା ତାକୁ ଅନ୍ଧାର ଦିଶିଲା । କୁଡ଼ିଆ ଭିତରେ ଧୂରିଆଡ଼କୁ ହାତ ବୁଲେଇଲା, ରଙ୍କକୁ ସେ ଛୁଇଁ ପାରିଲା ନାହିଁ । ସେତେବେଳକୁ ସର୍କସବାଲା ସେମାନଙ୍କର ଡେରା ଉଠାଇସାରିଲେଣି । ଜୀବନର ସନ୍ଧ୍ୟାବେଳେ, ଆଗରୁ ଘୋର ରାତି ମାଡ଼ି ଆସୁଥିଲା ବେଳେ ଦୁଃଖୀକି ଦେଖାଗଲା—ଖୁବ୍ ଦୂରରେ ଗୋଟିଏ ତାରା—ସେ ତାରାଟି ଜକଜକ ଜଳୁଛି, ତାକୁ ସେ ହାତ ବଢ଼େଇବାକୁ ଚେଷ୍ଟାକଲା । ହାତ ତାର ପାଇଲା ନାହିଁ । ସେଇ ତାରାଟି

ହେଉଛି ତାର 'ରଙ୍କ', ଦରିଦ୍ରର ରଙ୍କନିଧି, ପ୍ରାଣର ରଙ୍କ ସେ ସର୍କସ-ଯୁବତୀର ପଛେ ପଛେ କୁଆଡ଼େ ଚାଲିଗଲା ! ଦୁଃଖୀ ପଛକୁ ଚାହିଁ ଦେଖିଲା—ଚାଲିଶି ପଚାଶ ବର୍ଷ ତଳେ ତା ପଛରେ ଯେପରି କାହା ଘରର କେତେ ତାଗ ବାଛ ଅବାଛ ନ ଜାଣି ଗୋଡ଼ାଉଥିଲେ, ତାର ରଙ୍କ ବି ସେହିପରି ଗୋଡ଼େଇ ଚାଲିଗଲା ଅନ୍ୟ ଲୋକ ପଛରେ !

ରଙ୍କ ଆଉ ନାହିଁ । ରଙ୍କ ଯାଇ ସର୍କସ ଦଳରେ । ମାତ୍ର ଦୁଖୀ ଦୁର୍ଦ୍ଦିନ ରାତିରେ ଆଖି ବୁଜିଲେ ଦେଖୁଛି, ଆଖି ଫିଟେଇଲେ ଦେଖୁଛି—ଆଗରେ ଏକ ସର୍କସ ଚାଲିଛି । ଛଳ ଛଳ ଯୌବନର ଅଙ୍ଗଭଙ୍ଗୀ ଦେଖାଇ ଜଣେ ଯୁବତୀ ନୃତ୍ୟ କରୁଛି, ତଳେ ତାର ରଙ୍କ ତାକୁ ଧରିପକାଇବା ପାଇଁ ଚେଷ୍ଟାକରୁଛି, ଆଉ ସେତିକବେଳେ ଦୁଖୀ ତାର ଶ୍ଳଥଚର୍ମ ହାତ ଦୁଇଟାକୁ ଉପରକୁ ଟେକି ରଙ୍କକୁ ଡାକି କହୁଛି—'ରଙ୍କ, ତୁ ଯାଆନା ରେ !'

ରଙ୍କ ଆଉ ଫେରିଲା ନାହିଁ ।

# ପ୍ରେମର ଫସଲ

ତା ପରେ ଅନେକ ଦିନ ଭାବିଛି—ଏ ପର୍ବତଗୁଡ଼ାକ କଥା କହନ୍ତି କି, ଏ ଗଛପତ୍ର ସବୁ ଗୀତ ଗାଆନ୍ତି କି, କେଉଁ ଅନାଦିଯୁଗର ପଥରଗୁଡ଼ାକ ନାଚନ୍ତି କି ? ଭାବି ଭାବି ନରସିଂହପୁରର ସେହି ଗିରିସଙ୍କୁଳ ନିଷ୍ପନ୍ଦ ଧରଣୀର ଏକ କୋଣରେ ଫସଲ କିଆରିର ହିଡ଼ା ଉପରେ ବେଳେ ବେଳେ ବସିଛି । ବସି ବସି ଆଖି ବୁଜି ଅନେକ କଥା ଦେଖିଛି; କିନ୍ତୁ କାହା କଥା କିଛି ଶୁଣିନାହିଁ ।

ଦିନେ ସନ୍ଧ୍ୟାବେଳେ ସୁନା ପିଣ୍ଡୁଳା ପରି ସୂର୍ଯ୍ୟ ଯେତେବେଳେ ଦୂରର ସେହି ମଣିଭଦ୍ରା ପାହାଡ଼ ସେପଟକୁ ଲୁଚି ଯାଉଥିଲା ସେତିକିବେଳେ ମୋ ପାଖ ଦେଇ ଦୁଇଟି ପାଦର ଶବ୍ଦ ଶୁଣାଗଲା । ଚମକି ଆଖି ଫିଟେଇ ଚାହିଁଲି । ଜଣେ ଅନ୍ୟ ଜଣକୁ ପଚାରିଲା—ଆମେ ଚାହା-ହେଲେ ଟିକିଏ ଏଠିଛେଇ ରହିପିବା ? ଯିଏ ପଚାରିଲା ସେ ଜଣେ ଯୁବକ । ଯାହାକୁ ସେ ପ୍ରଶ୍ନ କଲା ସେ ଜଣେ ଯୁବତୀ ।

ଯୁବତୀ କହିଲା—ହଁ ।

ଏହିଠାରୁ କଥାଟି ଆରମ୍ଭ ।

କେଉଁ ଦିନ ଏ ଗାଁର ସତ୍ୟଭାମା ସହିତ ସେ ଗାଁର ରୁକ୍ମିଣିଆର ବିବାହ ହେଲା ସେ ଦୁହିଁଙ୍କର ସଫା ମନେ ନାହିଁ । ରୁକ୍ମିଣିଆ ଆର ଗାଁର ।

ସେ କେବେ ହେଲେ ଆଗରୁ ସତ୍ୟଭାମା ସଙ୍ଗରେ ଧୂଳି ଖେଳ ନଥିଲା, କି ଏ ଗାଁର ସତ୍ୟଭାମା ସେ ଗାଁର ଗଉଡ଼ଙ୍କ ପୁଅ ରୁଡ଼ିଆ ସାଙ୍ଗରେ ହାତ ଧରାଧରି ହୋଇ କେବେ କୁଆଁରେଡ଼ ବୁଲିଯାଇ ନଥିଲା । ଯେତେବେଳେ ବୟସ ବଢ଼ିଲା, ପିଲା ଖେଳରୁ ମନ ଓହରିଗଲା । ଘରଲୋକ ଜାଣିପାରିଲେ ଯେ ଆଗରୁ ସେମାନେ କେବେ ବରକନ୍ୟା ହୋଇସାରିଛନ୍ତି ।

ନରସିଂହପୁରର ପାହାଡ଼ତଳିଆ ଦୁଇଟି ଛୋଟ ଛୋଟ ଗାଁ— ମଝିରେ କେବଳ ଅଧ ମାଇଲିଏ ବାଟ ତଫାତ । ଗାଁରେ ଠିଆହେଲେ ଗଡ଼ର ରଜା ଘର ଉଆସର ଉପର ମହଲା ଦିଶେ । ଗାଁ ଲୋକଙ୍କର କାରବାର ବିଲ, ପାହାଡ଼, ନଈ, ପୋଖରୀ ସହିତ ଯେପରି ଗଡ଼ ସହିତ ମଧ୍ୟ ସେହିପରି । ହାଟ ବଜାର ଗଡ଼ରେ । ଟିକିଏ କ'ଣ ଜିନିଷ ଦରକାର ହେଲେ ଗଡ଼କୁ ଧାଇଁଯିବାକୁ ପଡ଼େ । ଗଡ଼ ଲୋକଙ୍କର କୁଲି ମଜୁରିଆ ଦରକାର ହେଲେ ସେଇ ଦୁଇ ଗାଁକୁ ଆଶ୍ରୟ କରିବାକୁ ହୁଏ । ତେଣୁ ନଖକୁ ମାଉଁସ ପରି ଗଡ଼ ସହିତ ସେମାନଙ୍କର ସମ୍ପର୍କ । ଗଡ଼କୁ ଛାଡ଼ିଦେଲେ ସେମାନଙ୍କର ଚଳିବାର ବାଟ ନାହିଁ । ଅନ୍ୟ ଦୃଷ୍ଟିରୁ ପାଇଟିପଇଟ ପାଇଁ ଗଡ଼ର ଲୋକେ ଏ ଦୁଇ ଗାଁର ଲୋକଙ୍କ ଉପରେ ପ୍ରାୟ ବାର ପଣ ନିର୍ଭର କରନ୍ତି

ନରସିଂହପୁର ଅଞ୍ଚଳରେ ଧନୀ ବୋଇଲେ ଯାହାର ଯେତେ ବେଶି ଜମି ଅଛି ତାକୁ ବୁଝାଏ । ପାଞ୍ଚ ଦଶଟା ହଳ, ଦଶ ପନ୍ଦର ଜଣ ହଳିଆ ଥାଇ ଗଉଡ଼ଙ୍କ ଘର ଏହିପରି ଜଣେ ଧନୀ ପରିବାରର ଘର । ହେଲେ, ଘରକୁ ଦେଖିଲେ ଗାଁର ବାର ପଣ ଘର ଯିମିତି ତାଙ୍କ ଘରଟା ବି ସିମିତି । ସେହିପରି ଗୃହ ସେହିପରି ପିଣ୍ଡା, ଅଧିକରେ ପିଣ୍ଡାଟା ପଥରରେ । ବର୍ଷକୁ ଖଜଣା ଗଣାଯାଏ କୋଡ଼ିଏ କି ଦି' କୋଡ଼ି ଟଙ୍କା, ମାତ୍ର ଘର ଖଣ୍ଡିକ ନଇଁପଡ଼ିଲେ ବି ଟେକାଯାଏ ନାହିଁ । ତାର କାରଣ ଅତି ଗୂଢ଼ ହେଲେ ବି ସମସ୍ତେ ଜାଣନ୍ତି । ସମସ୍ତେ ଜାଣିଲେ ବି କିଏ କାହାକୁ ଖୋଲି କହନ୍ତି ନାହିଁ । ତହିଁର ଅସଲ କାରଣ ହେଲା ରାଜଦୃଷ୍ଟି । ରଜାଙ୍କ ଘର ପଥରରେ । ରଜାଙ୍କ ପରି ଘର କିଏ କରିବ ? କଲେ ବଂଶକୁ ସହିବ ନାହିଁ, ଏ ଧାରଣା ମଧ୍ୟ ଅନେକଙ୍କର । ଗଡ଼ଜାତ ପ୍ରଜାଙ୍କର ଏହା କଦାପି

ଭକ୍ତିସମ୍ଭୂତ ନୁହେ, ଏହା ହେଉଛି ଭୟସମ୍ଭୂତ । ରଜାଙ୍କୁ ଘେରି ରହିଥାନ୍ତି ଖୋଷାମଦିଆ ଖଚୂଆଦଳ, କାନରେ ଫୋଡ଼ିଦେବେ—ମଣିମା, ଲୋକଟାର ହାତରେ ହେଲାଣି । ଶିଖେଇବ, ମେଳ କରିବ, ବୁଦ୍ଧି ବଢେଇବ — ମୁଣ୍ଡ ମାଇଲେ ଯିବ ସବ । ତେଣୁ ଖଜଣା ପଡ଼ିବ ସେଇ ଘରେ ବେଶି । ମାଗଣ ହେବ ବେଶି । ପୋଷା ହାତୀ ବନ୍ଧାହେବେ ସେଇ ଦୁଆରେ । ରାଜ କର୍ମଚାରୀ ବଧା ବାନ୍ଧିବେ ସେଇଠି । ଏହିପରି କେତେ କଷ୍ଟ ଅଛି ପଥର ଘରକୁ । ତେଣୁ ରାଉତରା ଘର ଧନୀ ଘର ବୋଲି ଡାକ ଥିଲେ ବି ବାହାରକୁ ଜଣାଯାଏ ନାହିଁ ।

ମାତ୍ର ଗରିବ ଓ ଧନୀ ଭିତରେ ଖାଲି ଘର ତୁଳନା କରି ଜାଣି ହେବ ନାହିଁ । ଚାଲି ଚଳଣି, ପୋଷାକ ପରିଚ୍ଛଦ, କଥାବାର୍ତ୍ତା, ରୂପଗୌରବ ସବୁ ଆଡ଼କୁ ବିଚାରକରି ଦେଖିବାକୁ ହେବ । ଏହି ଦୃଷ୍ଟିରୁ ଦେଖିଲେ ରାଉତରା ଘର ପିଲାଏ ହଜାରେ ଲୋକରେ ବାରିହୋଇଯାନ୍ତି । ସେହି ଘରର ବଡ଼ ପୁଅ ରୁଷିଆ । ଯେତେ ଲୋକ ଗହଳରେ ଥିଲେ ବି ଲୋକେ ତାକୁ ଚିହ୍ନି ପକାନ୍ତି । ଓସାରିଆ ଲୁଗାପିନ୍ଧା, ସଫା ଚେହେରା, ପାନଖିଆ ତୁଣ୍ଡ —ଦେଖିଲେ ଜାଣିହେବ ପିଲାଟା ଗୋଟେ ଥିବା ଘରର ପିଲା । ବୟସ ସତରରୁ ବେଶି ନୁହେ, ଆକାର ପ୍ରକାର ଦେଖି ନ ଜାଣିବା ଲୋକ କହିବ କୋଡ଼ିଏରୁ ଊଣା ନୁହେ ।

ଆଉ ଗାଁର କନ୍ଧ ଗୋଷ୍ଠିକୁ ଦିନ ମୂଲିଆ କହିଲେ ଚଳିବ । ହାତ ଚଳିଲେ ପେଟ ଚଳେ । ସେ ଘର କିନ୍ତୁ ଆଗେ ଏପରି ନ ଥିଲା । ତାର ବୋପେଲିଁବାପା ନରସିଂହପୁର ବୁଢ଼ା ରଜାଙ୍କର ଥିଲା ଦିନେ ପାଖଲଗା-ଲୋକ । ସେ ଥିଲେ ପାଞ୍ଚ ଭାଇ । ବୁଢ଼ା ରଜା ଚାଲିଗଲେ । ରାଜ୍ୟ କେତେ ଦିନ ଅରାଜକ ହୋଇଗଲା । ଯାହାଙ୍କ ବଳରେ ସେମାନେ

ନାଚୁଥିଲେ ସେ ଚାଲପିବାରୁ ତାଙ୍କୁ ବିପଦ ମାଡ଼ିଆସିଲା । ଯାହାର ଯେତେ ଶଷା ଭାଗ ଥିଲା ସମସ୍ତେ ଶୁଟେଇଲେ ସେତିକିବେଳେ । ଭାଇମାନେ ଭିନେ ଭିନେ ହୋଇ କିଏ କୁଆଡ଼େ ଚାଲିଗଲେ । କନ୍ଧ ଗୋଷ୍ଠୀ ରହିଲା ମାଟି କାମୁଡ଼ି ସେହି ଗାଁରେ ।

ଚାଷୀପୁଅ ଚାଷ କଲା । ହେଲେ ତା ଭାଗ୍ୟକୁ ଗୋଷ୍ଠିଆଣୀଙ୍କ କୋଳରେ ହେଲେ ପାଞ୍ଚ ଝିଅ । ସମସ୍ତଙ୍କୁ ଖୁଆଇ ପିଆଇ ହାତକୁ ଦି' ହାତ କରିବା ତା ପକ୍ଷରେ ହେଲା କାଠିକର ପାଠ । ଝିଅ ହେଲେ କ'ଣ ହେଲା, ଗୋଟିଏ ଗୋଟିଏ ଚାଉଳରେ ସତେ ଯେପରି ସେମାନେ ଗଢ଼ା । ରୂପରେ ଯେପରି ଟୋପା, ଗୁଣରେ ସେପରି ଚତୁର । ଘରର ମର୍ଯ୍ୟାଦା ଦାଣ୍ଡରେ ପକେଇଦିଅନ୍ତି ନାହିଁ । ଘରେ ପେଜ ତୋରାଣି ହେଲେ ମଧ୍ୟ ମୁହଁ ଖୋଲି କେବେ ବାହାରେ କହନ୍ତି ନାହିଁ । ବାପ ହଳ ଧରି ବିଲ ଉଠିଆକରେ, ଏମାନେ ଫସଲ ବୋହିଆଣନ୍ତି । ବାପ ବଣରେ ପଶି କାଠ କାଟିଦିଏ, ଏମାନେ ଥିବାରୁ ଶଗଡ଼ ଦରକାର ହୁଏ ନାହିଁ । ଇମିତି ଇମିତି ଚାଲି କନ୍ଧ ଗୋଷ୍ଠର ଚାରୋଟି ଝିଅ ହେଲେ ହାତକୁ ଦି' ହାତ । ସାନଝିଅ ସତ୍ୟଭାମା ବେଳକୁ ବୁଢ଼ାର ପଡ଼ିଲା ଭାଳେଣି । ସତ୍ୟଭାମାକୁ ସେତେବେଳକୁ ଚାରି ବର୍ଷ । ରାଉତରା ଘର ରୂଷିଆ ସହିତ ତାର ହେଲା ବାହାଘର ।

ବୁଢ଼ା ରାଉତରାଙ୍କର ଅଚଳାଚଳ ସମ୍ପତ୍ତି ଥିଲେ ମଧ୍ୟ ଦିନେ ହେଲେ ସେ ବାହାରେ ଦେଖେଇହୁଅନ୍ତି ନାହିଁ । ଦେହରେ ସବୁବେଳେ ଲୁଗା ଆଉ ଗାମୁଛା । ଅଙ୍ଗୀ ବା ଜାମା ବୋଲି ଜିନିଷ ସେ କେବେହେଲେ ପିନ୍ଧି ନାହାନ୍ତି । କଥାକଥାକେ କହନ୍ତି—ଆରେ, ଲୁଗା କିଣିବ, ତାକୁ ପୁଣି ସାତ ଖଣ୍ଡ କରି ଚିରି ସିଲେଇକରିବ, ତା ପରେ ତାକୁ ପିନ୍ଧିବ—

ଏତେ ଅଡୁଆରେ କିଏ ପଶିବ ? କଣିବ ତ ପିନ୍ଧିବ—ସ୍ବାଦୁ ସୁବିଧା ଆଉ କଣ ଅଛି ? ଗାଁର ଟୋକା ଠାକଲଆମାନେ ଏ କଥାକୁ ହସି ଉଡ଼େଇ-ଦଅନ୍ତି ।

ବୃଦ୍ଧି ହେଲା ପରଠାରୁ ରୁଷିଆ ଗାଁର ପାଞ୍ଚ ପିଲାଙ୍କ ପଙ୍କ୍ତ ଏକା ହେଲା । ବୁଢ଼ା ଗଉତରାଙ୍କ ପୁରୁଣାକାଳିଆ ଢଙ୍ଗ ତାଠାରେ ରହିଲା ନାହିଁ । ଗଉତରା ମଧ୍ୟ ସବୁ ଦେଖି କାଳକୁ ଗୃହିଁ ତୁନି ହୋଇଗଲେ । କେତେବେଳେ କମିତି ପୁଅକୁ ଭିଆରବସିଲେ—ଘରର ହଳିଆ ମୂଲିଆ ବୁଢ଼ାକୁ ଦେଖେଇଲା ପରି କହିହଅନ୍ତି—ସମସ୍ତେ କଣ ତମରି ପରି ହେବେ ସଉକାରେ ! ତମେ ଆମ ରୁଷିଆ ବାବୁଙ୍କୁ ଆଉ ଏତେ ଭିଆରିବ ନାହିଁ । ତଳ ଉପରକୁ ଗୃହିଁ ଗଉତରେ ମୁଣ୍ଡ ଟୁଙ୍ଗାର କହନ୍ତି—ହିଁ ରେ, ତମେ କିଆଁ ନ କହିବ ? ଏ ସବୁ ଢଙ୍ଗତାଙ୍କୁ ଜଗିଥିଲି ବୋଲି ସିନା ବାପାଙ୍କ ସମ୍ପତ୍ତିରେ ପାଞ୍ଚ ମାଣ ମିଶେଇଲି, ଇଏ କଣ ଆଉ ପାରିବ ? ଖରଚ ବଢ଼ିଲେ ବଢ଼ି ଗୁଲିବ ନଈବଢ଼ି ପରି । ତାକୁ ସମ୍ଭାଳି ପାରିଲେ ହେଲା । ହଉ, ଆଉ ପାଞ୍ଚ ଦଶ ବର୍ଷ ପାଇଁ ତୁଣ୍ଡ ଫିଟେଇବି କାହିଁକି ? ରୁଷିଆର କଣ ବୃଦ୍ଧି ହୋଇନାହିଁ ? ହାତକୁ ତ ହ' ହାତ କରିସାରିଛି । କାଲିକି ତ ଆସିବ ବୋହୂ । ସେହିମାନେ କରିବେ ଘରଦ୍ୱାର । ଆମ କଥା ଆଉ କ'ଣ ରହିବ ! କ'ଣ କହୁଚ ?

କନ୍ଧ ଗୋଛିର ଝିଅ ସତ୍ୟଭାମାକୁ ଷୋଳ ପୂରି ସତର ପଶିଲା ବେଳକୁ ଗଉତରା ଘରୁ ଛ'ଥର ବୋହୂ ଡ଼ାକରା ଆସି ସାରିଲାଣି । କ୍ଷେତ କିଆରିରେ, ଗାଧୁଆ ତୋଠରେ, ମାଇପିଙ୍କ ଭିତରେ ଏଇ କଥା—ଭିଆଡ଼ୀ ଝିଅଟାକୁ ଆଉ ଘରେ ସାଇତି ରଖିବା ଭଲ ନୁହେଁ ।

ତେଣେ ଗଉତରାଙ୍କ ଘରେ ନାନା ବଗୁର ପଡ଼ିଲା । କିଏ କହିଲା —ବାପ ଗ୍ରୁଡ଼ୁନି, କିଏ କହିଲା—ଝିଅ ଆସିବାକୁ ପସନ୍ଦ କରୁନି । ହ' ସମନ୍ଧିଙ୍କ ଭିତରେ ଟାଣ ଟାଣ କଥା ଆରମ୍ଭ ହୋଇଗଲା । ଗଉତରେ କହିଲେ—ଦେଖ ସମନ୍ଧି, ରୁଷିଆ ସିନା ମୋର କଚ୍ଛି ମୁହଁ ଫିଟେଇ କହୁନି,

ହେଲେ ସିଏ କଣ ବୁଝିପାରୁନ ? ତୁମ ଘର ଅଚଳ ହଉଚି ବୋଲି କଣ ମୋ ଘରଟା ଭାଙ୍ଗିଦେବା ଭଲ ହେବ ?

କନ୍ଧ ଗୋଛୁ ସମଧିଙ୍କ ହାତ ଦ'ଟା ଧରିପକାଇ କହିଲା — ଇମିତି କଥା କହ ନାହିଁ, କହ ନାହିଁ । କାହା ଘର ଭାଙ୍ଗିବ ? ମୋ ସତ୍ୟଭାମା ଘର ? ଏ ଫସଲଟା ଉଠିଯାଉ, ଚଇତ ପର୍ଯ୍ୟନ୍ତ ପଠାଇଦେବ । ଏତିକି କହି ଆଖି ଛଳ ଛଳ କରିପକାଇଲା । ଓଠ ଥରି ଆସିଲା । କଥା ବନ୍ଦ ହୋଇଗଲା । କହିଥିଲେ ସେ କହି ପାରିଥାନ୍ତା, ବିଲ ମାଣେ ବିକିବାକୁ ଦର ପଡ଼ୁନ, ଫଗୁଣ ମାସକୁ କମିତି ହେଲେ ଯୋଗାଡ଼ କରିବ । ଆଉ କହି ଅପମାନ ଦିଅ ନାହିଁ ।

ଝିଅ ଶାଶୁଘର ଯିବା କଥାଟା କିନ୍ତୁ କନ୍ଧ ଗୋଛୁ ଆଉ ଗଉନ୍ତିଆଙ୍କ ଭିତରେ ସୀମାବଦ୍ଧ ରହିଲା ନାହିଁ । ଗାଁ ଲୋକେ ଜାଣିଲେ ଯେ କିଛି ଗୋଟାଏ ଗୋଳମାଳ ଆଡ଼କୁ କଥାଟା ଯାଉଚି । କାରଣ, ସେମାନେ ବରାବର ଦେଖିଲେ ରୁଡ଼ିଆ ଗାଁର ଆର ସେ ପାଖ ବିଲମାଳକୁ ସବୁବେଳେ ଯାଉଚି । ଫେରିଲାବେଳକୁ ବେଳବୁଡ଼ । ସେପାଖେ ତାଙ୍କର ଜମିବାଡ଼ି । କନ୍ଧ ଗୋଛୁର ବି ସେଇ ବିଲ ପାଖେ ଚାରି ମାଣ ଚାଷ । ସତ୍ୟଭାମା ବି ବେଳେ ବେଳେ ବିଲକୁ ଯାଇ ବାପାକୁ ସାହାଯ୍ୟ କରେ । ଏହି ସବୁ ଘଟଣା ଦେଖି ଗାଁର ଖଳ ଲୋକେ ଟୁପୁଟାପ କଥା ହେବାର ଶୁଣାଗଲା, ପୁଅଝିଅ ଏବେ ବିଲମାଳରେ ଲୋ ବିଲମାଳରେ !

ରୁଡ଼ିଆ ଯେଉଁ କାରଣରୁ ସନ୍ଧ୍ୟାବେଳେ ସେ ପାଖ ବିଲମାଳକୁ ଯାଉ ନା କାହିଁକି, ସତ୍ୟଭାମା ଯାଏ ବାପାକୁ ସାହାଯ୍ୟ କରିବାକୁ । ସେ ଧାନ ରୁଏ, ବିଲ ବାଛେ, ଗାଈ ବାଛୁରି ପାଇଁ ବାପା ଘାସ କାଟିଦେଲେ ମୁଣ୍ଡରେ ବୋହିଆଣେ । ଅମଳ ,ସମୟରେ ବିଲର ଅଧିକ ଧାନ ତା ମୁଣ୍ଡରେ କୁ ଆସେ । ତେଣୁ ଗାଁର କେହି କେହି କହିବାର ଶୁଣାଯାଏ—କନ୍ଧ ଗୋଛୁର ଚାରି ଝିଅରେ ଏ ଝିଅଟି ତାର ପୁଅ ।

ସତ୍ୟଭାମା ତାର ରୂପ ଢଳ ଢଳ ବଳିଷ୍ଠ ଅଙ୍ଗକୁ କଠୋର ପରିଶ୍ରମରେ ଖଟାଇ ବାପାର କାମକୁ ଅଧେ ଲାଘବ କରିଦିଏ । ଝିଅର ପରିଶ୍ରମ ଦେଖି କନ୍ଧ ଗୋଛ୍ଛି ବେଳେ ବେଳେ କହେ—ଝିଅ ଲୋ, ଇମିତି କାମ କଲେ ଲୋକେ ବୋଲିବେ କ'ଣ ! ସେ ଗାଁ ଲୋକେ ଏ ବାଟରେ ଗଲାବେଳେ କଥାବାର୍ତ୍ତା ହୋଇ ଯାଉଚନ୍ତି, ଆଉ, ମୁଁ ହାବୁଡ଼ରେ ପଡ଼ିଲେ ଚୁପ ହୋଇଯାଉଛନ୍ତି, ତୁ ଆଉ ବିଲବାଡ଼ିକି ଆସେ ନା ।

ବାପା ମୁହଁରୁ ଏକଥା ଶୁଣି ସତ୍ୟଭାମା ମୁଣ୍ଡ ଟିକିଏ ନୁଆଁଇ ରଖି କଣ ଭାବେ । ଆଖିରେ ଲଜ୍ଜାର ଆଭାସ ଦେଖାଯାଏ । ପିନ୍ଧିବା ଶାଢ଼ୀକି ଟିକିଏ ସଜେଇଲା ପରି ଟାଣିଧରି ଓଢ଼ଣାକୁ ଆଉ ଟିକିଏ ଟେକିଦେଇ ବାପାକୁ କହେ – ନାଇଁ ବାପା, କିଏ କଣ କହିବେ ବୋଲି କଣ ଏ ବୟସରେ ତୁମେ ବିଲରେ ଖଟିବ, ମୁଁ ଘରେ ବସିଥିବି ! ମୁଁ ଏସବୁ କାମକୁ ପାରୁଚି ତ ! ତୁମେ ଏତେ କଥା ଭାବୁଚ କିଆଁ ?

ସେତେଣେ ରାଉତର ଘରେ ବୋହୂ ଅଣା କଥା ପଡ଼ିଲାବେଳେ ରୁକ୍ଷିଆ ଚୁପ ହୋଇ ସବୁ ଶୁଣେ । ତୁଣ୍ଡ ଫିଟାଏ ନାହିଁ । ଥରେ ରାଉତର ବୁଢ଼ା ରୁକ୍ଷିଆକୁ ପଚାରିଲେ—ଆରେ ରୁକ୍ଷି; ତୁ ଯାଉନୁ କି ସେ ପାଖ ବିଲଆଡ଼େ । ମୁଁ ତ ବୁଢ଼ା ହେଲି, ତୁ ଏମିତି ବାବୁଆମିପଣ କରି ଚଳିଲେ ଚଳିବ ? ଆଜିକାଲି ହଳିଆ ମୂଲିଆ କାହାକୁ ବିଶ୍ୱାସ ଅଛି ରେ ? ଯିବୁ, ଦେଖିବୁ, କାମ ବତେଇବୁ, କଥା ବୁଝିବୁ, ତେବେ ଯାଇ ସିନା ଘର କରିବୁ । ନ ହେଲେ ସବୁ ଉଜୁଡ଼ିଯିବ ରେ ଉଜୁଡ଼ିଯିବ ! ଏ ଘରର ମାନ ମହତ ସବୁ ତଳେ ପଡ଼ିଯିବ ।

ରୁକ୍ଷିଆ ବୁଦ୍ଧିମାନ୍ ପିଲା । ବାପର ଇଙ୍ଗିତ ସବୁ ବୁଝିପାରିଲା । ଏତିକି ଜାଣିଲା ଯେ ବାପା ବିଲବାଡ଼ି କଥା ଯାହା କହୁଛନ୍ତି ତାହା ପ୍ରକୃତରେ ବିଲବାଡ଼ି ନୁହେଁ, ସେ ଯେଉଁ କଥାକୁ ଜାଣିପାରୁ ନାହାନ୍ତି ସେଇ କଥା ପାଇଁ । ସେ ବୁଝିଗଲେ ସବୁ ସମାଧାନ ହୋଇଯିବ ।

ସେହିବଦନଠାରୁ ରୁଷିଆ ବଲବାଡ଼କ ଯାଏ । ଯାଏ ଯେ ବେଶୀ ଯାଏ କନ୍ଧ ଗୋଷ୍ଠୁ ଘର ବଲମାନକୁ । ସେ ଯାଇ ଦେଖେ କନ୍ଧ ଗୋଷ୍ଠୁର ବଲରେ ଯେ ବେଶୀ ସମସ୍ତ କାମ କରୁଥାଏ ସେ ହେଉଛ ସତ୍ୟଭାମା ।

ତରତର ହୋଇ କଆଁସ୍ଥାଏ ଦ' କଆଁସ୍ଥା ଅନ୍ତରରେ ବେଳେ ବେଳେ ସେ ସେହିବାଟେ ଗୃଲଯାଏ । ବୁଲି ବୁଲି ପଛକୁ ଗୃହେଁ ସତ୍ୟଭାମା ତାକୁ ଦେଖିପାରୁଚ କ ନାହିଁ । ଅଣବାଟରେ ଗଲାବେଳେ ଗୋଡ଼ରେ କୋଇଲେଖା କଣ୍ଟା ପଶିଗଲା ବୋଲି କନ୍ଧ କେବେ କେବେ ନଇଁପଡ଼େ । ନଇଁ କର ସେ ଆଡ଼କୁ ଗୃହିଁ କଣ୍ଟା କାଢ଼େ । ହୁଡ଼ତଳେ ପାଣିଥିଲେ ମୁହଁ ଧୋଇ କୁଳୁକୁଞ୍ଚା କରେ । ଲୁଗା କାନ୍ଧରୁ ଖସିଗଲା ପର କର ଲୁଗାପଟାକୁ ପୁଣି ଚଉଚେ; କନ୍ତୁ ଦୃଷ୍ଟି ଟା ଥାଏ କନ୍ଧ ଗୋଷ୍ଠୁ ଘର ବଲ ଆଡ଼କୁ ।

ସତ୍ୟଭାମା ମୁଣ୍ଡରେ ଓଢ଼ଣା ଦଏ, ନଇଁ କର କାମକରେ; କନ୍ତୁ କେବେହେଲେ ଯେ ସିଧାସଳଖେ ଠିଆହୋଇ ବୁଲି ଗୃହେଁ ନାହିଁ ସେ ଆଡ଼କୁ । କାମ କରବା ସ୍ୱାଭାବକ ଦୃଷ୍ଟିରେ ଯାହା କଚ୍ଛୁ ଆଖି ବୁଲେଇ ଦେଖେ । ଥରେ ସତ୍ୟଭାମା ନଇଁକର ଧାନ କାଟୁଚ ହଳେ ବଳଦ ସେପାଖ ହୁଡ଼ ମୁଣ୍ଡେ ବଲରେ ପଶିଗଲେ । ରୁଷିଆ ସେବାଟେ ଯାଉଥିବା-କଥା ସତ୍ୟଭାମା ଜାଣେ ନାହିଁ । ସେ ପାଟିକଲା – ଗୋରୁଖାଇଲା, ଗୋରୁ ଖାଇଲା । ସତ୍ୟଭାମା ଅଣ୍ଟାସଳଖି ବୁଲି ଗୃହିଁଲା ବେଳକୁ ରୁଷିଆ ଧାଇଁ ଯାଇ ବଳଦ ଓଡ଼ାଉଚ୍ଛୁ । ସତ୍ୟଭାମା ମୁଣ୍ଡ ପୋତଦେଲା । ରୁଷିଆ ସେତକବେଳେ କହିଲା – ନ ଜଗିଲେ ଫସଲ ଯେ ଉଜୁଡ଼ିଯିବ । ଆନତ ବଦନରେ ସତ୍ୟଭାମା ଉତ୍ତର ଦେଲା—ଜଗିବାକୁ କ'ଣ ଲୋକ ନାହାନ୍ତ ?

ଏ ଘଟଣାର ଦ' ଗୃରଦନ ପରେ ଶୁଣାଗଲ ଗଉତବଙ୍କ ଘରେ ଚୋର ପଶି ନଗଦ ଗୃରଶହ ଟଙ୍କା ଚୋରୀ ଯାଇଚ୍ଛୁ । ଗଉତବଙ୍କ ଘରୁ ଚୋରୀ ଯିବା ସହଜ ନୁହେ । କାରଣ, ଟଙ୍କା ପଇସା ସେ ବାକ୍ସରେ ରଖନ୍ତ ନାହିଁ । କେଉଁଠି ସେ ରଖନ୍ତ ସେକଥା ବାହାର ଲୋକେ ଅନୁମାନ

କରିବାର କିଛି ବାଟ ନାହିଁ । ସମସ୍ତେ କହନ୍ତି ତାଙ୍କର ପୋଡାମାଲ । ରାଉତରା ବାହାରକୁ ଗଲେ ନାନା କାରଣ ଦେଖାଇ ପୁଅକୁ ଘରେ ଜଗାଇ ଯାଇଥାନ୍ତି । ସେଦିନ ସେ ସଂଧ୍ୟା ପୂର୍ବରୁ ବିଲକୁ ଯାଇ ଫେରି ଦେଖନ୍ତି ତ ରୁଷିଆ ଘରେ ନାହିଁ । ରୁଷିଆ ଯେତେବେଳେ ଘରକୁ ଫେରିଲା ରାଉତରା ମୁଣ୍ଡରେ ହାତ ଦେଇ ବସିଛନ୍ତି । ତାଙ୍କ ଶୋଇବା ଖଟତଳେ ଏକ ସରୁଗାତରେ ଟଙ୍କା ଥିବା କଥା ରୁଷିଆ କେବଳ ଜାଣେ । ରୁଷିଆ ଘରେ ଥିବାବେଳେ ସେ ଯାଇଥିଲେ ବିଲକୁ । ରୁଷିଆ ଘରକୁ ଅସିଲାବେଳେ ବାପାଙ୍କୁ ଆଉ ଦେଖା ଦେଲା ନାହିଁ । କ୍ରମେ ଟଙ୍କା ଚୋରିଯିବା କଥା ଘରର ସବୁଲୋକେ ଜାଣିଲେ । କିଏ କେତେ ବ୍ୟସ୍ତ ହେଲେ; କିନ୍ତୁ ରୁଷିଆ କିଛି କହିଲା ନାହିଁ । ରାଉତରା ଯେତେବେଳେ ପଚାରିଲେ—କିରେ ରୁଷିଆ ଏ କଣ ହେଲା ! ମୋ ଜାଣିବାରେ ତ ସୂତାଖିଏ ଏ ଘରୁ ଯାଇ ନ ଥିଲା ! ରୁଷିଆ ଏତିକି ମାତ୍ର କହିଲା—ଯେତେବେଳେ ଯାଏ ତ ପ୍ରଥମରେ ଯାଏ, ଆସିଲା ବେଳେ ବି ପ୍ରଥମରେ ଆସିବ !

ସମନ୍ଧୀଙ୍କ ଘରୁ ଟଙ୍କା ଚୋରି ଯିବା କଥା ଯେତେବେଳେ କନ୍ଧ ଗୋଛି କାନରେ ପଡ଼ିଲା ସେ କଥା କହିପାରିଲା ନାହିଁ, କେବଳ ସତ୍ୟଭାମା ମୁହଁକୁ ଚାହିଁଲା । ସତ୍ୟଭାମା ତା ମାଆ ମୁହଁକୁ ଚାହିଁଲା । ମାଆ କନ୍ଧଗୋଛିକି କହିଲା—ଚାହୁଁଚ କଣ ? ଯେଉଁଠୁ ଆସିଛି ସେଇଠିକି ଯିବ । ପଅରଦିନ ତିଥି । ଆଜି ଯାଇ କଣାକଣି କରି ଆଣ ।

କନ୍ଧ ଗୋଛି ମୁଣ୍ଡରେ ହାତ ଦେଇ ଅନେକ ସମୟ ଛଳକୁ ଚାହିଁ ବସି କଣ ଚିନ୍ତାକଲା କେଜାଣି, କହିଲା—ବିଲ ତ ବିକ ନାହିଁ, କାହାଠୁ ତ କରଜ ଆଣି ନାହିଁ, ହାତରେ ତ ପଇସାଟିଏ ନ ଥିବା କଥା ସମସ୍ତେ ଜାଣନ୍ତି । ଆଜି ଯଦି ଯାଇ ଗଡ଼ରୁ ଯୋଡ଼ାସଜ କିଣି ଆଣିବି ଲୋକେ କାହାକୁ ଚୋର ବୋଲିବେ ?

କନ୍ଧ ଗୋଛିର ସ୍ତ୍ରୀ କଥାଟାକୁ ଚପେଇ ରଖିଲା ପରି କହିଲା—ତୁମେ ଆଉ ଇମିତି କୁଆ ପରି ହୁଅ ନାହିଁ । ଯେ ଦେଇଚି ସିଏ ନବ ।

ଯାହାଦ୍ୱାରୁ ଆସିବ ତା ଘରକୁ ଯିବ । ଆଜିକାଲି ପିଲାପିଲିଙ୍କ ଢଙ୍ଗ-ଢାଙ୍ଗ କଥା ତୁମେ କଣ ବୁଝିବ ? ତୁମେ ତ କହିଲ ପଇସା ନ ହେଲେ ପଠେଇବ ନାହିଁ । ସିଏ ତ କହିଲେ ନ ପଠାଇଲେ ମୁଁ ଆଉ କଣ ବାଟ କରିବ । ରୁଷିଆ କଣ ପିଲା ହେଇଚ, ନା, ସତ୍ୟଭାମା ଡଲ୍ଲି ହୋଇଚ ? ଝିଅକୁ ପଠାଇ ସାର—ତା ପରେ ସ୍ୱୈର ଆଉ ସ୍ୱୈରମାଲ ସବୁ ଏକାଠି ହେବେ । ଏତିକ କହି ଗୋଛୁଆଣୀ ଟିକଏ ହସିଦେଲା ।

ବଉତରଙ୍କ ଘରେ ସେଦିନ ଗାଁ ଯାକର ଲୋକ ଜମା । କାରଣ, ବୋହୂ ଘର ଆଣିଚ । ଯୋଡ଼ା ଗରୁ, ଯୋଡ଼ା କଂଧା, ଯୋଡ଼ା ଛାଳ, ଏପରି କି ଶିଳ ଶିଳୁପୁଆ ଯୋଡ଼ା ଯୋଡ଼ା । ଲୁଗା ଟଙ୍କା କଥା କଏ ପଚାରେ ? ସମସ୍ତେ କହିଲେ—କନ୍ଧ ଗୋଛୁ ଭଲ ଦେଲା । ବଉତରେ କହିଲେ—ସ୍ୱୈର ସିନା ଟଙ୍କା ନେଇଯାଏ, ଭାଗ୍ୟ କଣ ନେଇଯାଏ ?

ସେଦିନ ରାତିରେ ଲଜ୍ଜାବତୀ ସତ୍ୟଭାମାର ହାତଧରି ରୁଷିଆ ହସି ହସି କହିଲା—ଦରକାର ପଡ଼ିଲେ ଲୋକେ ଇମିତି ସ୍ୱୈର ହୁଅନ୍ତି ।

—ହଁ, ତମେ ଯଦି ସ୍ୱୈର, ମୁଁ ମଧ୍ୟ ସ୍ୱୈରଣୀ !

—ମନେ ଅଛି ? ସେ ଦିନ କହୁଥିଲ ନ ଜଗିଲେ ଫସଲ ଉଜୁଡ଼ି ଯିବ ବୋଲି ।

—ଆଉ କାହାର ମଧ୍ୟ ମନେଥିବ, ମୁଁ ସେଇଠି କହିଥିଲି—ଜଗିବାକୁ କଣ ଲୋକ ନାହାନ୍ତି ?

—ସେଇଥିପାଇଁ ପଚ୍ଚ କହୁଚ—ଚୋରି କରେ ବା ଲୁଟେଇ କରି ନିଏ, କୌଣସିମତେ ମୋ ଫସଲ ମୁଁ ଘରକୁ ଆଦାୟ କରି ଆଣିଚି । କଣ କହୁଚ ?

—ସଲଜ୍ଜ ବଦନରେ ସତ୍ୟଭାମା ମୁହଁ ପୋତି ଠିଆହେଲା ।

# ହସ୍ତାନ୍ତର

ଦିନେ ନୂଆପଡ଼ା ଗାଁର ବାଉଣ୍ଶ ସାହିରେ ଗୋଟାଏ ନୂତନ ଶବ୍ଦ ଶୁଣାଗଲା—'ସାନ ସାଆନ୍ତେ' । ନୂଆପଡ଼ା ଅଞ୍ଚଳରେ 'ସାଆନ୍ତ' ବୋଇଲେ କେବଳ ଜଣକୁ ବୁଝାଉଥିଲା—ସେ ହେଉଛନ୍ତି ସେ ଗାଁର ଜମିଦାର । ନୂଆପଡ଼ା ଗାଁର ସାଆନ୍ତ ଦିନକର ସାଆନ୍ତ ନୁହନ୍ତି, ବର୍ଷ ବର୍ଷ ଧରି ପୁରୁଷାନୁକ୍ରମରେ ସେହି ଗାଁର ବାଉରୀ ସାହିରେ ସେହି ବଂଶ 'ସାଆନ୍ତ' ରୂପେ ପରିଚିତ । ତେଣୁ ସେଦିନ ସକାଳେ ସେଠାରେ 'ନୂଆ-ସାଆନ୍ତ' ଶବ୍ଦ ଶୁଣାଯିବା ଦ୍ୱାରା ଗାଆଁର ଅନ୍ୟାନ୍ୟ ଲୋକଙ୍କ ଭିତରେ ଚହଳ ପଡ଼ିଗଲା ।

ଚହଳ ପଡ଼ିବାର କଥା । ବାସୁ ଦାସ ବୋଲି ଯେଉଁ ପିଲା ଦଶ ବର୍ଷ ତଳେ ମାଇନର ଫେଲ୍ ହୋଇ ଗାଆଁରେ ବୁଲୁଥିଲା, ଦେଖାଗଲା, ସେଦିନ ସକାଳେ ବାଉରୀ ସାହି ଭିତରେ ସେ ସ୍ୱଚ୍ଛନ୍ଦରେ ଗତି କରୁଛନ୍ତି । ବାଉରୀ ସାହି ସେଦିନ ଉତ୍ସବ ମୁଖରିତ ହୋଇ ଉଠିଛି । ବାଉରୀ ସାହିର ଦାଣ୍ଡ ସଫା ସୁତୁରା ହୋଇଚି । ଦାଣ୍ଡସାରା ଗୁମ୍ଫୁଣ୍ଡିଆ ବନ୍ଧାଯାଇଚି । ପାଞ୍ଚକୋଶ ଅଞ୍ଚଳର ଯେତେ ଯେଉଁଠି ବାଉରୀ ଥିଲେ ସେଠି ସମସ୍ତେ ଜମା ହୋଇଛନ୍ତି । କାରଣ, ସାହିର ମୁଖିଆ ରଙ୍କ ନାହାକର ଝିଅ ବାହାହେବ ।

ରଙ୍କ ନାହାକର ଝିଅ ବାହାହେବ, ଆଉ, ସେ ବାହାଘରେ କାର୍ଯ୍ୟକର୍ତ୍ତା ହେବେ ଗାଁର ବାସୁ ଦାସେ, ଏକଥା କିଏ କଳ୍ପନା କରିଥିଲା ?

ବାସୁ ଦାସେ ସାଇ ଦାଣ୍ଡରେ ଟହଲ ମାରୁଚନ୍ତି । ଦେହରେ ଖଣ୍ଡିଏ ଚଗ କାମିଜ, ହାତରେ ଏକ ଖଦଡ଼ ଝୁଲା । ଝୁଲାଟା ଓହଳିବା ଢଙ୍ଗରୁ ଜଣା-ପଡୁଥିଲା ତା ଭିତରେ ବେଶି କିଛି ଓଜନଦାର ଜିନିଷ ନାହିଁ, ଅଛି କେବଳ ଖଣ୍ଡିଏ ଖାତା, ଆଉ ଖଣ୍ଡିଏ ଗ୍ଲେଟ ପେନସିଲ । ସେଇ ଖାତାଟି ହେଉଚି ତାଙ୍କର ଚୂନ୍ଦାଖାତା । ଗତ କେତେ ବର୍ଷ ହେଲା ସେହି ଖାତା ପେନ୍‌ସିଲ ଧରି ହରିଜନ ଉଦ୍ଧାର ପାଇଁ ସେ ଚୂନ୍ଦା ଅସୁଲ କରିଆସିଛନ୍ତି । ଗାଁର ଜାଣିବାଶୁଣିବା ଲୋକେ ମନେକରିବା ସ୍ୱାଭାବିକ ଯେ ବାସୁ ଦାସେ ସବୁ ଦିନ ପରି ସେ ଦିନ ମଧ୍ୟ ଚୂନ୍ଦା ପାଇଁ ଯାଇଛନ୍ତି ।

କିନ୍ତୁ ସେ ଦିନ ସେ ଚୂନ୍ଦା ଅସୁଲ କରୁ ନ ଥିଲେ । ରଙ୍କ ନାହାକର ଝିଅ ବିଭାଘରର ସବୁ କାର୍ଯ୍ୟ ସେ ତତ୍ତ୍ୱାବଧାନ ସହିତ ବୁଝୁଥିଲେ । ଅନ୍ୟ ବାଉରୀ ସାହିର ନାହାକମାନେ ତାଙ୍କ ପାଖେ ପାଖେ ଲାଗି ରହିଥିଲେ । ବାଉରୀ ପିଲାମାନେ ତାଟକା ହୋଇ ତାଙ୍କୁ ଚାହିଁ ରହିଥିଲେ । ପେଡ଼ି ସାଇତା ମୋଡ଼ିମୋଡ଼ି ହୋଇଯାଇଥିବା ରଙ୍ଗ, ହଳଦିଆ ଶାଢ଼ୀ ପିନ୍ଧି ବାଉରୀଘରର ଝିଅମାନେ ନହର ପହର ହେଲା-ବେଳେ ସେହି ବାସୁ ଦାସଙ୍କ ଆଡ଼କୁ ହାତ ଦେଖାଇ କହୁଥିଲେ—ଇଏ ଏବେ ଆମର ହୋଆନ୍ତେ । ବଡ଼ ସାଆନ୍ତେ କଣ କରୁଥିଲେ କି ? କେବେ ତାଙ୍କ ପାଦ ଏ ସାଇରେ ପଡ଼ିଚି ? କେବେ ଆମ ବାହାପୁଆଣିରେ ଦୁଆର ମୁହଁରେ ଠିଆହୋଇଛନ୍ତି ? ଅଧିକରେ ବୋଝ, ଟୋକେଇ ଧରି ଖମାର ଦୁଆରେ ପହଞ୍ଚିଲେ କହନ୍ତି—ଆଡ଼େଇ ହୋଇ ବସ । ବସି ବସି ସେଠି ବେଳ ମୁଣ୍ଡ ଉପରୁ ଗଡ଼େ । ଗୁମାସ୍ତା ଆସେ, ଧାନ ମାପିଦିଏ; କହେ— ତମେ ଗୁଡ଼ାକ କେବେ ଭଲ ହେବ ନାହିଁ । ଦେଖୁ ନ ଏ ସାନ ସାଆନ୍ତଙ୍କୁ, କିମିତି ଆମ ଘର ଭିତରେ ପଶି ପିଣ୍ଡାରେ ବସି ପତର ପକେଇ ଜଳଖିଆ ଖାଇ ଚାଲିଛନ୍ତି ? ୟାଙ୍କୁ ଆମେ ସାଆନ୍ତ ନ କହି କାହାକୁ କହିବା ?

ନୂଆଡ଼ୋ ଗାଁର ଜମିଦାର ପୁରୁଷାନୁକ୍ରମିକ ଜମିଦାର । ସେ କହି ପାରିବେ ନାହିଁ କେବେ ତାଙ୍କର ସେହି ଜମିଦାରୀ ଖିଆଡ଼ି ତିଆରି-ହୋଇଥିଲା । ସେ କହନ୍ତି, ଧାନ ଯେତେବେଳେ ଥିଲା ଟଙ୍କାକୁ ପନ୍ଦର ଗଉଣୀ, ଏଇ ବାଉରୀ ସାହିର ଝିଅବୋହୂମାନେ ଦ'ଅଡ଼ା ଧାନକୁ ଢନପ କ ବଲରେ ପଡ଼ ଘାସ ବାଛିଦେଇ ଆସୁଥିଲେ । ସେତିକିବେଳେ ତାଙ୍କର କଏ ପୂର୍ବପୁରୁଷ ଏ ଘର ତିଆରି କରିଥିଲେ । କେଉଁ ବନ୍ଧାଣୀ ସେ ଘର ତିଆରି କରିଥିଲା ତା ନାଁ ସେ କହି ପାରନ୍ତି ନାହିଁ । ଲୋକେ ଦେଖିଲେ କହନ୍ତି, ମହାଭାରତର ଭୀମ ରହିବା ପାଇଁ ବୋଧହୁଏ ସେ ଘର ହୋଇଥିଲା । କାରଣ, ଘରର ସଦର ଦରଜାଟା ଓସାରରେ ପାଞ୍ଚ ହାତ, ଲମ୍ବରେ ସାଢ଼େ ସାତ ହାତ । ଦୁଇ ଖଣ୍ଡ ପଟାରେ କବାଟ ତିଆରି ! ସେଥିରେ ପୁଣି ପିତଳ ବାଗିଆ ବସିଚି । ସେ ଦୁଆର ଯେତେବେଳେ ରାତିରେ କିଳାଯାଏ ପାଖ ବାଉରୀ ସାହିକୁ କାହିଁକି, ନିକଟବର୍ତ୍ତୀ ଗାଁକୁ ଶବ୍ଦ ଶୁଭେ । ଲୋକେ କଞ୍ଜାନନ୍ଦଆ ହୋଇ ଉଠି କହନ୍ତି—ସାଆନ୍ତଙ୍କ ସଦର ଦରଜା ବନ୍ଦ ହେଲା । ସଦର ଦରଜା ବନ୍ଦ ହେବା ଶବ୍ଦ ଶୁଭିଲେ ମନେ କରନ୍ତି ରାତି ଆଉ ପହରେ ଅଛି ।

ଯେଉଁ ଜମିଦାରଙ୍କର କାରବାର ଏପରି, ଯାହାଙ୍କୁ ଲୋକେ ଏ ପର୍ଯ୍ୟନ୍ତ 'ସାଆନ୍ତ' କହି ଆସୁଥିଲେ ସେ ସ୍ଥାନରେ ଗାଁର ଜଣେ ଗୃହହୀନ, ଜମିହୀନ ହେଙ୍ଗୋଡ଼ା ଟୋକାକୁ 'ସାଆନ୍ତେ' ଡାକିବାରେ କଏ ଆଶ୍ଚର୍ଯ୍ୟ ନ ହେବ ! ଆଶ୍ଚର୍ଯ୍ୟ ହେଲେ କଣ ହେବ, କେତେ ଲୋକ ଏ ଡାକଟାକୁ ହି ପସନ୍ଦ କଲେ । କାରଣ, ସେତେବେଳକୁ ଜମିଦାରୀ ପ୍ରଥା ଉଠିଯିବ ବୋଲି ଖବରକାଗଜରେ ସମ୍ବାଦ ବାହାରିଥାଏ । ଖବରକାଗଜ ସେ ଗାଁର ଲୋକେ ପଢ଼ିବାର ସୁବିଧା ନ ପାଉଥିଲେ ମଧ୍ୟ ଲୋକମୁଖରୁ ଶୁଣି-ପାରୁଥିଲେ ଯେ, ଜମିଦାରୀ ଉଠିଗଲେ ଜମିରେ ଚଇତମାନଙ୍କର ସ୍ୱତ୍ୱ ଆସିଯିବ । ତେଣୁ ଯେଉଁମାନଙ୍କର 'ସାଆନ୍ତ'ଙ୍କ ପ୍ରତି ଅତିଶୟ ଆସକ୍ତି ଥିଲା ସେମାନେ ମଧ୍ୟ ମନେ ମନେ ଭାବିଲେ ଯେ ଗାଁରେ ଦ୍ୱିତୀୟ ସାଆନ୍ତ ହେବା ଭଲ ।

ସାଧାରଣରେ ଦେଖାଯାଇଥାଏ, ଥାନାରେ ଦାରୋଗା ବାବୁ ଥିଲାବେଳେ ଲୋକେ ତାଙ୍କୁ ଖୁବ ପ୍ରଶଂସା କରି କହୁଥାନ୍ତି—ଯେତେ ଦାରୋଗା ଆସିଥିଲେ ଆପଣଙ୍କ ପରି କଏ ସଚ୍ଚୋଟ ସାଧୁ ଲୋକ ଆସି ନ ଥିଲେ । ମାତ୍ର ତାଙ୍କ ବଦଳି ପରେ ନୂଆ ଦାରୋଗା ଆସିଲେ ସେଇ ମୁହଁରେ ପୁଣି ଶୁଣାଯାଏ—ସିଏ ଗଲେ ତାଙ୍କ ପରି ଖାମଖିଆଲି ଲୋକ କେହି ନ ଥିଲେ । ଭାଗ୍ୟକୁ ଆପଣ ଆସି ଜୁଟିଛନ୍ତି । ନୂଆପଡ଼ା ଗାଁର ଜମିଦାର ସାଆନ୍ତ ଓ ନୂଆ ସାଆନ୍ତ ବାସୁ ଦାସଙ୍କ ଭିତରେ ବହୁତବନ୍ତ ଲୋକେ ଏହିପରି ତୁଳନା କଲେ ।

ଓଡ଼ିଶାର ଜମିଦାରୀ ଉଚ୍ଛେଦ ସମୟକୁ ନୂଆପଡ଼ା ଜମିଦାରଙ୍କ ଅବସ୍ଥା ଖରାପ ହୋଇଆସିଥିଲା । ତାଙ୍କର ଯେ ଦୁର୍ଦ୍ଦଶା ଆସି ପହଞ୍ଚି-ଥିଲା ସେ କଥା ସେ ନିଜେ କହନ୍ତି । କାରଣ, ଦେଶରେ ଜନଜାଗରଣ ଫଳରେ ରଇତ ଲୋକେ ତାଙ୍କୁ ଘାଣ୍ଟୁଥିଲେ । ଆଗପରି ବୋଲବାଟ କରୁ ନ ଥିଲେ, ଡାକିଲେ ଶୁଣୁ ନ ଥିଲେ, କହୁଥିଲେ – ଆଜ୍ଞା, ଆପଣ ଆଉ କେତେ ଦିନ କି ? ଏ ସବୁ ଜମି ପରା ଆମର ହୋଇଯିବ ବୋଲି ସରକାର ଠିକ୍ କରିଛନ୍ତି ?

ନୂଆପଡ଼ା ଜମିଦାର ବଂଶର ଶେଷ ଦାୟାଦ ଭ୍ରମରବର ହରିଚନ୍ଦନ ଦେବ ମାନସିଂହ ସେପରି କିଛି ଉଦ୍ଧତ ପ୍ରକୃତିର ଲୋକ ନ ଥିଲେ । କାଳର ଗତିସ୍ରୋତ ସଙ୍ଗେ ନିଜକୁ ମିଶେଇବା ପାଇଁ ହେଉ କିମ୍ବା ନିଜର ଅପାରଗତା ଯୋଗୁଁ ହେଉ ବେଠି ବେଗାରି ଉପରେ ସେ ବେଶି ଦୃଷ୍ଟି ଦେଉ ନ ଥିଲେ । ବରଂ ବେଳେ ବେଳେ ତହିଁର ନିନ୍ଦା କରୁଥିଲେ । ବାଉରି ସାହିର ରଙ୍କ ନାହାକ ଝିଅର ବିବାହ ଉତ୍ସବ ପରେ ଯେତେବେଳେ ବାଉରିମାନେ ଦୈନନ୍ଦିନ କାର୍ଯ୍ୟ ସମ୍ପର୍କରେ ତାଙ୍କ

ଚକ୍ଷୁକୁ ଆସନ୍ତ ସେ ଟିକିଏ ଶ୍ଳେଷୋକ୍ତି କରି କହନ୍ତି—"କିରେ, ତମ ସାନ ସାଆନ୍ତେ କଣ କରୁଛନ୍ତି ?" ସାନ ସାଆନ୍ତଙ୍କ କଥା ପଡ଼ିଲେ ବାଉରିମାନେ ଗର୍ବ କରିବାର ଦେଖାଯାଏ । ସେମାନେ କହିବାର ଶୁଣାଯାଏ - 'ଆଜ୍ଞା, ସେ ପିଲା ଆମଠାରୁ ଟିପଚିହ୍ନ ନେଇ ମାସକେ ତିନି ଥର ଭୁବନେଶ୍ୱର ଦଉଡ଼ୁଛନ୍ତି !'

କି ରେ, ଭୁବନେଶ୍ୱର କାହିଁକି ଯାଉଚନ୍ତି ?

"ଆଜ୍ଞା, ଆପଣ ଜାଣି ନାହାନ୍ତି । ଆଉ କେତେ ଦିନ ପରେ ସବୁ କଥା ଓଲଟିଯିବ ।" ଏତିକି କହି ସେମାନେ ତୁନି ହୋଇଯାନ୍ତି । ଜମିଦାରୀପ୍ରଥା ଉଠିଯିବ ବୋଲି ସେମାନେ ସାହସରେ କହି ପାରନ୍ତିନାହିଁ । ସେମାନେ ଯାହା କହିପାରି ନ ଥାନ୍ତି ଜମିଦାର ସେକଥା ନିଜେ କହି-ଦିଅନ୍ତି—"ଆରେ ରଙ୍କ, ଆରେ ଧନୁ, ଆରେ ମାଗତା, ମୁଁ ସବୁ ଜାଣେ ରେ । ସେକାଳ ଥିଲା, ଆମେ ଜମିଦାର ଥିଲୁ । ଆଜିପରି ଲୋକସଂଖ୍ୟା ବଢ଼ିଲେ, ଏ ମାଟି ସମସ୍ତଙ୍କୁ ଖାଇବାକୁ ଦେଇ ପାରୁନାହିଁ । ଆମେ ଏତେଗୁଡ଼ାଏ ମାଡ଼ି ବସିଲେ ଚଳିବ କିମିତି ? ସେଇକଥା ତମ ସାନ ସାଆନ୍ତେ କହୁଥିବେ । ନୁହେ ?'

ରଙ୍କ ନାହାକ ଉତ୍ସାହରେ କହେ—"ହଁ, ସାଆନ୍ତେ ! ସେ ତ କହୁଥିଲେ ଆପଣ ଆଉ ରହିବେ ନାହିଁ ବୋଲି ?"

"ଆରେ ! ମୁଁ କୁଆଡ଼େ ଯିବି ? ତମେ ରହିବ, ମୁଁ ରହିବି, ଆମେ ସମସ୍ତେ ରହିବା, ଏ ଗାଁ ମଧ୍ୟ ରହିବ ।"

"ନାଇଁ ଆଜ୍ଞା, ଆପଣ କିଛି ଜାଣି ନାହାନ୍ତି । ସେ ପିଲା ଘର-ଘର ବୁଲି ଆମକୁ ବୁଝାଇଛନ୍ତି, ଆପଣ ରହିବେ ନାହିଁ ବୋଲି ? ଆଉ ଆପଣ ଜାଣନ୍ତି ତାଙ୍କର କିଛି ନାହିଁ । କାଲି ଆମେ ସାଇପାକ ଲୋକ ଯାଇ ତାଙ୍କ ପାଇଁ ଘର ଖଣ୍ଡିଏ ତୋଳିଦେଇଚୁ ।"

ପାଖରେ ଥିବା ହୁକାରୁ ଦୁଇ ଚୋଟ ଧୂଆଁ ଢ଼ୋକନେଇ ଜମିଦାର ସାଆନ୍ତେ ନୀରବ ରହିଲେ । ରଙ୍କ କହି ଚାଲିଲା—"ଆଜ୍ଞା, ସେ ଯେତେଥର ଟିପ ଚିହ୍ନ ନେଉଛନ୍ତି ନିଅନ୍ତୁ । ଆମ ଟିପ କଣ ସରିଯାଉଛି ? ସେ କହୁଛନ୍ତି—ପିନ୍ଧିବାକୁ ଲୁଗା ମିଳିବ, ଘର ପାଇଁ କାଠ ମିଳିବ, ଦିନକୁ ମଜୁରି ବଢ଼ିଯିବ । ଏବେ ଆମେ ପଚିଶି ଥର ଲେଖାଏଁ ଟିପ ଚିହ୍ନ ଦେଇସାରିଲୁଣି ।"

ବାସୁ ଦାସଙ୍କ ବୈଠକଖାନା ଘୋଟିଆ ଚାଳଘର ଖଣ୍ଡିଏ, ଚଳଟା କେବଳ ସିମେଣ୍ଟ ହୋଇଛି । କାନ୍ଥ କଣ୍ଟାରେ ଦୁଇଟି କାମିଜ ଓହଳଚି, ତା ଛଡ଼ା ଦୁଇଟି ଝୁଲମୁଣି ଓ ଦୁଇଟି ଧଳା ଖଦଡ଼ ଟୋପି । ବାଉଁଶ ସାହିର ମୁଖିଆ ଲୋକେ ପ୍ରତିଦିନ ସନ୍ଧ୍ୟାବେଳେ ସେଠିକି ଯାଆନ୍ତି । ସେମାନେ ଲେଖି ଜାଣନ୍ତି ନାହିଁ, ପଢ଼ି ଜାଣନ୍ତି ନାହିଁ, କେବଳ ଦେଇ ଜାଣନ୍ତି ଟିପଚିହ୍ନ । ସେମାନେ ବରାବର ଶୁଣନ୍ତି ଦାସଙ୍କ ମୁହଁରୁ ଉପଦେଶ ବାଣୀ ଭିତରେ ଶତକଡ଼ା ନବେ ଭାଗ ଥାଏ ଜମିଦାରଙ୍କୁ ଗାଳି । ମାସ କେତଟା ଭିତରେ ସେପରି ଉପଦେଶ ଶୁଣିବାରେ ବାଉଁଶ ସାହିର ବାଉଁରିମାନେ ଏପରି ଅଭ୍ୟସ୍ତ ହୋଇପଡ଼ିଲେ ଯେ ସେମାନେ ବି ସେହିପରି କହିବାକୁ ଶିଖିଗଲେ । ଦାସେ ତାଙ୍କୁ ବରାବର ବୁଝାଇବାରେ ଲାଗିଲେ—"ଦେଖ ଭାଇମାନେ ! ତୁମେ ହେଉଚ ଏ ଜାତିର ମେରୁଦଣ୍ଡ । ତୁମ ଅଣ୍ଟା ସଳଖ ହେଲେ ହାତ ଗୋଡ଼ କାମ କରିବ । ଆମେ ହେଉଚୁ ତୁମର ହାତ । ତୁମେ ସାହସ ଦିଅ, ତୁମେ ମୋ କଥା ଶୁଣ, ମୁଁ ଯାହା କହୁଚି ତୁମେ ତା କର । ଦେଖିବ, ତୁମର ଭାଗ୍ୟ ଅଳ୍ପ ଦିନେ ବଦଳିଯିବ । ଏ ଜମିଦାର ଆଉ ବେଶି ଦିନ ଜମିଦାର ହୋଇ ରହିବ ନାହିଁ । ତୁମେ-ମାନେ ଏ ଜମିର ମାଲିକ, ଆଉ, ତୁମମାନଙ୍କୁ ମାଲିକ କରିବା ପାଇଁ ମୁଁ କେବଳ ଏ ଦୀକ୍ଷା ନେଇଛି ।"

ବାଉଁଶ ସାହିର ବାଉଁରିମାନଙ୍କର ଉତ୍ସାହ ଦେଖେ କିଏ ? ଦିନେ ସେମାନେ ବସିଥିଲେ, ସାନ ସାଆନ୍ତେ ଆମପାଇଁ ଏତେ ଦୁଃଖ କଷ୍ଟ ସହୁଚନ୍ତି, ଚାଲ ତାଙ୍କ ବାଡ଼ିରେ ଗୋଟିଏ କୂଅ ଖୋଳିଦେବା । ସାନ ସାଆନ୍ତେ ଦାସେ ବାଉଁରିମାନଙ୍କ ଏ ପ୍ରସ୍ତାବ ଶୁଣି ମନା କରିଦେଇ

ଦିନେ ଟିପଚିହ୍ନ ଦରଖାସ୍ତ ନେଇ ନୂଆ ରାଜଧାନୀ ଭୁବନେଶ୍ୱରକୁ ଯାଇଥିଲେ। ସାତ ଦିନ ପରେ ଫେରି ଦେଖନ୍ତି ତ ତାଙ୍କର ସେହି ନୂଆ ଘରର ବାଡ଼-ପଟେ ଗୋଟିଏ କୂଅ ଖୋଳାହୋଇଯାଇଛି । ଆଉ ଥରେ ସେପରି ସେ ଟିପଚିହ୍ନ ଦରଖାସ୍ତ ନେଇ ଜମି ଉପରେ ପ୍ରଜାଙ୍କର ସ୍ୱତ୍ୱ ଦାବି କରିବାପାଇଁ ରାଜଧାନୀକୁ ଯାଇଥିଲେ। ସେଠୁ ଫେରି ଦେଖିଲେ ଯେ ତାଙ୍କ ବାଉପଟ ବିଲରେ ଗୋଟିଏ ଇଟାଭାଟି ମୁଣ୍ଡ ଟେକିଛି । ତାହା ହେଉଛି ଜମିଦାରଙ୍କ ଜମି । ଉଙ୍କ ନାହାକ ତାହା ଚାଷକରେ । ଦାସେ ଇଟାଭାଟିକୁ ଦେଖିବା ମାତ୍ରେ ବୁଝିପାରିଲେ ଯେ ତାଙ୍କର ଭାଗ୍ୟ ଧୀରେ ଧୀରେ ଫେରିଆସୁଛି । କିନ୍ତୁ ମନ କଥାଟା ସେ ବାହାରେ ପ୍ରକାଶ ନ କରି ବାଉରିମାନଙ୍କୁ ଡକାଇ ବିରକ୍ତି ହେଲାପରି କହିଲେ—"କି ରେ, ତୁମେ ସବୁ ଏ କଣ କରୁଛ ? ଲୋକେ ଦେଖିଲେ କଣ ବୋଲିବେ ? ତମେ ସୁଖରେ ରହିବାପାଇଁ ମୁଁ ପାଳୁଛି ବ୍ରତ; ଅଥଚ ମତେ ସୁଖରେ ରଖିବାପାଇଁ ତୁମେ ଲାଗିଚଢ଼ିଛ ଏତେ କଷ୍ଟ ସହି । ତୁମମାନଙ୍କର ଦୁଃଖ ଦୁର୍ଦ୍ଦଶା ଦୂର ନ ହେଲା ଯାଏଁ ମୋ ମନେର ଶାନ୍ତି ନାହିଁ । ଆଜି ଯେ ଏଇ ଇଟାଭାଟି ପକାଇଛ ବୁଝିଛ ତାହା ମୋ ପାଇଁ । ଏଇ ଯେ ଘର ଖଣ୍ଡିକ ତୁମେ ତୋଳିଦେଲ, ତୁମେ ଜାଣନାହିଁ ରାତିରେ ଏ ଘରେ ଶୋଇ ମୁଁ କି କଷ୍ଟ ଅନୁଭବ କରେ ! ମନେକର, ଏ ଖମ୍ବ-ଗୁଡ଼ାକ ମତେ ଯେପରି ତୁମେମାନେ । ଭାବେ, ଏ ଘରଟା ଯେପରି ତୁମମାନଙ୍କ ଛାତି ରୂପେ ମୋତେ ଧୋହାଇଦେଇଛି, କିନ୍ତୁ ତୁମେମାନେ ଯେ କଷ୍ଟ ସହୁଛ ! ଏ ଅତ୍ୟାଚାରୀ ଜମିଦାରର ହାତରୁ ତୁମକୁ ରକ୍ଷା ନ ମିଳିଲେ ମୋର ଏ ଘର ଦରକାର ନାହିଁ । ଦିନ ପାଖେଇ ଆସିଲାଣି । ତୁମମାନଙ୍କର ଭାଗ୍ୟରବି ଉଦୟ ହୋଇ ଆସିଲାଣି । ଆଉ ବେଶି ଦିନ ନାହିଁ । ସବୁ ଠିକ୍ କରିଦେଇ ଆସିଛି । ମୁଁ ଆଉ ବିଳମ୍ବ ସହି ପାରିବି ନାହିଁ । ମନ୍ତ୍ରୀ ମୋ ହାତ ଧରି କହିଛନ୍ତି—"ଧୈର୍ଯ୍ୟ ଧର ଦାସେ ! ଆଉ ଦିନ ପନ୍ଦରଟା ପରେ ଜମିଦାରର ନାମ ଲୋପ ହୋଇଯିବ । ତେଣୁ ମୁଁ କହୁଛି ତୁମେମାନେ ମୋ ପାଇଁ ଘର ତୋଳିବା ଦୁର୍ବୁଦ୍ଧି ଛାଡ଼ । ତୁମମାନଙ୍କର ଘର ହେଲେ କଣ ମୋର ସେ ଘର ନୁହେ ?"

ଏତିକିବେଳେ ଦାସଙ୍କର ଘର ବାହାରେ ସ୍ୱର ଶୁଣାଗଲା—
"ଜୟ, ସାନ ସାଆନ୍ତଙ୍କର ଜୟ ।"

ଏ ସ୍ୱର ସାନ ସାଆନ୍ତ ବାସୁ ଦାସଙ୍କ ଗୃହଦ୍ୱାର ଭେଦକରି ବାଉରି ସାହି, ପାଟରା ସାହି ପାରହୋଇ ଜମିଦାର ଭ୍ରମରବର ହରିଚନ୍ଦନ ଦେବ ମାନସିଂହଙ୍କ ଦରଭଙ୍ଗା ଖୁଆଡ଼ି ଭିତରେ ପ୍ରତିଧ୍ୱନିତ ହେଲା । ରୋଗାକ୍ରାନ୍ତ ମାନସିଂହ ସେତେବେଳକୁ ଶେଯରୁ ଉଠି ନିତ୍ୟକର୍ମ ଆରମ୍ଭ କରୁଥିଲେ । ଦୁଇ ତିନି ଜଣ ଚାକର କିଏ ପାଣିଡ଼ାଳ, କିଏ ଗାମୁଛା, କିଏ ବା ଦାନ୍ତକାଠି ଗୁଡ଼ାଖୁ ହାତରେ ଧରି ପାଖରେ ଠିଆହୋଇଥିଲେ । ମାନସିଂହ ପଚାରିଲେ—"କି ରେ, ବାଉରି ସାହିରେ ଆଜି କା'ର ବାହା-ର ହେଉଛି କି ?" ସବୁଠାରୁ ପୁରୁଣା ଚାକର ଜଗା ବେହେରା ମୁଣ୍ଡକୁ ଆଉଁସି କହିଲା—"ସାଆନ୍ତେ ! ଏ ବାହାଘର ଶବ୍ଦ ନୁହେଁ, ଏ ହେଉଛି ତାଙ୍କର ସାନ ସାଆନ୍ତେ ଗାଆଁକୁ ଫେରିବା ଉତ୍ସବ । ଆଜ୍ଞା, ସେମାନେ କଣ ଆଉ ଏମିତି ଅଛନ୍ତି ? କହୁଛନ୍ତି ପରା ସାନ ସାଆନ୍ତେ ତାଙ୍କର ଆଉ......" ଏତିକି କହିଲା ପରେ ତାର କଣ୍ଠ ରୋଧ ହୋଇଆସିଲା । ମାନସିଂହେ ଜଗା କହିଥିବା ଅଧା ବାକ୍ୟକୁ ପୂରଣ କରି କହିଲେ—"ଆଉ ବଡ଼ ସାଆନ୍ତଙ୍କୁ କିଏ ପଚାରିବେ ନାହିଁ, ଏହା କହୁଚୁ ନା ? ଆରେ ଜଗା ! କଥାଟା ମିଛ ନୁହେଁ । ସେ ଖାଲି ତାଙ୍କର ନୁହନ୍ତି, ତୁମର ବି ହେବେ । ଜମିଦାରୀ ପରା ଉଠିଯାଉଚି !"

ଜଗା ପ୍ରତିବାଦ କଲାପରି କହିଲା—"କିଏ ଉଠେଇବ କାହାକୁ ଆଜ୍ଞା ? ଏଇ ମୂର୍ଖଗୁଡ଼ାକ ଗୋଟାଏ ହେଞ୍ଜଡ଼ା ଟୋକାକୁ ନେତାକରି ଏ ଘରୁ ଉଠେଇଦେଇପାରିବେ ? ଗୋଟି ଗୋଟି ମୁଣ୍ଡ ରଖିଦେବୁ ନାହିଁ ?"

ମାନସିଂହ କହିଲେ—"ଚୁପ୍ ଚୁପ୍ ! ଏ ମୁଣ୍ଡ ଫୁଣ୍ଡ କଥା ଆଉ କହନାହିଁ । ଜମିଦାରୀ ବେଇଲେ କଣ ଏ ଘରଟା ? ତାଙ୍କ ପରି ଲୋକ-ମାନଙ୍କର କଣ ବୁଦ୍ଧି ନାହିଁ ? ସେମାନେ ଯେପରି କହୁଛନ୍ତି ଏ ଘରଟାକୁ ଦଖଲ କରିବେ, ତୁମେ ବି କହୁଚ ଏ ଘରଟାକୁ ଛାଡ଼ିବୁ ନାହିଁ । ଘର ଛାଡ଼ିବା ନ ଛାଡ଼ିବା କଥା ଏଠି ନାହିଁ । ଆଇନ ହୋଇଚି ଜମିଦାରୀ ଉଠିଗଲେ ଏବେ ଜମିର ମାଲିକ ଆଉ ଆମେ ହେବୁ ନାହିଁ । ଯିଏ ଚାଷ କରୁଚନ୍ତି ତାଙ୍କର ହେବ । ଆମେ ଆଉ ଭାଗ ଆଣିବୁ ନାହିଁ ।"

"ଏଁ, ଆମ ଜମିରେ ଯିଏ ମାଲିକ ହେବେ ?"

"ଆରେ, ମାଲିକ ହେବେ କଣ ? ଓଲଟା ବୁଝୁଚୁ ତୁ । ଏବେ ଜମିରେ ଜଣେ ମାଲିକ ହେବା ଉଚିତ ନୁହେ ବୋଲି ଆଇନ୍ ହେଲା । ତେଣୁ ଯିଏ ଚାଷ କରୁଚି ତାର ଜମି । ଆମେ ଆଣୁଥିଲେ ଖଜଣା ବା ଭାଗ । ସେ ଆମକୁ ନ ଦେଇ ନିଜ ପରିଶ୍ରମର ଫଳ ଭୋଗ କରିବେ ।"

"ତାହାହେଲେ ଆଜ୍ଞା, ଆପଣ 'ସାଆନ୍ତ' ହେବେ ନାହିଁ, ସେ କଣ 'ସାଆନ୍ତ' ହେବେ ?"

"ନାଇଁ ରେ ଜଗା ! ସାଆନ୍ତ ଫାଆନ୍ତ କଥା ଏଠାରେ କିଛି ନାହିଁ । ଜଣେ କିଏ ସାଆନ୍ତ ହେବେ ନାହିଁ; ସମସ୍ତେ ସାଆନ୍ତ ।"

ଏ କଥା ଶୁଣି ଜଗାର ମନ ପାଇଲା ନାହିଁ । ମୁହଁ ମୋଡ଼ିଦେଇ କହିଲା—"ଏ କଥା ହୋଇ ନ ପାରେ ।"

ଏ ଘଟଣାର ଠିକ୍ ବର୍ଷକ ପରେ ଓଡ଼ିଶାରୁ ଜମିଦାରୀ ପ୍ରଥା ଉଠି-ଯାଇଛି । ଜମି ଉପରେ ବହୁ ରଇତଙ୍କର ସ୍ୱତ୍ୱ ଆସିଯାଇଛି । ଜମିଦାରୀ ଉଠିଯିବା ପରେ ପୁରୁଷାନୁକ୍ରମେ ବସି ଖାଉଥିବା ବହୁ ଜମିଦାରଙ୍କର ଅବସ୍ଥା ଶୋଚନୀୟ ହୋଇପଡ଼ିଛି । କେତେକ ଜମିଦାର ଅଭାବ ଓ ଅସୁବିଧାରେ ପଡ଼ି ଭୋଗ କରୁଥିବା ବହୁ ସୌଖୀନ ଆସବାବପତ୍ର ବାହାରେ ବିକିବାରେ ଲାଗିଛନ୍ତି । ଘର ଭିତରେ ଥିବା ବହୁ ଦାସ ଦାସୀ, ଚାକର ଚାକରାଣୀ ଛିନ୍ନ ବିଚ୍ଛିନ୍ନ ହୋଇ ବାହାରକୁ ଚାଲିଯାଇଛନ୍ତି । କେତେ ଜାଗାରେ ସଦର ଦରଜା ଫାଟିଯାଇଛି, କେଉଁଠି କେଉଁଠି ଆଗେ ଜମିଦାର ବୋଲାଉଥିବା ଲୋକେ ଏବେ କଣ୍ଟ୍ରାକ୍ଟର ବୋଲାଉଛନ୍ତି । କିଏ ଧାନ ବେପାର କରୁଛି, ଶିଳ୍ପ ପାଇଁ ଲୋକ ଲଗାଇ କିଏ ମଫସଲରେ ହାଡ଼ ସଂଗ୍ରହ କରୁଛି ତ କିଏ ଚାଉଳ କଳ ବସାଇଛି । କିଏ କିଏ ଗୁଡ଼ାଖୁ କାରଖାନା, ଛତ୍ର କାରଖାନା, କଂସାବାସନ ବେପାରରେ ଲିପ୍ତ ରହିଛନ୍ତି । ଲୋକଙ୍କ ମନରୁ ଜମିଦାରର ସ୍ୱପ୍ନ ଲିଭି ଲିଭି ଆସୁଛି । ଜମିଦାରୀ ଭିତରେ ଗାଁ ଗାଁ ବୁଲି ଦେଖିଲେ ଜମିଦାରଙ୍କ ଖମାରର ଭଗ୍ନାବଶେଷ କିମ୍ବା ଘରର ପତନୋନ୍ମୁଖ ଅବସ୍ଥା ସୂଚାଇ ଦେଉଛି ଯେ, ଆଗେ ସେଠାରେ ଜମିଦାର ବୋଲି ଜଣେ କିଏ ଥିଲେ ।

ଅନ୍ୟ ଦିଗରୁ ଦେଖିଲେ ଗାଁଆଡ଼େ ଜନ ଜାଗରଣ ଦେଖା-ଦେଇଛି । ନେତା ସଂଖ୍ୟା ବଢ଼ିଯାଇଛି । ଆଗେ ଯେଉଁମାନଙ୍କୁ ଆଙ୍ଗୁଠିରେ ଗଣିହେଉଥିଲା ଏବେ କାଗଜ କଲମରେ ଲେଖିବାକୁ ପଡ଼ୁଛି । ଜମିରେ ଯେଉଁମାନେ ଭାରବାହୀ ପଶୁପରି ରଯୁତ ଥିଲେ ସେମାନେ ମାଲିକ ସ୍ୱତ୍ୱ ପାଇଛନ୍ତି । ଯୋଗାଣ ବିଭାଗର ଅଧିକାଂଶ ଛଡ଼, ସିମେଣ୍ଟ ମଫସଲ ଆଡ଼କୁ ଗତିକରୁଛି । ଏହିପରି ସମୟରେ କିଏ ଯେବେ ନୂଆପଡ଼ା ଗାଁ ଭିତରକୁ ପଶିଯିବ ତାହାହେଲେ ସେ କଣ ଦେଖିବାକୁ ପାଇବ ? ଦେଖିବ, ଏକ ଦିଗରେ ଗୋଟାଏ ଦରଭଙ୍ଗା ଖିଆଡ଼ି — ଖିଣ୍ଡେ ଆଉଜିଯାଇଛି, ମରାମତି ଅଭାବରେ ଘରର ପାହାଚ ଫାଟିଯାଇଛି । ପିଣ୍ଡାରେ ଥିବା ଆରାମ ଚୌକି ରଙ୍ଗ ଅଭାବରେ ବିବର୍ଣ୍ଣ ଦିଶୁଛି । ଦାଣ୍ଡଦୁଆର ପାଖ ପଞ୍ଜୁରୀରୁ ଶୁଆଶାରୀ ଉଡ଼ିଯାଇଛନ୍ତି, କେବଳ ଖାଲି ପଞ୍ଜୁରୀ ଝୁଲୁଛି ! କେତେ ଜଣ ମଲମୁଣ୍ଡିଆ ରୋଗଗ୍ରସ୍ତ ବିକୃତଚିତ୍ତ ଉମରବର ମାନସିଂହଙ୍କ

ସହିତ କଥାବାର୍ତ୍ତା ହେଉଛନ୍ତି । ଆଉ, ଅନ୍ୟ ଦିଗରେ ଦେଖିଲେ, ବାଉରୀ ସାହିର ଚେପଟେ ଗୋଟେ ନୂଆ ପକ୍କାଘର ମୁଣ୍ଡ ଟେକୁଛି । ତାର ଏକ ମହଲା କାମ ଶେଷ ହୋଇ ଦୋମହଲାର ଛାତ ପଡ଼ୁଚି, ଆଉ, ଏକ ମହଲା ଭିତରେ ଶୁଭୁଚି ରେଡ଼ିଓଗାନ, ଚାଲିଚି ଦଶ ପାଞ୍ଚ ଜଣଙ୍କର ଆଡ୍ଡା, କୁହାଯାଉଚି, ଦେଶ ବର୍ତ୍ତମାନ ଅନେକ ବାଟ ଆଗେଇଚି !!!

ଏବେ ସେହି ପୁରୁଣା ପିଣ୍ଡାର ବିବର୍ଣ୍ଣ ଆରାମ ଚୌକିରେ ଆଉଜି ଶୋଇଛନ୍ତି ପୁରୁଣା ଜମିଦାର ଭ୍ରମରବର ମାନସିଂହ । ଥାନାର ଚଉକି-ଦାର, ଦଫାଦାର ଅବସର ନେଲାପରେ ପୂର୍ବର ବିବର୍ଣ୍ଣ ନେଳି ପଗଡ଼ି ଓ ଖାକି କାମିଜ ପିନ୍ଧି ଯେପରି ଅତୀତ କ୍ଷମତାର ମୂକସାକ୍ଷୀ ରୂପେ ବେଳେ ବେଳେ ବୁଲି ବାହାରନ୍ତି, ଭ୍ରମରବର ମାନସିଂହଙ୍କୁ ଦେଖିଲେ ସେହିକଥା ମନେପଡ଼େ । ଆଉ ସେ ଗୌରବ ନାହିଁ, ଅଛି ଗୌରବର କଙ୍କାଳ । ଦେହର ରୂପ ଗୌରବ ଭାଙ୍ଗିଯାଇଛି । ବାଉଁଶ ଦେହରେ ପୋକ ଲାଗିଲେ ତା ଯେପରି ଦୁର୍ବଳ ହୋଇ ଖଣ୍ଡ ଖଣ୍ଡ ଛିଣ୍ଡି ପଡ଼େ, ତାଙ୍କର ଶରୀର ଠିକ୍ ସେଇ ଅବସ୍ଥାରେ ଆସି ପହଞ୍ଚିଛି । ଡାକ୍ତର ଆସି କହିଯାଇଛନ୍ତି—ରାଜ-ଯକ୍ଷ୍ମା । କ୍ଷମତାରେ ଥିଲାବେଳେ ସେ ଖଣ୍ଡମଣ୍ଡଳର ରାଜା ଥିଲେ । ରାଜ ଶବ୍ଦ ସହିତ ଯକ୍ଷ୍ମା ଯୋଡ଼ିହେବା ଦ୍ୱାରା ଲୋକେ ହୁଏ ତ ତାଙ୍କୁ ରାଜଯକ୍ଷ୍ମା କହୁଥିବେ; କିନ୍ତୁ ପ୍ରକୃତରେ ରୋଗ ଭିତରେ ଯେ ରଜା ସେହି ଯକ୍ଷ୍ମା ତାଙ୍କୁ ଆକ୍ରମଣ କରିଛି । ପାଖରେ ପିତୃପିତାମହ ଅମଳର ପୁରୁଣା ପଥର ପିଣ୍ଡା ଉପରେ ବସି ବାଉରୀ ସାହିର ଦୁଇ ଚାରୋଟି ଲୋକ ବିବ୍ରତ ବଦନରେ ତାଙ୍କ ମୁହଁକୁ ଚାହିଁରହିଛନ୍ତି, ଆଉ, ଭ୍ରମରବର ମାନସିଂହେ ଖୁଁ ଖୁଁ କାଶି ବେଳେ ବେଳେ ଆଖି ଫିଟାଉଛନ୍ତି । ପାଖରେ ଥୁଆ-ହୋଇଥିବା ପିକଦାନୀ ଭିତରେ ଛେପ ଖଙ୍କାର ପକାଉଛନ୍ତି । ପାଖର ଫୁଟେ ଦେଢ଼ ଫୁଟ ଜାଗାକୁ ତାହା କଳୁଷିତ କରିପକାଉଛି ।

ତାଙ୍କର କ୍ଷୀଣକଣ୍ଠରୁ ଶୁଣାଗଲା—"କ ରେ ରଙ୍କ ! ଆଜି କଣ ମୁଁ ମନେପଡ଼ିଲି ? ପିଲାମାନେ ଭଲ ଅଛନ୍ତି ? ମୋର ତ ଚାଲିଯିବାର ବେଳ ହେଲା । ତୁମମାନଙ୍କର ରହିବାର ସମୟ । ତୁମେମାନେ ଏତେବେଳେ କାହିଁକି ଆସିଲ ? ନିକଏ ଦୂରେଇ ହୋଇ ବସ । ଡାକ୍ତର କହିଛନ୍ତି—ଏ ରୋଗଟା ଡିଏଁ ।"

ରଙ୍କ ନାହାକର ଭେଣ୍ଡାପୁଅ ଉତ୍ତର ଦେବାକୁ ଯାଇ କହିଲା—"ନାଇଁ ସାଆନ୍ତେ ! ରୋଗ ଏବେ ଲୁଚିବ, ରୋଗ ଅନେକ ଦିନ ହେଲା ଆମ ପାଖକୁ ଚେଇଁ ଆସିଚି ଆଜକୁ ଦୁଇ ତିନ ବର୍ଷ ଉଚ୍ଚ । ଆଉ ଆମକୁ ଭୟ ନାହିଁ ।" ତା ମୁହଁରୁ କଥା ସରୁ ନ ସରୁ ମୁଦି ହୋଇଥିବା ଆଖି ଦୁଇଟାକୁ ଫିଟାଇ ମାନସିଂହେ ସଳଖି ହୋଇପଡ଼ି ବସି ବ୍ୟଗ୍ରକଣ୍ଠରେ କହିଲେ—'ନା ରେ ବାବୁ, ନା । ଏ ଦଶା ଆଉ କାଏ ନ ହେଉ ?"

ରଙ୍କ ନାହାକ ପୁଅ ଆଡ଼କୁ ଟିକିଏ ଚାହିଁ ଆଖି ଛଳ ଛଳ କରି କହିଲା—"ସାଆନ୍ତେ ! ସେ କହିପାରିଲା ନାହିଁ । ସାନ ସାଆନ୍ତେ ଆମକୁ ସେଇଦିନୁ ଆକ୍ରମଣ କଲେଣି ! ଆପଣ ଜଣେ ସିନା କଷ୍ଟ ପାଉଛନ୍ତି, ଆମେ ଗାଆଁ ଟାପାକ ଲୋକ ଏବେ ଗାଁ ଛାଡ଼ି ଚାଲିଯିବାକୁ ବସିଛୁ ।"

ମାନସିଂହେ ଆହୁରି ଆଶ୍ଚର୍ଯ୍ୟହେଲା ପରି ପଚାରିଲେ—"କ ରେ, ଗାଁ ଛାଡ଼ି କାହିଁକି ଚାଲିଯିବ ରେ ? ମୁଁ ସିନା ଜମିର ମାଲିକ ଥିଲି, ତୁମକୁ ଖଟାଉଥିଲି, ସଞ୍ଜାଧାନ ନେଉଥିଲି, ଏବେ ତ ତୁମେ ଜମିର ମାଲିକ ହେଲ, ନିଜେ ଚାଷ କଲ, ତୁମେ ଗାଁ ଛାଡ଼ି ଚାଲିଯିବ କାହିଁକି ?"

ରଙ୍କ ନାହାକ ମୁଣ୍ଡରେ ହାତ ଦେଇ କହିଲା—"ହଁ ବୁଝିବାକୁ ପଡ଼ି ପାଇଲୁ; କିନ୍ତୁ ଯିବାକୁ ବାଟ ପାଉନାହୁଁ ।"

"ବାଟ ? କି ବାଟ ? ତୁମ ବାଟ କିଏ ବନ୍ଦ କଲା ? ମୁଁ ତ କେବେ ବନ୍ଦ କରିନାହିଁ । ତୁମେମାନେ ଯେତେବେଳେ ଏହି ଦୁଆର ମୁହଁରେ

ଦରକାର କଲ ଡାକୁଥିଲ ମୁଁ କହିଥିଲି 'ତଥାସ୍ତୁ'। ତୁମର ସାନ ସାଆନ୍ତଙ୍କ ହାତରେ ପତାକା ଥିଲା। ସେ ତୁମମାନଙ୍କୁ ଚଳାଉଥିଲେ। ସେ ସବୁ କଥା ଜାଣନ୍ତି। ତାଙ୍କୁ ପଚାର, ବାଟ ମୁଁ ବନ୍ଦ କରିନାହିଁ।"

ରଙ୍କ ନାହାକ ଆଖିରୁ ଲୁହ ପୋଛି ପୋଛି କହିଲା—"ଆଜ୍ଞ ସେ କଥା କହନ୍ତୁ ନା ସାଆନ୍ତେ! ଆଜି ସେ କାଳ ନାହିଁ। ଏଇ ହାତ ଦେଖନ୍ତୁ, ଟିପଚିହ୍ନ ଦେଇ ଦେଇ ଏ ପର୍ଯ୍ୟନ୍ତ କଳା ଛାଡ଼ୁନାହିଁ; ତଥାପି ଏବେ ଟିପଚିହ୍ନ ଦେବା ଦରକାର ପଡ଼ୁଛି। ଆମେ ତ ପାଠ ପଢ଼ିନାହୁଁ। ଏଇ ଟିପଚିହ୍ନ ନେଇ ଆପଣ ଯାହା କରିବେ କରନ୍ତୁ।" ଏହା କହି କାନରେ ଗୁଞ୍ଜେଇ ରଖିଥିବା ଖଣ୍ଡିଏ କାଠି ଆଗରେ ଥୋଇଦେଲା।

ମାନସିଂହ ଏ ପର୍ଯ୍ୟନ୍ତ କଥାଟାକୁ ଭଲ ଭାବରେ ବୁଝି ନ ଥିଲେ। କହିଲେ—"ଆରେ, ତମର ବୋଧହୁଏ କିଛି ଅସୁବିଧା ହେଉଛି? ସାନ ସାଆନ୍ତେ କଣ ଗାଁରେ ନାହାନ୍ତି? ନ ଥିଲେ ତ ଆସିବେ। ସେ ସବୁ ସୁବିଧା କରିଦେବେ। ମୋତେ କଣ ଆଉ ବେଳ ଅଛି?"

ପାଖରେ ଥିବା ସମସ୍ତେ ଏକ ସମସ୍ୱରେ କହିଲେ—"ଆଜ୍ଞ ସେ କଥା କହନ୍ତୁ ନା, ସାଆନ୍ତେ! ସାଦାକାଗଜରେ ଟିପଚିହ୍ନ ଦେଇ, ଆଜ୍ଞ ତାଙ୍କର ହାତରେ ଦେଇ, ଏ ଅବସ୍ଥା ହେଇଛି। ଜମିବାଡ଼ି ତ ସବୁ ଯାଇଛି, ଏବେ ବସ୍ତାଖଣ୍ଡିକ ପାଇଁ ଆମର ଲଢ଼େଇ। ତାହା ବି ଯିବା ଉପରେ।"

ବୁଝି ବୁଝି ଜଣାପଡ଼ିଲା ଗାଁର ସାନ 'ସାଆନ୍ତେ' ଜମିଦାରୀ ଲୋପ ପରେ ଗାଁର ବାଉରୀମାନଙ୍କୁ ମେଳେଇ ଯେଉଁ ନୂଆ ଜମିଦାରୀ ଗଢ଼ିଲେ ସେଥିରେ ବାଉରୀମାନଙ୍କର ପୁରୁଣା ଜମିଦାରଙ୍କଠାରୁ ପାଇଥିବା ଜମିତକ ତ ହାତରୁ ଚାଲିଗଲା; ବାକି ବାଡ଼ିପଟେ ଯେଉଁ ବସ୍ତାଟା ଥିଲା ତାହା ଜମି ମାପରେ ବାହାରିବାରୁ ସେ ଖଣ୍ଡ ବି ଉଠିଯାଉଛି।

ବଡ଼ ସାଆନ୍ତେ ମାନସିଂହେ ସବୁ ଶୁଣି ନୀରବରେ ଗୋଟାଏ ଦୀର୍ଘଶ୍ୱାସ ପକାଇ ଆରାମ ଚଉକି ଉପରକୁ ଆଉଜିପଡ଼ିଲେ । ତାଙ୍କ ମୁହଁରୁ ବାହାରିଲା – "ଜମିଦାରୀ ଉଠିଲା ନା କ୍ଷମତା ହସ୍ତାନ୍ତର ହେଲା ?"

# ସିଧା ସଳଖେ ଭୁବନେଶ୍ୱର

କେବଳ ସେଇ ଗାଆଁରେ କାହିଁକି, ଗାଁ ନିକଟରେ ଥିବା ଦି’ ଚାରିଟା ଗାଁରେ ସେଇ ଏକା କଥା ହିଁ ଶୁଣାଗଲା—ବଇଶାଇ ଘରର ବଡ଼ ପୁଅ ପାଶ୍ କଲା । ଚଷାମାନେ ହଳ ନେଇ ଗଲାବେଳେ ଏଇ ବିଷୟରେ କଥାବାର୍ତ୍ତା ହେଲେ । ଗାଁରେ ଯେଉଁମାନେ ପାଠୁଆ ଥିଲେ ସମସ୍ତଙ୍କ ମୁହଁରେ ଏହି ଆଲୋଚନା ଦୁଇ ଚାରି ଦିନ ପର୍ଯ୍ୟନ୍ତ ଚାଲିଲା । କିନ୍ତୁ ବଇଶାଇ କିଛି ବୁଝିପାରିଲେ ନାହିଁ । ସମସ୍ତଙ୍କ ମୁହଁରୁ ଏ କଥା ଶୁଣି ସେ ଭୁଲିହୋଇ ପୁଅକୁ କେବଳ ଚାହିଁ ରହିଲେ । ସେ ବୋଧହୁଏ ମନେକଲେ ପୁଅର କିଛି ଗୋଟାଏ କ’ଣ ପରିବର୍ତ୍ତନ ହୋଇଗଲା । କିଏ ଏ ବିଷୟରେ ପ୍ରଶ୍ନକଲେ, ସେ ଉତ୍ତରଦେଲେ— କ’ଣ ହେଲା ମୁଁ ଜାଣେନା, ସେ ଘରେ ଅଛି, ଆଗପରି ଖିଆପିଆ କରୁଛି, ଦେହ ବି ଭଲ ଅଛି । ଗଣପତି ବଇଶାଇଠାରୁ ଏକଥା ଶୁଣି ପାଠୁଆ ଲୋକେ ହସନ୍ତି । ପରସ୍ପର ମୁହଁ ଚାହାଁଚାହିଁ ହୋଇ କହନ୍ତି—ଦେଶଟା ଆମର କେତେ ପଛରେ ପଡ଼ିଛି । ପୁଅ ପାଶ୍ କଲେ ତା’ର ଗୋଟାଏ କିଛି ଶାରୀରିକ ପରିବର୍ତ୍ତନ ହୋଇଯିବ ବୋଲି ବୋଧହୁଏ ବୁଢ଼ା ଭାବିଥିଲା । ଏହା ଠାରୁ ଉପହାସର କଥା ଆଉ କ’ଣ ଅଛି ?

ଗଣପତି ବଇଶାଇ ଜଣେ ଭଲ ରଇତ ହିସାବରେ ସେ ଅଞ୍ଚଳରେ ଖୁବ୍ ସୁପରିଚିତ । ଘରେ ପାଞ୍ଚଟା ହଳ, ସାତଟା ମୂଲିଆ; ତଥାପି ଗଣପତି ନିଜେ ହଳ ଧରେ, ହାତରେ ଧାନ ବୁଣେ, ଆଣ୍ଠୁ ପକେଇ ବିଲ ବାଛେ, ଦାଆ ଧରି ଧାନ କାଟେ, ଆଉ ଯାହା ଧାନ ଅମଳ କରେ ତାକୁ ସେ ଅନ୍ୟ କାହା ହାତରେ ମପାଏ ନାହିଁ । ସେ

ଏକଠାରୁ କୋଡ଼ିଏ ପର୍ଯ୍ୟନ୍ତ ଗଣିପାରେ । ତେଣିକି ସେ ହିସାବ ରଖିବାକୁ ହେଲେ କୋଡ଼ିଏ, ଦ'କୋଡ଼ି, ପାଞ୍ଚ କୋଡ଼ି,ଦଶକୋଡ଼ି ଏହିପରି ହିସାବ କରେ । ଏହିପରି ଜଣେ ଚାଷୀ ଘରର ପୁଅ ଯେତେବେଳେ ମାଟ୍ରିକ୍ୟୁଲେସନ୍ ପାଶ୍ କଲା ଲୋକେ ଆଶ୍ଚର୍ଯ୍ୟ ହୋଇଗଲେ ।

ଲୋକେ କହନ୍ତି ଗଣପତି ବଡଶୋଇ ସତ୍ୟଯୁଗର ଲୋକ । ଯେଉଁଦିନ ବଡଶୋଇଙ୍କ ପୁଅ ମାଟ୍ରିକ୍ୟୁଲେସନ୍ ପାଶ୍ କଲା ଓଡ଼ିଶା କୃଷି ବିଭାଗର ଲୋକେ କହିଲେ – ଗଣପତି ବଡଶୋଇ ସତ୍ୟଯୁଗର ହୋଇପାରେ,ତ୍ରେତାଯୁଗର ହୋଇପାରେ; ମାତ୍ର ଓଡ଼ିଶା କୃଷି ବିଭାଗର ସେ ଗୌରବ । ସରକାରୀ ଖତ ନେଇ ସେ ଯେଉଁ ଫସଲ ଆଦାୟ କରନ୍ତି ସେଥିରେ ସାରା ଓଡ଼ିଶାରେ ସର୍ବୋଚ୍ଚ ସ୍ଥାନ ଅଧିକାର କରି ତିନି ଥର ପ୍ରଥମ ପୁରସ୍କାର ପାଇଛି । ଏ ପୁରସ୍କାର ପାଇଁ ସେ ସହରକୁ ଆସିନାହିଁ—ତା' ଦୁଆରେ କର୍ମକର୍ତ୍ତା-ମାନେ ଦେଇଆସିଛନ୍ତି । ଏଥିରୁ ଜଣାପଡ଼େ କୃଷି ଛଡ଼ା ବାହାରର ପ୍ରଶଂସାକୁ ସେ ଆଦୌ ପସନ୍ଦ କରେ ନାହିଁ ।

ଗଣପତି ବଡଶୋଇକୁ ଦେଖିଲେ ଜଣାଯାଏ ସତେ ଯେପରି ସେ ଆଧୁନିକ ସଭ୍ୟତା ଠାରୁ ବହୁତ ପଛରେ । ବୟସ ପଚାରିଲେ କହିପାରିବ ନାହିଁ ... ମଧ୍ୟ ଜାଣି ହୁଏ ନାହିଁ । ବାହୁ ଦୁଇଟା ଲୁହାଠାରୁ ଟାଣ, ମୁଣ୍ଡର ବାଳକୁ ଆଧୁନିକ ପାଠୁଆଙ୍କ ପରି ନ କାଟି ସେ ଚୁଟି ରଖେ । କୋଟ କମିଜ ନ ଲଗାଇ ଦେହରେ ଗାମୁଛା ବା ଚଦର ପକେଇଥାଏ । ସେ କେବେ-ହେଲେ ଯୋତା ଲଗାଏ ନାହିଁ । ସେ କହେ – ତା' ଯୌବନରେ କେବେ ଥରେ ଏକ ବଞ୍ଚରର ଭୂଇଁକୁ ବଳରେ ଦଖଲ କଲାବେଳେ କଣ୍ଟା ବୁଦା କାଟିବା ପାଇଁ ହଳେ ପାଦୁକା ଲଗାଇଥିଲା । ସେ ହଳକ ପୁଣି ସେ ନିଜ ହାତରେ ତିଆରି କରିଥିଲା ତାଳ ବରଡ଼ାର ଖୋଳପାରେ । ସେହିଦିନୁ ସେ ଆଉ ଚଟି ବା ଯୋତା ଲଗାଇ ନାହିଁ ।

ବ୍ରହ୍ମପୁର ଉପକଣ୍ଠରେ ଥିବା ଏକ ମଫସଲ ଗାଆଁର ଏହି ଗଣପତି ବଡଶୋଇ ଆଜି ସେ କୃଷି ବିଭାଗର ଜଣେ ଗୌରବର ପାତ୍ର

ହୋଇଛି ତାହା ମୂଳରେ ତା'ର ନିଷ୍ଠା, ପରିଶ୍ରମ ଓ ସଚ୍ଚୋଟପଣିଆ କାମ କରିଛି । ସେ କହେ—ଜୀବନରେ ବହୁ ଲୋକଙ୍କର ରଇତ ହୋଇ ସେ ଜମି ଚାଷ କରିଛି; କିନ୍ତୁ କାହାରିକୁ ଠକି ନାହିଁ । ସେ ଧାନ ବିଲରେ ପଶି ଧାନ କାଟିଲା ବେଳେ, ଆଖୁ କିଆରୀରେ ପାଣି ମଡ଼ାଇଲା ବେଳେ, ଭୂଇଁଚଣା ଆଦାୟ କଲାବେଳେ 'ଗ୍ରୋ-ମୋର ଫୁଡ୍' ବିଭାଗର କର୍ମଚାରୀମାନେ ତା'ର ଫଟୋ ଉଠାଇନେଇ 'ଉତ୍କଳ ପ୍ରସଙ୍ଗ'ରେ ଯେ ବାହାର କରିଛନ୍ତି ସେ କଥା ସେ ନିଜେ ଜାଣେନା; ଅଥଚ ସେ ବିଷୟ ସମସ୍ତେ ଜାଣନ୍ତି । ଏପରି ଜଣେ ନାମଯାଦା ଲୋକର ପୁଅ ଯେତେବେଳେ ମାଟ୍ରିକୁ୍ୟଲେସନ୍ ପାଶ୍ କଲା ସେ ଖବର ଲୋକ ମୁହଁରେ ଚର୍ଚ୍ଚା ନ ହୋଇ ରହିଲା କିପରି ?

ଏ ଘଟଣାର ଠିକ୍ ପାଞ୍ଚ ବର୍ଷ ପରେ ।

ପାଞ୍ଚ ବର୍ଷ ତଳେ ଦେଶର ଅବସ୍ଥା ଯାହା ଥିଲା ତାହା ବହୁ ପରିମାଣରେ ବଦଳିଯାଇଛି । ଜମିଜମା ସମସ୍ୟାରେ ରଇତ ଓ ଜମି ମାଲିକଙ୍କ ଭିତରେ ସ୍ୱତ୍ୱ ନେଇ ପ୍ରବଳ ପ୍ରତିଯୋଗିତା ଚାଲିଛି । ସରକାରର ଅନିଶ୍ଚିତ ନୀତି ଫଳରେ ଜମିର ମାଲିକ କିଏ କେହି ବୁଝି-ପାରୁ ନାହାନ୍ତି । ରଇତ କହୁଛି ମୋର, ଜମିଦାର କହୁଛି ମୋର । ବୁଝାବୁଝି ହେବା ପାଇଁ ଦୁହେଁ ଯାଉଛନ୍ତି କଚେରିକି ।

ଏହିପରି ସମୟରେ ଭୁବନେଶ୍ୱର ନୂଆ ରାଜଧାନୀର ଏକ କ୍ଷୁଦ୍ରାୟତନ କୋଠରି ଭିତରେ ଜଣେ ପୌଢ଼ ତାର ପୁଅକୁ କହୁଛି— ବାବୁ ରେ ! ଚାଲ ଫେରିଯିବା ଗାଆଁକୁ । ମତେ ଏ ଜାଗା ଭଲ ଲାଗୁନାହିଁ । ମୋ ଗାଁ ମୋତେ ଡାକୁଛି ।

ପ୍ରୌଢ଼ ରୋଗ ଶଯ୍ୟାରେ ଶାୟିତ । ଦିନକୁ ଦୁଇ ଥର ଡାକ୍ତର ଆସି ଦେଖିଯାଉଛନ୍ତି । ରୋଗଟା କ'ଣ କେହି ଠିକ୍ ବୁଝିପାରୁ ନାହାନ୍ତି । କହୁଛନ୍ତି, ବୁଢ଼ାର ମୁଣ୍ଡ ବିଗିଡ଼ିଯାଇଛି ।

ପ୍ରୌଢ଼ର ପୁଅ ରୋଗଶଯ୍ୟା ପାଖରେ ବସି ବାପାକୁ ଆଶ୍ୱାସନା ଦେଉଛି—ବାପା ତୁମେ ନିଶ୍ଚିନ୍ତରେ ଶୁଅ । ତୁମ ଦେହ ଆସ୍ତେ ଆସ୍ତେ ଭଲ ହୋଇ ଆସିଲାଣି । ଆଜି ଅଳ୍ପ ଦିନ ଭିତରେ ସମ୍ପୂର୍ଣ୍ଣ ଆରୋଗ୍ୟ ହୋଇଯିବ । ଡାକ୍ତର କହୁଛନ୍ତି—ଏ ରୋଗ ତୁମର ମନର ରୋଗ, ଦେହର ରୋଗ ନୁହେ ।

ପୁଅ ମୁହଁରୁ ଏ କଥା ଶୁଣି ପ୍ରୌଢ଼ ଚମକି ଉଠିଲା, କହିଲା—ରୋଗ ? ରୋଗ କାହାକୁ ହୋଇଛି ? ମୋତେ ନା, ତୋତେ ? ଏ କଥା ଶୁଣି ବାପାର ମୁଣ୍ଡ କୁଆଡ଼େ ବିଗିଡ଼ିଯିବ ବୋଲି ପୁଅ ଭୁଲେଇଲା ପରି କହିଲା—ନା ବାପା, ରୋଗ ତୁମର ନୁହେ, ମୋର । ତୁମ ଦେହ ଠିକ୍ ଅଛି । ମୋ ମୁଣ୍ଡ ବିଗିଡ଼ିଯାଇଛି । ତୁମେ ନିଶ୍ଚିନ୍ତରେ ଶୋଇଲେ ମୋ ଦେହ ଭଲ ହୋଇଯିବ ।

ପୁଅ ମୁହଁରୁ ଏକଥା ଶୁଣି ପ୍ରୌଢ଼ର ମୁଣ୍ଡ ଆହୁରି ବିଗିଡ଼ିଗଲା । ସେ ଶେଯରୁ ଉଠି ଖଟ ଉପରେ ବସି ଝରକାଟାକୁ ମେଲେଇଦେଲା । ଦେଖିଲା ବାହାରେ ଘନ ଘୋର ଅନ୍ଧକାର । କେବଳ କୋଠାଘରଗୁଡ଼ାକର ଛୁଇଁଛୁଇଁଆ ଛବି ମିଞ୍ଜି ମିଞ୍ଜି ବିଜୁଳି ଆଲୁଅରେ ବାରିହେଉଛି । ତାରାଗୁଡ଼ାକ ଆକାଶରେ ମିଞ୍ଜି ମିଞ୍ଜି ଜଳୁଛନ୍ତି ସତେ ଯେପରି ଆକାଶର ଛବି ମଣିଷ ତିଆରି ବିଜୁଳିବତୀକୁ ଉପହାସ କରି ହସୁଛନ୍ତି ! କଳି କଳି ପବନରେ କାହା ଘର ଭିତରେ ବନ୍ଧା ହୋଇଥିବା କୁକୁରର ଗମ୍ଭୀର ସ୍ୱର ଭାସି ଆସୁଚି ।

ପ୍ରୌଢ଼ ଅନେକ ସମୟ ଚାହିଁରହିଲା ପରି ବାହାରକୁ ଚାହିଁ ମୁହଁ ବୁଲେଇ କହିଲା—ବାବୁ, ଯାହା କହିଲୁ, ଠିକ୍ କହିଲୁ । ତୋ ମୁଣ୍ଡ

ବଢ଼ିଯାଇଛୁ—ତୋ ଦେହ ଖରାପ ହୋଇଯାଇଛି । ବାସ୍ତବକ ମୋ
ଦେହ ଭଲ ଅଛି । ଏହା କହି ପ୍ରୌଢ଼ ଆଖି ବୁଜି ଚିନ୍ତା କଲାପରି
ବସିଗଲା । ସତେ ଯେପରି ସେ ଧ୍ୟାନମଗ୍ନ ରହି ଅତୀତକୁ ଖୋଜି
ବୁଲୁଥିଲା କେବେ ପୁଅର ଦେହ ଖରାପ ହେଲା । ସନ୍ଧାନ ପାଇଲାପରି
ଚମକି ଉଠି ଆଖି ମେଲେଇ କହିଲା—ହଁ, ଜାଣିପାରିଲି କେବେ ଦେହ
ଖରାପ ହେଲା । ମୁଁ ଚଣ୍ଡାଳ ମନା କରୁଥିଲି ତୋତେ ଯିବୁ ନାହିଁ
ବୋଲି । ମୋତେ ଏମାନେ ପ୍ରପହାର ଦେଇ ଟେକିଦେଲେ ଉପରକୁ ।
କହିଲେ—ତୁମପରି ଲୋକ ନାହିଁ, ତୁମ ପରି ଚାଷୀ ନାହିଁ । ମୋତେ
ପୁରସ୍କାର ଦେଇ ଏମାନେ ତୋତେ ନେଇଗଲେ କଣିକରି । ଯେଉଁ ଦିନ
ବାବୁ ତୁ ମାଟ୍ରିକୁଲେସନ୍ ପାଶକଲୁ ବୋଲି ଖବର ଶୁଣାଗଲା ମୁଁ
ତତେ ବହୁତ ଗୁହିଁଛି । ଏବେ ମନେପଡ଼ୁଛି ତୋର ଗୋଡ଼ହାତକୁ ମୁଁ
ଆଉଁସିପକାଇଥିଲି । ତୋ ମୁହଁରୁ କଥା ଶୁଣିବି ବୋଲି କେତେ କ'ଣ
ପଚାରୁଥିଲି । ସେତେବେଳେ ତ ସବୁ ଠିକ୍ ଥିଲା । ତୁ ସେତେବେଳେ
ଗଣପତି ବଣୋଇର ପୁଅ ଥିଲୁ । ଗଣପତି ବଣୋଇ ଚାଷ କରି କରି ଚାଷୀ
ହେଲା, ଆଉ, ତାର ପୁଅ ଗଲା ଚାଷ ବିଦ୍ୟା ପଢ଼ିବାକୁ କୋଇମ୍ବାଟୁର ।
ବାବୁ ରେ ! ତୋର ଦେହରେ ସେତିକବେଳେ ରୋଗ ପଶିଗଲା ।
ତୁ ଫେରିଲା ପରେ ଦେଖିଲି ରୋଗ ତୋତେ ସମ୍ପୂର୍ଣ୍ଣ ଧରିଛି । ତୁ ଆଉ
ବିଲକୁ ଗଲୁ ନାହିଁ, ତୁ ଆଉ ମୋ ସଙ୍ଗେ ମିଶି ଧାନ କାଟିଲୁ ନାହିଁ, କି ତୁ
ଆଉ ଖଳାରେ ଘଡ଼ି ଶୋଇଲୁ ନାହିଁ ।

ଏହା କହି ପ୍ରୌଢ଼ ପୁଣି ଆଖି ବୁଜିଲା । ଏଥର ଆଖି ବୁଜି
ପୁଅକୁ ଲକ୍ଷ୍ୟ କରି କହିବାରେ ଲାଗିଲା—ତୁ ରୋଗରେ ପଡ଼ି ଏଠାକୁ
ଚାଲି ଆସିଲୁ ଚାକିରି କରିବାକୁ । ମୁଁ କି ସେଠାରେ ସୁସ୍ଥ ହୋଇ ରହି
ପାରନ୍ତି ? ମୁଁ କହୁଥିଲି ବିଲଚାଷ, ଦେଖିଲି, ତୁ ଏଠି କରୁଛୁ କଲମ
ଚାଷ ! ତତେ ପାଇବାପାଇଁ ସବୁ ମୁଁ ଛାଡ଼ି ଆସିଛି—ଚାଷ, ହଳ, ଲଙ୍ଗଳ,
ବଳଦ । ତୁ କିମିତି ରୋଗମୁକ୍ତ ହୋଇ ଫେରିବୁ ଏଇ ମୋର ଚିନ୍ତା ।

ପୁଅ କହିଲା—ବାପା, ରାତି ଆସି ବାଜିଲା ଗୋଟାଏ । ତୁମେ
ଏପରି ହେଲେ ଚଳିବ ନାହିଁ । ପ୍ରୌଢ଼ ଆଖି ମେଲେଇ ଥରେ ପୁଅ

ଦେହକୁ ଆଉଁସିଦେଇ କହିଲା—କହିଲି ଝିଅ ମୋର ରୋଗ ନିଆଇନାଅ
ବାବୁ, ତୋର ବେଗ ହୋଇଛି । ମୁଁ ଶୁଣିଛି ହୁମାୟୁନ ବୋଲି ଜଣେ କ
ରଜା ଥିଲେ । ତାଙ୍କ ପୁଅକୁ ରୋଗ ହେବାରୁ ସେ ଭଗବାନଙ୍କ ପାଖେ
ପୁଅର ରୋଗକୁ ମାଗିନେଇ ପୁଅକୁ ବଞ୍ଚାଇଥିଲେ । ମୁଁ ଆଜି ଭଗବାନଙ୍କ
ପାଖେ ପ୍ରାର୍ଥନା କରୁଛି, ତତେ ଭଲ କରି ମତେ ସିଏ ରୋଗ ଦେଇ-
ଦିଅନ୍ତୁ । ତୁ ଫେରିଯା ଗାଆଁକୁ । ବଳଦ ଏବେ କାନ୍ଦୁଥିବେ, ବିଲ ଏବେ
ଡାକୁଥିବ । ମୁଁ ଯେ ଏଠି ରହିଲି, କରିବ କ'ଣ ? ତୋ' ପାଇଁ ତୋ
ଭାଇ ବି ଚାଲି ଆସିଲା ।

ବାପାଙ୍କର ଏ ପ୍ରକାର ପ୍ରଳାପ ବନ୍ଦ କରି ନ ପାରି ପୁଅ
କହିଲା—ବାପା, ତୁମେ ତ ଜାଣ ମୁଁ ଏବେ ସରକାର ଘରର ଜଣେ
କିରାଣୀ । ଗାଆଁକୁ ଫେରିବି କିପରି ? ମତେ କ'ଣ ସବୁବେଳେ ଛୁଟି
ମିଳୁଥିବ ?

ପ୍ରୌଢ଼ ଉତ୍କଣ୍ଠିତ ସ୍ୱରରେ ଆଖିକୁ ତରାଟି ସେହି ଘନଘୋର
ରାତକୁ ଚମକାଇଲା ପରି କହିଲା— ତୁ କିରାଣୀ ? ତୁ ଚାଷୀ ନୋହୁ ? ତୁ
ଗଣପତି ବିଶୋଇର ପୁଅ ନୋହୁ ? ତୋତେ କ'ଣ ମୁଁ ଏଇଥିପାଇଁ ପାଠ
ପଢ଼େଇଥିଲି ? ମତେ କଣ ଏ ସରକାର ଏଇଥିପାଇଁ ଏ ପୁରସ୍କାର
ଦେଇଥିଲା ଯେ ପୁଅକୁ ପାଠ ପଢ଼େଇ ଚାଷ ଛାଡ଼ିବାକୁ ? ଦେ, ମୋ ବାଡ଼ି
ମୋ ହାତକୁ ଦେ । ତୁ କୋଇମ୍ବାତୁରରୁ ସିଧା ସଳଖେ ଏଠାକୁ ଚାଲି-
ଆସିଚୁ । ମୁଁ ଆସିଥିଲି ଫେରାଇ ନେବାକୁ । ବିଲ ମୋର ପଡ଼ିଆ ପଡ଼ିଚି,
ସାହୁକାର ମୋର ଡାକ ପକାଇଚି ସଞ୍ଜାପାଇଁ, ମୁଁ ବଚନ ଦେଇଚି
ଫେଡ଼ିଦେବି । ଏହା କହି ଉତ୍ତେଜନାରେ ପ୍ରୌଢ଼ ଉଠିବାକୁ ଚେଷ୍ଟା କରି
ତଳେ ପଡ଼ିଗଲା ।

ଏ ଘଟଣାର ପ୍ରାୟ ମାସକ ପରେ ଓଡ଼ିଶା ସରକାରଙ୍କ ପ୍ରଚାର
ବିଭାଗରୁ ପ୍ରକାଶିତ 'ଉତ୍କଳ ପ୍ରସଙ୍ଗ'ରେ ଚାଷୀମଣି ଗଣପତି ବିଶୋଇଙ୍କ
ଏକ ଫଟୋ ବାହାରିଲା । ଫଟୋ ତଳେ ଲେଖାଥିଲା—ଓଡ଼ିଶା କୃଷି

ଜଗତର ସୁପରିଚିତ ଗଣପତି ବିଶୋଇ ଆଜି ଇହ ଜଗତରେ ନାହାନ୍ତି । ଏକରକେ ଏ ପଚିଶ ମହଣ ଧାନ ଆଦାୟ କରି କୃଷି ବିଭାଗରୁ ଦୁଇ ଥର ପୁରସ୍କାର ପାଇଥିଲେ । ଏହାଙ୍କର ଅକାଳ ବିୟୋଗରେ ଓଡ଼ିଶା ଜଣେ ସୁଦକ୍ଷ କୃଷୀଙ୍କୁ ହରାଇଲା । ଏହାଙ୍କର ଦୁଇ ପୁଅଙ୍କ ଭିତରୁ ଜଣେ କୃଷି ବିଦ୍ୟାରେ ପାରଦର୍ଶିତା ହାସଲ କରି ସେକ୍ରେଟେରିଏଟରେ କିରାଣୀ ହୋଇଛନ୍ତି, ଆଉ ଜଣେ ଉତ୍ତର ଓଡ଼ିଶାର ଡିଙ୍କି ଅଫିସର ରୂପେ କାର୍ଯ୍ୟ କରନ୍ତି ।

# ଭୀମା-ଭୀମ-ଭୀମସେନ

ରଙ୍ଗମଞ୍ଚ, ଯାତ୍ରା ଓ ସୁଆଙ୍ଗରେ ଦେଖାଯାଇଥାଏ ଯିଏ ରଜା ହୋଇ ବାହାରିଥାଏ ସିଏ ହିଁ ପରବର୍ତ୍ତୀ ଦୃଶ୍ୟରେ ବେଶ ବଦଳାଇ ଭିକାରି ହୋଇ ବାହାରେ । ଦର୍ଶକମାନେ ଉଭୟ ଦୃଶ୍ୟକୁ ବେଶ୍ ଉପଭୋଗ କରନ୍ତି; କିନ୍ତୁ ଯେଉଁ ଦିନ ମୁଁ ଭୀମସେନ ବାବୁଙ୍କୁ ମିଲିଟାରି କାଇଦା ପୋଷାକରେ ଦେଖିଥିଲି, ପରେ ତାଙ୍କୁ ଜଣେ କୁଲି ଭାବରେ ଦେଖିଲି, ସେଦିନ ମୁଁ ଆନନ୍ଦ ଅନୁଭବ କରିପାରିଲି ନାହିଁ । ଏ ଦୃଶ୍ୟ ମୁଁ ରଙ୍ଗମଞ୍ଚରେ ଦେଖି ନଥିଲି । ଦେଖିଥିଲି, ତାଙ୍କର ଜୀବନ ନାଟକର ଦୁଇଟି ଦୃଶ୍ୟରେ । ଯେଉଁ ଦିନ ତାଙ୍କୁ ମିଲିଟାରି ବେଶରେ ଦେଖିଲି ସେ ଫେରୁ-ଥିଲେ ରେଳରେ ଘରକୁ । ମୁଁ ଜଣେ ରେଳଯାତ୍ରୀ ମାତ୍ର ଥିଲି । ଦ୍ୱିତୀୟ ମହାଯୁଦ୍ଧ ବେଳେ ରେଳଯାତ୍ରା ହେବା ଯେ କି ଦୁର୍ଭୋଗର କଥା ଅନୁଭବୀ ଛଡ଼ା କେହି ବୁଝିପାରିବେ ନାହିଁ । ଗାଡ଼ି ଷ୍ଟେସନରେ ଠିଆହେଲା । ମଫସଲ ଅଞ୍ଚଳର ଷ୍ଟେସନ, ତଥାପି ଯାତ୍ରୀଙ୍କ ସଂଖ୍ୟା ଶହେରୁ କମ୍ ନୁହେ । ସମସ୍ତଙ୍କ ମୁହଁରେ କେବଳ ଯୁଦ୍ଧ ଖବର । ଜର୍ମାନୀ ରୁଷିଆ ଆକ୍ରମଣ କରିଛି, ପୋଲାଣ୍ଡ ପ୍ରାନ୍ତରେ ଭୀଷଣ ଯୁଦ୍ଧ ଚାଲିଛି, ଇଟାଲିର ପାଦଦେଶରେ ମିତ୍ରପକ୍ଷ ପ୍ରବେଶ କରିବାକୁ ଉଦ୍ୟମ କରୁଛନ୍ତି । ଖବରକାଗଜରେ ପଢ଼ିବାକୁ ମିଳୁଛି ଗତ ସପ୍ତାହରେ ବୋମା ପଡ଼ିବା ଫଳରେ ପୃଥିବୀର ଜନସଂଖ୍ୟାରୁ ଦଶ ପନ୍ଦର ହଜାର ଊଣା ହୋଇ ଯାଇଛନ୍ତି । କେଉଁଠି ସହର ପୋଡ଼ୁଛି, ମଫସଲ ପଦା ପାଲଟୁଛି, ଜର୍ମାନୀରେ ଇହୁଦୀ ଯଜ୍ଞ ଚାଲିଛି । ଏସବୁ ପଢ଼ିଲେ ବା ପଢ଼ିଥିବା ଲୋକଙ୍କଠାରୁ ଶୁଣିଲେ ରୋମ ଟାଙ୍କୁରି ଉଠୁଛି । ବାଟେ ଘାଟେ, ଘରେ ବାହାରେ, ହୋଟେଲରେ, ମନ୍ଦିରରେ ସବୁଆଡ଼େ ଏଇ ଆଲୋଚନା ।

ମଫସଲର ସେହି ଛୋଟ ରେଳ ଷ୍ଟେସନଟିର ଯାତ୍ରୀ ଗହଳରେ ବି ଏଇ କଥା ପଡ଼ୁଛି । ଗାଡ଼ି ଆସି ଷ୍ଟେସନ ପ୍ଲାଟଫର୍ମରେ ଠିଆହେଲା । ମୋଟେ ମିନିଟିଏ ଖଣ୍ଡେ ରହିବ । କିଏ ଓହ୍ଲାଇବେ, କିଏ ଚଢ଼ିବେ । ଛୋଟ ପିଲାଠୁ ଆରମ୍ଭ କରି ଅଶୀ ବର୍ଷର ବୃଦ୍ଧ ପର୍ଯ୍ୟନ୍ତ ସେହି ମିନିଟକ ସମସ୍ତେ ଭିତରେ ପ୍ଲାଟଫର୍ମର ଏପାଖରୁ ସେପାଖ ଯାଏଁ ଦଉଡ଼ାଦଉଡ଼ କରିବାକୁ ଲାଗିଲେ । କିଏ କାହାକୁ ପେଲୁଛି, କିଏ କାହାକୁ ଠେଲୁଛି, କାହାର ବୁଜୁଳା ଖସିପଡ଼ୁଚି, ଦୁଆର ଖୋଲା ନ ଥିବାରୁ କିଏ କାହାକୁ ଝରକାବାଟେ ଭିତରକୁ ଭର୍ତ୍ତିକରୁଚି, ଭିତରୁ ମଧ୍ୟ ତାହାର ପ୍ରତିରୋଧ ଚାଲିଚି । ଏହିପରି ଗହଳ ଚହଳ ଭିତରେ ମୁଁ ଥିଲି ଜଣେ ଯାତ୍ରୀ । ମୁଁ ଝରକା ବାଟେ ଭିତରକୁ ପଶିପାରିଲି ନାହିଁ । ଗାଡ଼ି ଛାଡ଼ିବା ମୁହୂର୍ତ୍ତରେ ଫୁଟ୍‌ବୋର୍ଡରେ ଠିଆହୋଇ କାତର ଭାବରେ ଭିତରକୁ ଚାହିଁରହିଲି । ଖାକି ପୋଷାକ ପରିହିତ ପ୍ରାୟ କୋଡ଼ିଏ ଜଣ ବ୍ୟକ୍ତି ସେ ଡବାଟିକୁ ଅଧିକାର କରିଛନ୍ତି । ମୋର କାତର ଦୃଷ୍ଟି ଓ ବାବୁ ଶବ୍ଦ ଉଚ୍ଚାରଣରେ ସେହି ଭିତରୁ ଜଣକର ବୋଧହୁଏ ମୋ ପ୍ରତି ଦୟା ହେଲା । ଦୁଆରଟା ଖୋଲି ଭିତରକୁ ଡେଣା ଧରି ଟାଣିନେଇ ସେ ମୋତେ ଗୋଡ଼ତଳେ ବସାଇ-ଦେଲେ । ଗୋଟିଏ ବେଞ୍ଚ ସେ ପୂରାପୂରି ଅଧିକାର କରିଥିଲେ । ମୋତେ ବସେଇବା ସଙ୍ଗେ ସଙ୍ଗେ ମୋରି ଆଡ଼କୁ ଗୋଡ଼ ରଖି ଆରାମରେ ଡଳି-ପଡ଼ିଲେ ପରାଯାଇଥିବା ଏକ କମ୍ବଳ ଶେଯ ଉପରେ । ପାଦର ବୁଟ୍ ଜୋତା ମୋ ଦେହରେ ବାଜେ ନ ବାଜେ । ମୁଁ ଜାଲିଆନାବାଗର କାହାଣୀ ପଢ଼ିଲାବେଳେ ପଢ଼ିଥିଲି—ସୈନିକମାନେ ଲୋକଙ୍କୁ ତ ଗୁଳି ବନ୍ଧୁକରେ ମାଇଲେ, ବୁଟ୍ ଜୋତାରେ ଚକଟି ମାରିଥିଲେ ମଧ୍ୟ । ଏ ବୁଟ୍ ଜୋତାକୁ ଦେଖି ମୋର ସେଇ କଥା ମନେପଡ଼ିଲା । ଗଣିଲି ତା' ଦେହରେ କେତେଟା କଣ୍ଟା ଗୋବ ବସିଚି । ମୁଁ ମନେ ମନେ ତାକୁ ଚାହିଁ ଗଣିବାର ଦେଖି ଲୋକଟାର ମନରେ କି ଭାବ ଆସିଲା କେଜାଣି, ପଚାରିଲା—କଣ ଦେଖୁଚ ? ସେ ପର୍ଯ୍ୟନ୍ତ ମୁଁ ଜାଣି ନଥିଲି ସେ ଲୋକ ଓଡ଼ିଆ ବୋଲି । ମୋ ମୁହଁରୁ ଓଡ଼ିଆରେ ଉତ୍ତର ଶୁଣି ସେ ଭିତରେ ଥିବା ଖାକି ପୋଷାକବାଲାଏ କେହି କିଛି କହିଲେ ନାହିଁ, ସେ କିନ୍ତୁ ଉଠି ବସି ପଚାରିଲା—ଆପଣ କଣ କରନ୍ତି ? ଘର କେଉଁଠି ? ଯାଉଛନ୍ତି କୁଆଡ଼େ ?

ଉତ୍ତର ଦେବା ପରେ ମୁଁ ସାଙ୍ଗେ ସାଙ୍ଗେ ନମସ୍କାରଟିଏ ପାଇଲି । ଗୋଡ଼ତଳେ ବସିବାର ଅସୁବିଧା ମୋର ଦୂର ହେଲା । ବେଞ୍ଚଟାକୁ ଟିକିଏ ମୋ ଆଡ଼େ ଟାଣିଆଣି ସେ କହିଲେ—ବସନ୍ତୁ, ବସନ୍ତୁ । କିଛି ମନେ-କରିବେ ନାହିଁ । ମୁଁ ଯଥା ସମ୍ମାନ ଦେଖାଇ କହିଲି—ଆପଣମାନେ ତ ବର୍ତ୍ତମାନ ଦେଶର ଘର ତାଳିକାରେ ଅଛନ୍ତି । ଆମମାନଙ୍କର ତ ସେ ଭାଗ୍ୟ ନାହିଁ । ଏଇ ଠେଲା ପେଲା ଭିତରେ ଯାହା କିଛି ଆପଣମାନଙ୍କ ସହିତ ସମ୍ପର୍କ ଆସୁଛି ।

ସେ ଟିକିଏ ହସିଦେଲେ, କହିଲେ—ନା, ନା, ଠେଲା ପେଲା କଥା ଯାହା କହିଲେ ସେଟା ଠିକ୍ ନୁହେଁ । ଏଇଟା ସବୁ ମିଲିଟାରୀ ଡବା, ଦୁଆର ମୁହଁରେ ଲେଖା ହୋଇଛି ପଢ଼ିଥିବେ । କେବଳ ଆପଣଙ୍କୁ ବିପଦ ମୁହଁରୁ ରକ୍ଷା କରିବା ପାଇଁ ଦୁଆରଟା ସିନା ଫିଟାଗଲା, ନ ହେଲେ ତ ଅନ୍ୟ ଲୋକର ପ୍ରବେଶ ଏଥିରେ ମନା ।

ମୁଁ କହିଲି—ବୁଝିଲି; କିନ୍ତୁ ନ ଗଲେ ସେ ନ ଚଳେ । ଷ୍ଟେସନରେ ରହିଗଲେ ସେ ପୁଣି ଦିନେକାଳ ପଡ଼ିରହିବାକୁ ହେବ, ଏଇଥିପାଇଁ କୌଣସିମତେ ଦୁଆରକୁ ଧରି ଠିଆହୋଇପଡ଼ିଲି । ଆପଣଙ୍କର ଯଦି ଅସୁବିଧା ହୋଇଥାଏ କିଛି ମନେ କରିବେନି ।

ସେ କହିଲେ—ନା, ନା, ମୁଁ ସେପରି କିଛି ମନେକରୁନାହିଁ । ବରଂ ଆପଣଙ୍କ ପରିଚୟ ପାଇ ବଡ଼ ଖୁସି ହେଲି । ଏହିପରି ବେଳେ ବେଳେ ସୁବିଧା ମିଳେ ଅନ୍ୟ ଲୋକଙ୍କୁ ଜାଣିବା ପାଇଁ । ଆଜି ସେ ସୁବିଧା ମିଳିଲା ସେଥିପାଇଁ ନିଜକୁ କୃତାର୍ଥ ମନେକରୁଛି । ଯୁଦ୍ଧର ଗତି ଯେପରି ଚାଲିଛି ପୁଣି ସେ ଦେଖାସାକ୍ଷାତ ହେବ ତାର କି ଠିକ୍ ଠିକଣା ଅଛି ?

ପଚାରିଲି ଆଜ୍ଞା, ଆପଣଙ୍କର ପରିଚୟଟା ମୋତେ ଦିଅନ୍ତୁ । କେତେବେଳେ ସୁବିଧା ମିଳିପାରେ । ତା ପରେ ସେ ନାଁ, ଗାଁ, ଠିକଣା

କହିଗଲେ, ମୁଁ ପକେଟରୁ ନୋଟଖାତା କାଢ଼ି ଟିପି ନେଲି । ଟିପି ନେଲା-ପରେ ମୋତେ ପ୍ରଶ୍ନ ହେଲା—କିଏ ଲେଖିଲେ ? ପଢ଼ିଦେଲି—ଶ୍ୟାମସୁନ୍ଦର ନାୟକ, ଗାଁ – କରଡ଼ାପଲ୍ଲି, ପୋଷ୍ଟ—ବୋଇରାଣୀ, ଜିଲ୍ଲା—ଗଞ୍ଜାମ ।

ରେଳଯାତ୍ରାର ଆଉ ଗୋଟିଏ ଦିନ । ୧୯୫୨ ମସିହାର ଶୀତ ସମୟ । ସେହି ମଫସଲ ଷ୍ଟେସନର ମୁସାଫେରଖାନା ଭିତରେ ଟିଣ ଛାତ ତଳେ ଦଶ ପନ୍ଦରଟି ଲୋକ ଆପାଦମସ୍ତକ ଘୋଡ଼େଇହୋଇ ବସିଛନ୍ତି । ଘଣ୍ଟା ବାଜିଲା, ତୃତୀୟ ଘଣ୍ଟା ଶେଷ ହେଲା । ରାତି ପ୍ରାୟ ନ'ଟା । କଳି କଳି ଥଣ୍ଡା ପବନ ବହୁଛି । ସାରା ପ୍ଲାଟଫର୍ମକୁ ଆଲୋକିତ କରି ଗାଡ଼ିଟା ଯାତ୍ରୀ ପରି ଦ୍ୱାରଦର୍ପରେ ପଶିଆସିଲା । ଶୀତକୁ ଡରିଲେ ଆଉ ଲାଭ ନାହିଁ । ଏହା ବୁଝିକରି ସମସ୍ତେ ଉଠି ଠିଆହେଲେ । ଶୀତଦିନେ ରେଳଯାତ୍ରୀ ପକ୍ଷରେ ମଫସଲ ଷ୍ଟେସନଗୁଡ଼ିକରେ ଗୋଟାଏ ବିପଦ ହେଉଛି, ରେଳ ଡବାର ସବୁ ଦୁଆର ଝରକା ବନ୍ଦ, ଡାକିଲେ ଉତ୍ତର ମିଳେ – ଜାଗା ନାହିଁ । ଏଠାରେ ସେଇ ଅବସ୍ଥା ଘଟିଲା । ଗୋଟାଏ ଦୁଆରକୁ ଦଶ ପାଞ୍ଚ ଥର ବାଡ଼େଇ, ଦି' ପାଖର ଲୁହାଦଣ୍ଡାକୁ ହାତରେ ଧରି କବାଟକୁ ପାଞ୍ଚ ସାତ ଗୋଇଠା ମାଇଲା ପରେ ଦୁଆର ଫିଟିବାରେ ଆଉ ଅସୁବିଧା ହେଲାନାହିଁ । ତଥାପି ପ୍ରତିରୋଧ ହେଲା । ମୁଁ, ମୋ ପଛରେ ଆହୁରି ଗୁରି ଛ'ଜଣ ସମସ୍ତେ ଭିତରକୁ ଠେଲିହୋଇ ପଶିଲୁ । ମୋ ପଛଆଡ଼ୁ ଠେଲାଠେଲି ଓ ଆଗପଟୁ ଧକାଧକି, ଏହା ମୋ ଉପରେ ମାଡ଼ ବୋଲି କହିଲେ ଭୁଲ ହେବନି । ଯେ ମୋତେ ଭିତରୁ ବାଧାଦେଉଥିଲେ କିଛି ସମୟ ପରେ ତାଙ୍କର ମୋ ପ୍ରତି ଅହେତୁକୀ ଦୟା ହେଲା, ପଚାରିଲେ – କେତେ ବାଟ ଯିବେ ? କହିଲି—କଟକ ।

—କି କାମ କରନ୍ତି ?

—ତୁମର କଣ ଦରକାର ?

ଲୋକଟା ଟିକିଏ ନମ୍ର ସ୍ୱରରେ କହିଲେ—ଦରକାର, କିଛି କାମପତ୍ର ମିଳିପାରେ । ଏ ଉତ୍ତର ଶୁଣି ମୋର କହିବାର ଅଧିମିକାକୁ ଗୁଡ଼ି ତାଙ୍କ ମୁହଁକୁ ଚାହିଁ ରହିଲି । ଚିହ୍ନିଲା ପରି ମନେକଲି, କିନ୍ତୁ ଚିହ୍ନି ପାରିଲି ନାହିଁ । ମୋର ଚାହିଁବାର ଢଙ୍ଗ ଦେଖି ସେ ଟିକିଏ ବିସ୍ମିତ ହୋଇ ପଚାରିଲେ—କଣ କହୁଚ ବାବୁ ? କହିଲି ମୁଁ କେଉଁଠି ତୁମକୁ ଦେଖିଥିଲା ପରି ମନେକରୁଚି ?

— ମୋତେ ?

—ହଁ ତୁମକୁ ।

ସେତେବେଳକୁ ସେ ମୋ ହାତର ଚମଡ଼ା ବ୍ୟାଗକୁ ତନ୍ନ ତନ୍ନ କରି ଚାହୁଁଛନ୍ତି । ମୁଁ ପଚାରିଲି—ତୁମର କିଏ ଭାଇ ଅଛନ୍ତି ? ସେ ନାହିଁ କଲେ । ତା ପରେ ପଚାରିଲି—ତୁମେ ଆଗେ କଣ କରୁଥିଲ ? ଏବେ ଯାଉଚ କୁଆଡ଼େ ?

ସେ ଟିକିଏ ବିବ୍ରତ ହେଲାପରି ମୁହଁକୁ ପୋଛି କହିଲେ—ଯାଉଚି କଲିକତା, କୁଲି କାମକୁ । ମୋର ପ୍ରଥମ ପ୍ରଶ୍ନର ଉତ୍ତର ନ ଦେବାରୁ ମୁଁ ତାଙ୍କର ପରିହିତ ଛିଣ୍ଡା ମଇଳା ପୋଷାକକୁ ଚାହିଁ ରହିଲି ।

ସେ ମୋତେ ସନ୍ଦେହ କଲେ । ହୁଏ ତ ସେତେବେଳକୁ ମୋତେ ସେ ଚିହ୍ନି ସାରିଲେଣି କିମ୍ବା ମୁଁ ତାଙ୍କୁ ଜଣେ ପକେଟମାରୁ ବୋଲି ସନ୍ଦେହ କରୁଚି ବିଚାରି କଥାକୁ ବାଆଁରେଇବାକୁ ଚେଷ୍ଟା କଲେଣି । ପଚାରିଲି—ତୁମ ନାଁ ?

—ମୋ ନାଁ ? ଏହା କହି ସେ ଟିକିଏ ତୁନ ହୋଇ ରହିଲେ ।

—ହଁ, ତୁମ ନାଁ !

ଥଙ୍ଗ ଥଙ୍ଗ ହୋଇ କହିଲେ—ମୋ ନାଁ, ମୋ ନାଁ ହେଉଚି—ଖୀମା ନାଇକ ।

ଖୀମା ନାଇକ—ଖୀମା ନାଇକ – ଖୀମା ନାଇକ, ମୁଁ ଆଖିବୁଜି ଗୁଣୁଗୁଣୁ ହୋଇ ତା ପରେ ମନକୁ ମନ ପ୍ରଶ୍ନ କଲି—ଖୀମା ନାଇକ ନା ଖୀମସେନ ନାୟକ ?

ସେତିକବେଳେ ରଙ୍ଗମଞ୍ଚର ପରଦା ସମ୍ପୂର୍ଣ୍ଣ ଖୋଲିଗଲା । ସେ ମୋର ହାତ ଦୁଇଟାକୁ ତାଙ୍କ ବଳିଷ୍ଠ କର୍କଶ ମୁଠା ଭିତରେ ଧରିପକାଇ ପଚାରିଲେ ଆପଣ ଖୀମସେନ ନାୟକକୁ ଜାଣନ୍ତି ?

—ହଁ, ଥରେ ଏଇ ରେଲରେ ଦେଖାହୋଇଥିଲା । ଆଜକୁ କେତେ ବର୍ଷ ତଳେ ସେ ଖାକି ପୋଷାକ ପିନ୍ଧି ବୁଟ୍ ଜୋତା ଲଗେଇ ଏହିପରି ଏକ ରେଲ ଡବାରେ ଗୋଟିଏ ବେଞ୍ଚ ମାଡ଼ିବସି ଶୋଇଥିଲେ, ଆଉ, ମୁଁ ତାଙ୍କ ଜୋତା ତଳର ଲୁହା ଗୋବ ଗଣିଲାବେଳେ ଉଭୟଙ୍କର ପରିଚୟ ହୋଇଥିଲା ।

ସୂର୍ଯ୍ୟୋଦୟ ସଙ୍ଗେ ସଙ୍ଗେ କୁହୁଡ଼ି ଉଭେଇଗଲା ପରି ସନ୍ଦେହର ସବୁ କୁହୁଡ଼ି ତାଙ୍କ ମନରୁ ମୂହୂର୍ତ୍ତିକେ ବୋଧହୁଏ କୁଆଡ଼େ ଉଭେଇଗଲା ! ହାତକୁ ସେହିପରି ଧରିରଖି କହିଲେ—ହଁ ବାବୁ, ମୁଁ ମଧ୍ୟ ସେଇ ଖୀମସେନ ନାୟକଙ୍କୁ ଜାଣେ ।

ତୁମେ ତାଙ୍କୁ ଜାଣ ? ତୁମର ସେ କିଏ ହୁଅନ୍ତି ?

– ମୋର ? ମୋର କିଏ ହୁଅନ୍ତି ? ମୋର ସେ ମୁଁ । ମୁଁ ଥିଲି ଖୀମସେନ ନାୟକ ।

ମୋ ମୁହଁରୁ ହଠାତ୍ ବାହାରିପଡ଼ିଲା—ଖୀମସେନ ବାବୁ ! ମୋ ମୁହଁରୁ ଏକଥା ବାହାରୁ ନ ବାହାରୁ ସେ ବଡ଼ ନମ୍ର ଭାବରେ କହି-

ପକାଇଲେ — ଆଉ ସେ ଅପମାନ ହଅନ୍ତୁ ନା ବାବୁ ! ମୁଁ ଯେଉଁ ଭୀମାକୁ ସେଇ ଭୀମା, ମଝିରେ କେବଳ କେତେ ଦିନ 'ଭୀମସେନ ବାବୁ' ହୋଇଥିଲି ।

ଭୀମାରୁ କପରି ଭୀମସେନ ହେଲେ ତାଙ୍କଠାରୁ ଯାହା ଶୁଣିଲି ପ୍ରାୟ ତାଙ୍କର ଭାଷାରେ ଏଠାରେ ତାହା ବର୍ଣ୍ଣନା କରାଯାଉଛି —

ମୁଁ ଜାତିରେ ଦଣ୍ଡାସି । ସଂସାରରେ ଜ୍ଞାନ ହେଲାବେଳକୁ ବୁଢ଼ୀ ମା'ଟି କେବଳ ପାଖରେ ଥିଲା । ବୁଢ଼ୀମା ଯେତେବେଳେ ଆଖି ବୁଜିଲା ଭଙ୍ଗା କାନ୍ଥ କଣା ଗୃହକୁ ଧରି କରଡ଼ାପଲ୍ଲି ଗାଁର ଶେଷ ମୁଣ୍ଡରେ ମୋ ପାଇଁ କେବଳ ବଖରାଏ ଘର ଥିଲା । ଆପଣ ଜାଣିଥିବେ ସେ ଗାଁର ଦାସ ଘରକୁ । ଅଚଳାଚଳ ସମ୍ପତ୍ତି । ସବୁ ହାତଗୃଷ, ଦଶଟା ପଣ୍ଡା ହଳ, ପାଞ୍ଚଟା ବଳଦ ହଳ । ସଂସାରରେ ଏକୁଟିଆ ହେଲା ପରେ ତାଙ୍କର ଘରେ ଆଶ୍ରୟ ନେଲି । ବାପା ମୋର ଜଙ୍ଗଲ କାଟି ଏକରେ ଜମି ନିଜ ନାଁରେ କରି ଆଖି ବୁଜିଥିଲେ । ଦାସଙ୍କ ଘରେ ରହିବା ଭିତରେ ମୋର ମାସିକ ଦରମାରୁ ମୁଁ କେବଳ ସେଥିପାଇଁ ଖଜଣା ଦେଉଥିଲି । ଜମି ଉପରୁ ଯେଉଁ ଷର, କୋଳଥ ଆସୁଥିଲା ତାହା ଦାସଘର ଅନୁଗ୍ରହରୁ ହେଉଥିଲା ଓ ଦାସଘରକୁ ମଧ୍ୟ ଆସୁଥିଲା । ପ୍ରଥମେ ଗାଈ ଗୋରୁ ଜଗିଲି, ତା ପରେ ଲଙ୍ଗଳ କଣ୍ଟିରେ ହାତ ପକେଇଲି । ଭୀମା ବୋଲି ଡାକିଲେ ସେ ଗାଁରେ ଆଉ କିଏ ଶୁଣୁ ନ ଥିଲେ । ମୁଁ ଆମ ଗାଁର ଏକମାତ୍ର ଭୀମା, ଆଉ ଦାସଘରର ମଧ୍ୟ ଜଣେ ଭୀମା । ଏଇ ଭୀମାର ଦେହ ସେତେବେଳେ ଆଦ୍ରର କଳା ଚକ୍ଚକ ଦେଖାଯାଉଥିଲା । ଗାଁକୁ ଆସିଲେ କିଏ ଜଣେ ହାକିମ ନାଆଁ ଲେଖାଇବାକୁ ଯୁଦ୍ଧକୁ । ମୁଁ ସେଥିରେ ହେଲି ଆଗଭର । ବୟସ ସେତେବେଳକୁ ଏକୋଇଶି । ମୁଁ ଯେତେବେଳେ ମୋ ନାଆଁକୁ

ଖୀମା ନାଇକ ବୋଲି କହିଲି—ହାକିମ କହିଲେ—ବେଶ ବେଶ, ଖୀମା ନୁହେ, ଖୀମା ନୁହେ, ଭୀମସେନ ନାୟକ । ଆଜିଠାରୁ ତୁମ ନାଁ ଭୀମସେନ ନାୟକ ହେଲା ।

କରଡ଼ା ପଲ୍ଲୀର 'ଖୀମା ନାଇକ' 'ଭୀମସେନ ନାୟକ' ହୋଇ ସରକାରଙ୍କର ଯୁଦ୍ଧ ବିଭାଗରେ ଯୋଗଦେଲା । ଥରେ ଦି' ଥର ଦିନେ ଦିନେ ଛୁଟି ପାଇଁ ସେ ସମୟରେ ଗାଁକୁ ଆସିଥିବି । ମୋର ବୁଟ୍ ଜୋତା ଦେଖିବା ପାଇଁ କେହି ଚେଷ୍ଟା କରୁ ନ ଥିଲେ ମଧ୍ୟ ଚାଲିଗଲା ପରେ ଚଳେ ଗୋବ ଚିହ୍ନକୁ ଦେଖି ଲୋକେ ତାଟକା ହୋଇଯାଉଥିଲେ । ତିନ ବର୍ଷ ଭିତରେ ଗାଁକୁ ଦୁଇ ଥର ଆସିଥିବି । ତୃତୀୟ ଥର ଆସିଲା ବେଳକୁ ଯୁଦ୍ଧ ସରିଛି । ଆଉ ମୋତେ ଯିବାକୁ ପଡ଼ିଲା ନାହିଁ । ସେତେବେଳେ ଦାସଘର ବି ମୋତେ ସମ୍ମାନ ଦେଖାଉଥିଲେ । ଦିନକୁ ତିନି ପାକେଟ୍ ସିଗାରେଟ୍, ସାତକପ୍ ଚା, ବେଳେବେଳେ ପାଉଁରୁଟି ବି ଖିଆହେଉଥିଲା । ରୋଜଗାର କରିଥିବା ପଇସା ସରି ଆସିଲା ବେଳକୁ ସରକାର ଗୋଟାଏ ଅନୁଗ୍ରହ କଲେ,ଯୁଦ୍ଧ ଫେରନ୍ତାଙ୍କ ପାଇଁ ଚାଷ ଜମି ଖଞ୍ଜାଗଲା । ଆମରି ଗାଁ ପାଖରେ ପାଞ୍ଚ ଏକରର ଏକ ପଡ଼ିଆ ମୋତେ ମିଳିଲା ବୋଲି ଯେଉଁ ଦିନ ଖବର ଶୁଣାଗଲା, ଅନେକଙ୍କ ମନରେ ହିଂସା ହେଲା । ଦାସଘର ବି ମତେ ସୁଖରେ କଥା କହିଲେ ନାହିଁ ।

ତା ପରେ ମୁଁ ଚାଷୀ ହେବାକୁ ବସିଲି; କିନ୍ତୁ ହାତରେ ପଇସା କାହିଁ ? ପାଞ୍ଚ ଏକର ଜାଗା ପାଇଁ ହଳେ ବଳଦ ତ ଦରକାର । ତା ଛଡ଼ା ଜମି ଭଙ୍ଗେଇବାକୁ ହେବ, ବୁଦା ଲଟା ହାଣିବାକୁ ପଡ଼ିବ । ସବୁଆଡ଼ୁ ବିଚାରି ପୈତୃକ ଜମିତକ ବନ୍ଧା କରିଦେଲି । ସେହି ଟଙ୍କାରେ ଏ ଯୁଦ୍ଧ ଫେରନ୍ତା ଭୀମସେନ ନାୟକ ଜମି ଭଙ୍ଗେଇବାରେ ଲାଗିଲା । କିନ୍ତୁ ଭାଗ୍ୟ ଯାର ଭଙ୍ଗା, ଜମି ବି ତାର ଭଙ୍ଗା ପଡ଼ିଲା । ଖୋଳୁ ଖୋଳୁ ଦେଖାଗଲା, ତା ଭିତରେ କେବଳ ଗୋଟାଏ ଗୋଡ଼ିର ଖଣି ଅଛି । ତାକୁ ପୋଡ଼ି ଚୂନ କରିବା ଛଡ଼ା ତା ଉପରେ ଫସଲ ହେବାର ଆଉ

ଆଶା ନାହିଁ । ମୁଣ୍ଡରେ ହାତ ଦେଇ ବସିପଡ଼ିଲି । ବାପ ମା ନାହାନ୍ତି ଯେ ତାଙ୍କ ପାଖେ ଯାଇ କହିବି, ସେ ବା କଣ ବୁଦ୍ଧି ବତେଇଥାନ୍ତେ ? ମୋତେ ଯାହା ବୁଦ୍ଧି ଦିଶିଲା — ଧାଇଁଲି ସେହି ଦାସଘର ପାଖକୁ । ବୁଢ଼ା ଦାସେ ଚୈତନ୍ୟ ତିଳକ କାଟି, ଦେହରେ ଚୈତନ୍ୟ ଛାପ ମାରି ବସିଥିଲେ । କହିଲି — ସାଆନ୍ତେ ! "ଓଡ଼ ଲଗେଇଲେ କରମଙ୍ଗା ଫଳେ ।" ମୋର ଭାଗ୍ୟ ସେଆ ହୋଇଛି । ଆପଣ ମତେ ପିଲାଦିନୁ ପାଳିଛନ୍ତି । ଆପଣଙ୍କ ବୋଲ ନ ମାନି ମିଲିଟାରିରେ ପଶିଲି । ଫେରି ଯାହା ଫଳ ପାଇଲି ତାହା କେବଳ ଗୋଟାଏ ଗୋଡ଼ିର ଖଣି । ଗୃହ ଜମିତକ ତ ଆପଣଙ୍କୁ ଲେଖି ଦେଇ ସାରିଛି; ଯାହା ଟଙ୍କା ପାଇଛି ତାହା ଖଣି ଖୋଳିବାରେ ସାରି ଦେଇଛି, କଣ କରିବି କହନ୍ତୁ ?

ବୁଢ଼ା ଟିକିଏ ଆଖି ବୁଜି ରାଧେକୃଷ୍ଣ, ରାଧେକୃଷ୍ଣ ଉଚ୍ଚାରଣ କରି କହିଲେ — ଆରେ ଖ୍ରମସେନ ! ମୁଁ ତୋତେ କି ବୁଦ୍ଧି ବତେଇବି ? ସେହି ପରମକାରୁଣିକ ଶ୍ରୀକୃଷ୍ଣ ତୋତେ ଯାହା ବୁଦ୍ଧି ବତେଇବେ ତାହା କର ! ହାତଯୋଡ଼ି କହିଲି — ବାବୁ, ମୁଁ କୃଷ୍ଣ ଫୃଷ୍ଣ କିଛି ଜାଣେ ନାହିଁ, ଜାଣେ ଆପଣଙ୍କୁ । ଆପଣଙ୍କ ହାତ ମୁଠାକୁ ପ୍ରଥମେ ପଡ଼ିଛି ପେଟରେ, ଏବେ ଶେଷରେ ପଡ଼ୁ । ଜମିଟାକୁ ଆପଣ ରଖିପକାନ୍ତୁ । ମୁଁ ଯିବି କଲିକତା । ହେଇଟି ଭାଗ୍ୟ ଖୋଜିବି । ଆପଣଙ୍କର ତ ଇଟା ପଡ଼ୁଛି, ଚୂନ ଦରକାର ହେବ । ଆପଣଙ୍କ ପାଖେ ମୁଁ ଚୂନ ଖଣିଟା ଦେଇ-ଯାଉଛି ।

'ରାଧେକୃଷ୍ଣ ରାଧେକୃଷ୍ଣ' କହି ସେ ଟିକିଏ ମୁଣ୍ଡ ହଲେଇଲେ । ଭାବିଲି ହଁ କରି ଦେବେ; କିନ୍ତୁ ଯାହା ଉତ୍ତର ମିଳିଲା, ଗାଁ ଛାଡ଼ିବା ଛଡ଼ା ଆଉ ଉପାୟ ନ ଥିଲା । କହିଲେ — ଆରେ ଖ୍ରମସେନ, ଏ ବର୍ଷ ଇଟା ପଡ଼ିଲେ ଦି'ବର୍ଷ ପାଣି ଖାଇଲା ପରେ ତା ଆର ବର୍ଷ ଚୂନ ଦରକାର ହେବ । ଏତେ ଆଗରୁ ଚୂନ ପାଇଁ ବନ୍ଧଣା ଦେଇହେବ କି ? ଯଦି କହୁଛୁ ରେଜେଷ୍ଟ୍ରି କରି ଦେଇଥା । ବାଟ ଖର୍ଚ୍ଚ ନେଇ କଲିକତା

ଯା, ଆସିଲେ ବୁଝିବା । ତେଣୁ ଆପଣଙ୍କର ସେଇ 'ଭୀମସେନ' ପୁଣି ଭୀମା ହୋଇ କଲିକତା ଯାଉଛି କୁଲିଗିରି କରିବାକୁ ।

ଜୀବନ ରଙ୍ଗମଞ୍ଚରେ ବହୁ ନାଟକୀୟ ପରିବର୍ତ୍ତନ ମୁଁ ଦେଖିଛି । ସେଦିନ ଦେଖିଲି—ଭୀମାରୁ ଭୀମସେନ ଏବଂ ଭୀମସେନରୁ ପୁଣି ଭୀମାର ଦୃଶ୍ୟ ! ଜୀବନର କର୍ମବହୁଳ ପଥରେ ସେକଥା ମନେପଡ଼ିଲେ ନାଟକ ଲେଖିବାକୁ ଇଚ୍ଛା ହୁଏ ।

# ଚନ୍ଦ୍ରମଣି ବାବୁଙ୍କ ସଂସାର

ଚନ୍ଦ୍ରମଣି ବାବୁଙ୍କୁ ସମସ୍ତେ ଗୋଲଆଳୁ ବାବୁ ବୋଲି ଡାକନ୍ତି । ଡାକିବାର କାରଣ ହେଉଛି—ତାଙ୍କର ଅଙ୍ଗ ଗଠନକୁ ଦେଖିଲେ ଗୋଟିଏ ଗୋଲଆଳୁ ନୁହେଁ, କେତେଗୁଡ଼ିଏ ଗୋଲଆଳୁର ସମଷ୍ଟି ବୋଲି ମନେହୁଏ । ଓଡ଼ିଶାରେ କେତେ ମୋଟା ଲୋକ ନାହାନ୍ତି; କିନ୍ତୁ ମୋଟା ତାଲିକାରେ ସେ ବୋଧହୁଏ ପ୍ରଥମ ସ୍ଥାନ ଅଧିକାର କରିବେ । ତାଙ୍କର ମୁଣ୍ଡଟି ଗୋଲ, ପେଟଟି ବି ଗୋଲ, ତହିଁରେ ପୁଣି ସ୍ୱାସ୍ଥ୍ୟବାନ ହୋଇଥିବା ଯୋଗୁଁ ବାହୁ ଓ ସ୍କନ୍ଧର ମାଂସପେଶୀ ସବୁ ଗୋଲ ଗୋଲ । ଗୋଡ଼ ଦୁଇଟି ମଧ୍ୟ ନୈନିତାଲ ଆଳୁପରି ଈଷତ୍ ଗୋଲ ଓ ଲମ୍ବା; ତେଣୁ ତାଙ୍କ ବାପ ମାଆ ପିଲାଦିନେ ତାଙ୍କୁ ଯେ ନାମରେ ଡାକଥାନ୍ତୁ ନା କାହିଁକି, ତାଙ୍କର ଆକାର ପ୍ରକାର ଦେଖି ଲୋକେ ନାଁ ଦେଲେ ଗୋଲ-ଆଳୁ । କ୍ଲାସରେ ପଢ଼ିଲାବେଳେ ସାଙ୍ଗସାଥି ପିଲାମାନେ ଥରେ ତାଙ୍କୁ ଏହି ନାମରେ ଡାକନ୍ତେ ସେ ପ୍ରତିବାଦ କରି ସ୍କୁଲର ହେଡ୍ ପଣ୍ଡିତଙ୍କ ଆଗେ ଅଭିଯୋଗ କରିଥିଲେ । ସେ ଅଭିଯୋଗ ବିଚାର ବେଳେ ପଣ୍ଡିତେ ବି ହସ ସମ୍ଭାଳିପାରିଲେ ନାହିଁ । ଅନ୍ୟ ଗୁରୁମାନଙ୍କ ବ୍ୟବହାରକୁ ସେ ନାପସନ୍ଦ କଲେ ମଧ୍ୟ ସେମାନେ ଯେ ଠିକ୍ ନାମକରଣ କରିଛନ୍ତି ସେହି ଭାବ ସେ ଦେଖାଇଲେ । ସେହି ଦିନୁ ଗାଁ ଗଣ୍ଡା ସବୁଆଡ଼େ ଚନ୍ଦ୍ରମଣି ବାବୁଙ୍କ ନାମ ହେଲା ଗୋଲଆଳୁବାବୁ । ପରିଣତ ବୟସରେ ତାଙ୍କର ସେହି ନାମ ରହିଗଲା ।

ଅନ୍ୟ ଦିଗରୁ ଦେଖିଲେ ଗୋଲଆଳୁର ଗୁଣ ଚନ୍ଦ୍ରମଣି-ବାବୁଙ୍କଠାରେ ସମ୍ପୂର୍ଣ୍ଣ ବିଦ୍ୟମାନ । ଆମିଷ କର ବା ନିରାମିଷ କର, ଭରତା କର ବା ଝୋଳ କର, ମାଛ, ମାଂସ କିମ୍ବା ଯେ କୌଣସି ପରିବା ସଙ୍ଗରେ ମିଶାଅ, ଗୋଲଆଳୁ ସବୁଥିରେ ମିଶିବ । ଖାଲି ମିଶିବ ନାହିଁ, ସ୍ୱାଦୁ ମଧ୍ୟ ବଢ଼ାଇବ । ଆମ୍ଭମାନଙ୍କ ଚନ୍ଦ୍ରମଣିବାବୁ ଓରଫ ଗୋଲଆଳୁ ବାବୁ ଠିକ୍ ସେହିପରି । ସଭା ସମିତିକୁ ଡାକ, ଗ୍ରାମ ସଂଗଠନ କାମରେ ଡାକ କିମ୍ବା ବନ୍ଧୁ ମିଳନକୁ ଡାକ, ଚନ୍ଦ୍ରମଣିବାବୁଙ୍କର କୌଣସି ଥିରେ ଆପତ୍ତି ନାହିଁ । ଶିକ୍ଷା କମିଟି, ଦାରିଦ୍ର୍ୟ ନିବାରଣ କମିଟି, କପାଗୃହ କମିଟି, ବିଧବା ବିବାହ କମିଟି, କିମ୍ବା ମାଙ୍କଡ଼ ନିବାରଣ ସମିତି ଆଦି ଯାହା କିଛି ସମିତି ସେ ଅଞ୍ଚଳରେ ଗଢ଼ାଯାଏ ଚନ୍ଦ୍ରମଣିବାବୁଙ୍କର ସବୁଥିରେ ସହଯୋଗ । ବନ୍ୟା ପାଇଁ ଚନ୍ଦା ମାଗ, ଦେଶ ମିଶ୍ରଣ ପାଇଁ ଭିକ୍ଷା ମାଗ କିମ୍ବା ଷଣ୍ଢ ପାଳନ ପାଇଁ ସାହାଯ୍ୟ ମାଗ, ଚନ୍ଦ୍ରମଣିବାବୁ ସବୁଥିରେ ସହଯୋଗ କରିବାକୁ ଆଗଭର । ମୋଟା ମୋଟି ଦେଖିବାକୁ ଗଲେ ତାଙ୍କ ଆଖ ପାଖ ଅଞ୍ଚଳରେ ଏପରି ଅନୁଷ୍ଠାନ ନାହିଁ, ଯେଉଁଥିରେ କି ତାଙ୍କ ସହଯୋଗ ନାହିଁ । ରାତି କହ, ଦିନ କହ, ଶୀତ, ବର୍ଷା, ଖରା କାକର ସବୁବେଳେ ସବୁ ଋତୁରେ ତାଙ୍କର ସମସ୍ତଙ୍କ ପ୍ରତି ସମାନ ଭାବ । ଗଣତନ୍ତ୍ରୀ ନେତାଙ୍କୁ ସେ ଯେପରି ଆଦର କରନ୍ତି, କଂଗ୍ରେସୀ, କମ୍ୟୁନିଷ୍ଟ, ପ୍ରଜାସାମ୍ୟବାଦୀ, ଝାଡ଼ଖଣ୍ଡୀ କିମ୍ବା ସ୍ୱତନ୍ତ୍ରପନ୍ଥୀ ନେତାମାନଙ୍କୁ ସେହିପରି ଆଦର ସମ୍ମାନ ଦେଖାନ୍ତି । ମୋଟାମୋଟି କହିବାକୁ ଗଲେ ସେ ସମସ୍ତଙ୍କର, ସର୍ବ କାଳର ଓ ସର୍ବମତର ଜଣେ ନିଷ୍ଠାପର, ନିରଳସ ପୁରୁଷ ଅଟନ୍ତି । ଆଉ ଅଧିକ କହିବାକୁ ଗଲେ ସେ ହେଉଛନ୍ତି ଜଣେ ନେତା ।

ଚନ୍ଦ୍ରମଣି ବାବୁ ବାହାରକୁ ଯେତେ ନେତା ହେଲେ ମଧ୍ୟ ଘର ଭିତରେ ସେ ସବୁବେଳେ ଜଣେ କର୍ମୀ । ଘରର ନେତା ହେଉଛନ୍ତି ନିର୍ମଳା ଦେବୀ । ନିର୍ମଳା ଦେବୀଙ୍କ ପରିଚାଳନା ଓ ଶାସନାଧୀନରେ ଦୀର୍ଘ-କାଳ ବଢ଼ିଆସି ଶାନ୍ତ, ସୁବୋଧ, ସୁଶୀଳ, ସୁକୁମାର ସ୍ୱାମୀରୂପେ ଦୁଷ୍ଟାନାରୀ ମହଲରେ ସେ ଖୁବ୍ ଖ୍ୟାତି ଲାଭ କରିଛନ୍ତି । ନିର୍ମଳାଦେବୀଙ୍କର ଗର୍ବ ଯେ ସେ ଚନ୍ଦ୍ରମଣି ବାବୁଙ୍କ ପରି ଜଣେ ସ୍ୱାମୀ ପାଇଛନ୍ତି । ଆଉ

ଚନ୍ଦ୍ରମଣିବାବୁଙ୍କର ଗୌରବ ଯେ ସେ ନିର୍ମଳାଦେବୀଙ୍କ ପରି ଜଣେ ଗୃହିଣୀପଣା ପତ୍ନୀକୁ ପାଇଛନ୍ତି । ନିର୍ମଳାଙ୍କୁ ପାଖରେ ରଖି ତାଙ୍କୁ ଆଖି ଆଗରେ ରଖି ଲୁଣ ଠାରୁ ଅଳଙ୍କାର ପର୍ଯ୍ୟନ୍ତ, ଲୁଗାପଟା ଠାରୁ କୃତ୍ରିମ କେଶଗୁଚ୍ଛ ପର୍ଯ୍ୟନ୍ତ ସବୁ କଥା ସେ ବୁଝାଶୁଝା କରନ୍ତି ।

ଘର ଭିତରେ ଯେତେବେଳେ ଏଇ ଦୁଇ ଜଣ ପୁରୁଷ ସ୍ତ୍ରୀ, ଅର୍ଥାତ୍ ସ୍ୱାମୀ-ସ୍ତ୍ରୀ ଯିବା ଆସିବା କରନ୍ତି ତାଙ୍କୁ ଆଗରୁ ଜାଣିଥିବା ଲୋକେ ଦେଖିଲେ ଆଶ୍ଚର୍ଯ୍ୟ ହେବାର କିଛି କାରଣ ନାହିଁ; କିନ୍ତୁ ନ ଜାଣିଥିବା ଲୋକ ନିଜ ଆଖିକୁ ବିଶ୍ୱାସ କରିବା ବଡ଼ କଠିନ । ସେ ହୁଏତ ମନେକରିବ ଯେ ଗୋଟାଏ ପବନଦିଆ ଫୁଟବଲ୍ ଜୀବନ ପାଇ ଏ ଘରକୁ ସେଘର ଗଡ଼ୁଛି । ଶୁଣାଯାଏ ଚନ୍ଦ୍ରମଣି ବାବୁଙ୍କ ପଡ଼ିଶା ଘରର ପିଲାଏ କଥାଭାଷା ହୁଅନ୍ତି, ନିର୍ମଳାଦେବୀ ନ ନଇଁଲେ କିମ୍ବା ଚନ୍ଦ୍ରମଣିବାବୁ କୌଣସି ଉଚ୍ଚ ସ୍ଥାନରେ ଠିଆ ନ ହେଲେ ଭୁନ ଭୁନ ହୋଇ ଗୋପନ କଥା-ବାର୍ତ୍ତା ହୁଅନ୍ତି ନାହିଁ । ଏ କଥାର ପ୍ରମାଣ ପାଇଁ ବେଶି ଦୂରକୁ ଯିବାକୁ ହେବନାହିଁ । ଥରେ ଚନ୍ଦ୍ରମଣିବାବୁ ଗାଆଁର ବଢ଼ିଆ ବଢ଼େଇ ପାଖେ ଖଣ୍ଡିଏ ତିନିପଟିଆ ନିଶୁଣୀ ତିଆରିକରାଉଥିଲେ । ଗାଆଁର ଶିକ୍ଷକ ତାଙ୍କୁ ପଚାରିଲେ, "ଆଜ୍ଞା, ଏତେ ଛୋଟିଆ ନିଶୁଣୀଟିଏ କାହିଁକି କରୁଛନ୍ତି ?" ଚନ୍ଦ୍ରମଣିବାବୁ ଶିକ୍ଷକଙ୍କୁ ବସିବାକୁ କହି ତାଙ୍କ କାନ ପାଖେ କହିଲେ, "ଅଣ୍ଟା ଧରିଛି, ଅଣ୍ଟା ଧରିଛି ।" ଶିକ୍ଷକ କିଛି ବୁଝି-ପାରିଲେ ନାହିଁ । ପଚାରିଲେ—"ଅଣ୍ଟାଧରା ପାଇଁ ନିଶୁଣୀ କଣ ଦରକାର ?" ଚନ୍ଦ୍ରମଣିବାବୁ ଟିକିଏ ଗମ୍ଭୀର ହୋଇ ନିଜ ଅଣ୍ଟାକୁ ଚପିଲାପରି ହାତରେ ଚପିଧରି କହିଲେ—ସାରୁ ଖାଇବା ଫଳରେ ତାଙ୍କର, ଅର୍ଥାତ୍ ମୋ ସ୍ତ୍ରୀଙ୍କର ଗତ ଆଠ ଦିନ ହେଲା ଅଣ୍ଟା ଏପରି ଧରିଛି ଯେ, ସେ ଆଉ ସହଜରେ ନଇଁ ପାରୁ ନାହାନ୍ତି । ଏ ଖଣ୍ଡିକ ହେଲେ ସେ କାନ୍ଥ ପାଖେ ଠିଆହେବେ, ନିଶୁଣୀକୁ କାନ୍ଥପାଖେ ପକେଇ ମୁଁ ତାଙ୍କ ସଙ୍ଗେ କଥାବାର୍ତ୍ତା ହେବ ।" ଶିକ୍ଷକ ହାସ୍ୟ ସମ୍ଭାଳ ପାରିଲେ ନାହିଁ ।

ସେ ସମୟରେ ବୁଢ଼ାମାନେ କହନ୍ତି— ଚନ୍ଦ୍ରମଣି ଓ ନିର୍ମଳାଙ୍କ ଶୁଭ ପରିଣୟବେଳେ ନିର୍ମଳା ଏପରି ନ ଥିଲେ । ହଠାତ୍ ସୃଷ୍ଟି

ପ୍ରତିମୂର୍ତ୍ତିରେ କି ବ୍ୟତିକ୍ରମ ହେଲା କେଜାଣି, ଯୌବନ ପରଶରେ ତାଙ୍କର ଶରୀର ନ ବଢ଼ି ଦେହ ତନ୍ତ୍ରୀ ବଢ଼ିଗଲା । ଚନ୍ଦ୍ରମଣି ବାବୁଙ୍କର କିନ୍ତୁ ତାଙ୍କର ଠିକ୍ ଓଲଟା ଗତି ହେଲା । ଫଳରେ ଦେଖିବାକୁ ଲୋକେ, ସେଥିରୁ ଜଣେ ଗୋଟାଏ ପରିପୁଷ୍ଟ ଡାଙ୍କଲା ଉନ୍ନତଶିର ଗଛ ତ ଜଣେ ତା ପାଖରେ ଲେଉଟଣୀ କଦଳୀ ଗଛ । ତେଣୁ ଦୁଷ୍ଟ ପିଲାଏ ଚନ୍ଦ୍ରମଣିବାବୁଙ୍କୁ ଗୋଲଆଳୁ ଆଖ୍ୟା ଦେବା ସଙ୍ଗେ ସଙ୍ଗେ ନିର୍ମଳା-ଦେବୀଙ୍କୁ ଶ୍ରୀମତୀ ନିଶୁଣୀ ବୋଲି କହିବାକୁ ଘୁଞ୍ଚନ୍ତି ନାହିଁ ।

ଏ ସବୁ ଭିତରର କଥା ଯାହା ହେଉ ପଛକେ ବାହାରେ ଚନ୍ଦ୍ରମଣିବାବୁ ଜଣେ ନେତା । ସଭାସମିତିରେ ସଭାପତି ହେବାରେ ସେ ସାରା ଓଡ଼ିଶାରେ ସମସ୍ତଙ୍କୁ ହରାଇପାରନ୍ତି । ବକ୍ତୃତାର ଖରସ୍ରୋତରେ ଲୋକଙ୍କୁ ଭସାଇ ନେଇପାରନ୍ତି ଏବଂ ପରିଶେଷରେ ଅଳ୍ପକେ ଚାନ୍ଦା ଦେବାରେ ଓଡ଼ିଶାର ଚାନ୍ଦାଦାତାଙ୍କୁ ପରାଜିତ କରିପାରନ୍ତି ।

ସେଦିନ ଦିନ ପ୍ରାୟ ୪ଟାବେଳେ ଚନ୍ଦ୍ରମଣିବାବୁ ବାହାର ଘରେ ଆରାମ ଚୌକିରେ ବସି ଖବରକାଗଜ ପଢ଼ୁଥିଲେ । ସମୟଟା ଓଡ଼ିଶାର ଏକ ଦୁଃଖର ସମୟ । ୧୫ ଦିନ ପୂର୍ବରୁ ଦାରୁଣ ବନ୍ୟାରେ ସାରା ଓଡ଼ିଶାରେ ଆତଙ୍କ ଖେଳିଯାଇଥିଲା । ଖବରକାଗଜଗୁଡ଼ିକରେ ବନ୍ୟାର କରୁଣ କାହାଣୀ ଛଡ଼ା ଆଉ କିଛି ନ ଥିଲା । ଖାଲି ଅଭାବ, ଅସୁବିଧା, ଦୁଃଖ, ଦୁର୍ଦ୍ଦଶା ସମ୍ବାଦ । ଆତଙ୍କମୂଳକ ସତର୍କତା ଛଡ଼ା ଅନ୍ୟ କୌଣସି ସମ୍ବାଦ ପ୍ରକାଶ ପାଉ ନ ଥିଲା । ସେ ଖବର ପଢ଼ି କୋରାପୁଟର ଜଙ୍ଗଲ ଭିତରର ଲୋକ ମଧ୍ୟ ଶଙ୍କିତ ହୋଇପଡ଼ୁଥିଲେ । ସେତେବେଳେ ଚନ୍ଦ୍ରମଣିବାବୁଙ୍କ ମନ କଣ ନ ହେଉଥିବ ? ଯେ ଶହ ଶହ ସଭାସମିତିର କର୍ଣ୍ଣଧାର ହୋଇ ଦେଶକୁ ଆଗେଇବା ବ୍ରତରେ ଦୀକ୍ଷିତ, ତାଙ୍କ ପ୍ରାଣ କାନ୍ଦିବା ଅସମ୍ଭବ କଣ ? ଯେ ଅଳ୍ପ ବହୁତ ଚାନ୍ଦା ଦେଇ ଶହଶହ ଅନୁଷ୍ଠାନର ପୃଷ୍ଠପୋଷକ ଆଖ୍ୟା ପାଇଛନ୍ତି—ବନ୍ୟାପାଇଁ ଚାନ୍ଦା ସଂଗ୍ରହର ଆବଶ୍ୟକତା ସେ ବୁଝିବା ଅସଙ୍ଗତ କଣ ? ସେତେବେଳେ ସେ ଠିକ୍ ସେହି କଥାହିଁ ଭାବୁଥିଲେ—ଭାବିବାକୁ ସୁବିଧା ମଧ୍ୟ ପାଇଥିଲେ । କାରଣ

ଶ୍ରୀମନ୍ତୀ ନିର୍ମଳା ଦେବୀ ସେତେବେଳେ ଅନ୍ୟ କ କାମରେ ବାହାରିକୁ ଯାଇଥିଲେ ।

ଚନ୍ଦ୍ରମଣିବାବୁଙ୍କ ଭାବନା ଯୋଗୁ ହେଉ କିମ୍ବା ବନ୍ୟାଗ୍ରସ୍ତ ଲୋକଙ୍କ ସୌଭାଗ୍ୟ ଯୋଗୁ ହେଉ, ଠିକ୍ ସେହି ସମୟରେ ଶ୍ରୀମନ୍ତ ଦାସ ଚାନ୍ଦାଖାତା ଓ ଭିକ୍ଷାମୁଣି ଧରି ତାଙ୍କର ଘରେ ହାଜର ହେଲେ । ଶ୍ରୀମନ୍ତ ଦାସ କିଏ ?--ଯାହାଙ୍କୁ ଓଡ଼ିଶାରେ ଯେ ଜାଣିନାହିଁ ସେ ଓଡ଼ିଶାକୁ ବୁଝିନାହିଁ ବୋଲି ବୁଝିବାକୁ ହେବ । ଅବଳାଶ୍ରମଠାରୁ ଆରମ୍ଭକରି ଗୃହିଣୀମଙ୍ଗଳ ସମିତି ପର୍ଯ୍ୟନ୍ତ, ଶିଶୁସମିତିଠାରୁ ଆରମ୍ଭ କରି ନିରକ୍ଷର ନିର୍ଯ୍ୟାତନ ସମିତି ପର୍ଯ୍ୟନ୍ତ ଦେଶର ସକଳ ନାରୀ ଆନ୍ଦୋଳନ ସହିତ ତାଙ୍କର ଘନିଷ୍ଠ ସମ୍ପର୍କ । ସେ ଝୁଲି ଧରି ଚାନ୍ଦାପାଇଁ ବାହାରିଲେ ଦଶ, ପଚିଶ ଟଙ୍କା ନ ନେଲେ ଫେରନ୍ତି ନାହିଁ । ତାଙ୍କର ସରଳ ସୁକୋମଳ ଭାଷା ଭଙ୍ଗିମାରେ, ତାଙ୍କର ନିଶ୍ଚିତ ନିର୍ମଳ କଥା ବର୍ଣ୍ଣନାରେ ଟଙ୍କାଏ ଚାନ୍ଦା ଦେବାକୁ ଭାବିଥିବା ଦାତା ତିନି ଟଙ୍କା ଦେଇବସନ୍ତି । ଏକଥା ଚନ୍ଦ୍ରମଣିବାବୁ ଜାଣନ୍ତି, ସାଧାରଣରେ ସମସ୍ତେ ମଧ୍ୟ ଜାଣନ୍ତି ।

ଶ୍ରୀମନ୍ତ ଦାସ ଯେତେବେଳେ ଖଦଡ଼ମଣ୍ଡି ସହିତ ହାତ ଟେକି ନମସ୍କାର ଜଣାଇ ପାଖ ଚୌକିରେ ବସିବାକୁ ଆରମ୍ଭକଲେ, ଚନ୍ଦ୍ରମଣିବାବୁ ତିନି ଗଡ଼ା ଦେଇ ଆରାମ ଚୌକିରୁ ଉଠିବାକୁ ଚେଷ୍ଟାକରି କହିଲେ— ବସନ୍ତୁ, ବସନ୍ତୁ, ବସନ୍ତୁ । ଆଜି ବଡ଼ ଭାଗ୍ୟ । ଦେଶର ରାଜନୈତିକ, ସାମାଜିକ ସମସ୍ୟା ଭିତରେ ନାନା ଆଲୋଚନା ପଡ଼ିଲା ପରେ ଚାନ୍ଦା କଥା ଉଠିଲା । ଶ୍ରୀମନ୍ତ ଦାସ ତାଙ୍କ ସ୍ୱଭାବସୁଲଭ ହାତହଲା ଭଙ୍ଗୀରେ ଗୋଟିଏ ଉତ୍ତେଜନାପୂର୍ଣ୍ଣ ଗ୍ରେଟ ବକ୍ତୃତା ଦେଇ ଚାନ୍ଦାଖାତାର ପୃଷ୍ଠା ଲେଉଟାଇ କହିଲେ—"ଏ ଦାନ ମୋପାଇଁ ନୁହେଁ, ତୁମପାଇଁ ନୁହେଁ, ସମଗ୍ର ଜାତିର ଉପକାରରେ ଏହା ଲାଗିବ । ଯେଉଁଠାରେ ଅଭାବ, ଅଶାନ୍ତି, ଦୁର୍ଯୋଗ, ସେଠାରେ ଶାନ୍ତି ସ୍ଥାପନ ପାଇଁ ଏହା ପ୍ରୟୋଗ କରାଯିବ । ଗୃହହୀନ, ବନ୍ୟାକ୍ଲିଷ୍ଟ ହଜାର ହଜାର ଦରିଦ୍ରଙ୍କର ଦୁଃଖ କିଏ ଜାଣିନାହିଁ ? ଏଥିପାଇଁ କଣ ଆପଣ ସାମାନ୍ୟ ଅର୍ଥଦାନ କରିପାରିବେ ନାହିଁ ?"

ଚନ୍ଦ୍ରମଣିବାବୁ ଉତ୍ସାହରେ ମାତି ଉଠି କହିଲେ, "ନିଶ୍ଚୟ, ନିଶ୍ଚୟ, ଦେଶରେ ସମସ୍ତେ ଏଥିପାଇଁ ଲାଗିପଡ଼ିବା ଉଚିତ ।" ଏହା କହି ପକେଟରୁ ପାଞ୍ଚଟଙ୍କିଆ ନୋଟ ଖଣ୍ଡିକ କାଢ଼ି ଶ୍ରୀମତୀ ଦାସଙ୍କ ଆଡ଼କୁ ତାହା ଦେଖାଇ କହିଲେ – ମୁଁ ତ ବେଶି ଦେଇ ପାରିବି ନାହିଁ··· । ତାଙ୍କ କଥା ଶେଷ ନ ହେଉଣୁ କୁଆ ଝାମ୍ପି ଲପରି ଶ୍ରୀମତୀ ଦାସ ହାତ ବଢ଼ାଇ ଟାଣି ଆଣି ସେ ଖଣ୍ଡିକ ତାଙ୍କ ମୁଣାରେ ପକାଇ ରସିଦ କାଟି ସଙ୍ଗେ ସଙ୍ଗେ ଧନ୍ୟବାଦ ଓ ନମସ୍କାର ଜଣାଇ ଅନ୍ୟତ୍ର ଚାନ୍ଦା ଶିକାର ଉଦ୍ଦେଶ୍ୟରେ ଚାଲିଗଲେ । ଚନ୍ଦ୍ରମଣିବାବୁ ଗ୍ଳେଟ ଗ୍ଳେଟ ନଇନତାଳ ଆଲୁପରି ଆଖି ଯୋଡ଼ାକୁ ତାଙ୍କ ପଛରେ ସ୍ଥିର ରଖି ଚାହିଁ ରହିଲେ । ଭାବିଲେ— ଟଙ୍କାଟିଏ ଦେବି ବୋଲି ଭାବୁଥିବା ପାଞ୍ଚ ଟଙ୍କିଆ ନୋଟ ଖଣ୍ଡିକ ଦେଖାଉ ଦେଖାଉ ଝାମ୍ପି ନେଲା । ମୁଁ ଏବେ ନିର୍ମଳା ଦେବୀଙ୍କୁ କି ହିସାବ ଦେବି – ଏ ସ୍ୱପ୍ନ ନା ସତ୍ୟ ? ଏହା ଭାବୁଥିବା ଆଖି ବୁଜି ବସି ରହିଲେ !

ଅଳ୍ପ ସମୟ ପରେ ତାଙ୍କ ସ୍ୱପ୍ନ ଭାଙ୍ଗିଗଲା । ଶ୍ରୀମତୀ ନିର୍ମଳା ହଠାତ୍ ସେ ଘରେ ପ୍ରବେଶକରି ତାଙ୍କ ଆଡ଼କୁ ନଇଁ ଦନ୍ତପଙ୍କ୍ତିର ପନ୍ଦରପଣ ପରିଷ୍କାର ବାହାରକୁ ଦେଖାଇ ମୁଖମଣ୍ଡଳ ନିକଟରେ ମାଂସଳ ବାହୁ ଯୁଗଳକୁ ହଲାଇ ହଲାଇ କହିଲେ, ବୁଝିଲି ତମ ଗୁଣ । ପାଞ୍ଚ ଟଙ୍କା, ପାଞ୍ଚ ଟଙ୍କା । ପାଞ୍ଚ ଟଙ୍କା ଦେଇଦେଲ ସେଇଟାକୁ ? ଏଡ଼େ ଦାତା କେଉଁ ଦିନ ପାଲଟିଲ ମ ? ମୋର ପାଞ୍ଚଟା ଆଙ୍ଗୁଠିକ ଏ ପର୍ଯ୍ୟନ୍ତ ଖାଲିଟା ମୁଦି କରିଛ, ଏକୋଇଶି ଖଣ୍ଡ ଶାଢ଼ୀରୁ ବାଇଶି ଖଣ୍ଡ ହୋଇନାହିଁ । ତିନି ତିନିଟା ବାକ୍ସ ଖାଲିପଡ଼ିଛି । ତମେ କଣ କଲ ନା ପାଞ୍ଚ ଟଙ୍କା ତା ହାତକୁ ବଢ଼ାଇଦେଇ ତୁନିହୋଇ ଭାବୁଛ । ହୁଁ-ଉଁ-ଉଁ--ଭାବନା ଜାଣିଲି ଯେ । ଏଇକ୍ଷଣି ଯାଇ ଫେରାଇ ଆଣିବ ତ ଆଣ, ନ ହେଲେ······ ।

ଚନ୍ଦ୍ରମଣି ବାବୁ ବିବ୍ରତ ହୋଇପଡ଼ିଲେ । ଉତ୍ତର ଦେବାକୁ ତିନି ଥର ଚେଷ୍ଟାକରି ଶେଷକୁ ପାଟି ଖୋଲି ମାରିଲା ପରି କହିଲେ—ମୁଁ ଭାବିଥିଲି ଟଙ୍କାଏ; ମାତ୍ର ସେ ଟଙ୍କା ନେଇ······ ।

ଏକଥା ଶୁଣି ନିର୍ମଳାଙ୍କ ସ୍ୱର ସପ୍ତମରେ ଉଠିଲା । ଆଖିକୁ ତାଙ୍କ ଉପରକୁ ଏକାଥରେ ଉଠାଇ କହିଲେ—ଫେର୍ ପାଟି କରନା । ତମେ ଦେଇ ନଥିଲ, ସେ ନେଇଗଲା ? ଜାଣିଛୁ ଜାଣିଛୁ ତମ ଗୁଣଟି ! ଏବେ ଯାଇ ଆଣ ।

ଏହା କହି ହଠାତ୍ ଏକ ଘୂର୍ଣ୍ଣିବାତ୍ୟା ମାଡ଼ିଆସି ଗ୍ଲାଡ଼ିଗଲାପରି ସେ ଆଉ ଘରକୁ ଚାଲିଗଲେ; ମାତ୍ର ବାତ୍ୟାର ଛନକା ପଶିଗଲା ଚନ୍ଦ୍ରମଣି-ବାବୁଙ୍କ ଗୁଣ୍ଡ ଭିତରେ । ସେ ଆଉ କାଳବିଳମ୍ବ ନକରି ଆପଣାର ସୁଗୋଲ ସୁଠାମ ଆରକ୍ତ ଚନ୍ଦୁଟିକୁ ଏପାଖ ସେପାଖ ଦୋହଲାଇ ଦାଣ୍ଡକୁ ବାହାରିପଡ଼ିଲେ । ସେତେବେଳକୁ ଦୁଇଟା ଘର ଛାଡ଼ି ଶ୍ରୀମନ୍ତ ଦାସଙ୍କର ଗୃହା ଶୀକାର ଚାଲିଥିଲା । ସେହି ବାଟତକ ସେ ପାର ହୋଇ କପରି ଯେ ଶ୍ରୀମନ୍ତ ଦାସଙ୍କ ପାଖରେ ପହଞ୍ଚିଲେ ଜଣାନାହିଁ । ନାକରୁ ଘର୍ଘ ଶ୍ୱାସ ବାହାରୁଥିଲା । ମୁହଁ ରଙ୍ଗା ପଡ଼ିଯାଇଥିଲା । ସହଜରେ କଥା କହିପାରୁ ନଥିଲେ । ଏ ଅବସ୍ଥା ଦେଖି ଶ୍ରୀମନ୍ତ ଦାସଙ୍କ ମନରେ ଭୟ ହୋଇଗଲା । ସେ ହଠାତ୍ ତାଙ୍କୁ ବସିବାକୁ କହି ପଚାରିଲେ—କଣ ହେଲା କ ? ଏତେ ବ୍ୟସ୍ତ ଯେ !

ଆଁ କରି, ଦୁଇ ନାକପୁଡ଼ାକୁ ଫୁଲାଇ, ଦୁଇ ଚାରି ଥର ଘବନ ଗ୍ଲାଡ଼ି ଚନ୍ଦ୍ରମଣି ବାବୁ କହିଲେ—

ବଡ଼ ଅଶାନ୍ତ, ବଡ଼ ଅଶାନ୍ତ ! ଏ ସଂସାର ଅଶାନ୍ତିମୟ । ଆପଣ ଏତେବେଳେ ମୋତେ ସାହା ନ ହେଲେ ଶାନ୍ତି ଅସମ୍ଭବ ।

ଶ୍ରୀମନ୍ତ ଦାସ ସହାନୁଭୂତିପୂର୍ଣ୍ଣ ଗୁରୁ ହୃଦୟରେ କହିଲେ—କାରଣଟା କହନ୍ତୁ । ଏପରି କାମରେ ସାହାଯ୍ୟ କରିବା ତ ଆମର କାମ । ଏ ଝିଙ୍କି ତ ସେଇଥିପାଇଁ ଧରି ବୁଲୁଛୁ । ଘଟଣାଟା କଣ ?

—କହିବ

—କିଛି ଆଶଙ୍କା କରନ୍ତୁ ନାହିଁ । ମୋ ପାଖରେ ଲୁଗାଗୁଡ଼ା କଣ ? ସାହାଯ୍ୟ କରିବାର ଲେଶମାତ୍ର ଶକ୍ତି ଥିଲେ ପୂର୍ଣ୍ଣ ପ୍ରାଣରେ ଲାଗିଯିବି ।

ଚନ୍ଦ୍ରମଣି ବାବୁ ଟିକିଏ ଆଶ୍ୱସ୍ତ ହୋଇ ଥକା ମାଇଲା ପରି ବସି-ପଡ଼ି କହିଲେ—ଘରେ ମୋର ବଡ଼ ଅଶାନ୍ତି । ସେ ଅଶାନ୍ତିରୁ ଆପଣ ହିଁ ରକ୍ଷା କରିବେ; ମୋତେ ସେ ପାଞ୍ଚଟି ଟଙ୍କା ଫେରାଇଦେଲେ ଶାନ୍ତି-ପାଇବି ।

—ମାନେ ?

—ଆପଣ ଆହୁରି ବୁଝିପାରିଲେ ନାହିଁ ? ମୋ ଘରେ ବଡ଼ ଅସୁବିଧା । ଆପଣ ତ ଅଶାନ୍ତିକୁ ଦୂର କରିବାପାଇଁ ଗୃହୀ ରୂପ ଦୁରୂହ କାମରେ ହାତ ଦେଇଛନ୍ତି । ମୁଁ ଆସି ଆପଣଙ୍କ ପାଖେ ନିବେଦନ କରୁଚି, ଆପଣ ବଚାଇଲେ ମୋ ଘରର ଅଶାନ୍ତି ଦୂର ହେବ । ସେଥିପାଇଁ ମୋତେ ଟଙ୍କା ପାଞ୍ଚୋଟି ଫେରେଇଦେବାକୁ ହେବ । ଏହା କହି ଚନ୍ଦ୍ରମଣି ବାବୁ ଧୀରେ ଧୀରେ ଶ୍ରୀମନ୍ତ ଦାସଙ୍କ ମୁଣ୍ଡ ପାଖକୁ ହାତ ବଢ଼େଇଲେ । ଶ୍ରୀମନ୍ତ ଦାସ କିଛି କଥା କହିପାରିଲେ ନାହିଁ ।

କିଛି ସମୟ ପରେ ଚନ୍ଦ୍ରମଣି ବାବୁ ଘରକୁ ଫେରିଆସି ସେହି ଆରାମ ଚୌକିରେ ଆଉଜି ବସିଛନ୍ତି—ନିର୍ମଳା ଦେବୀ ହସି ହସି ଚଉକିର ଗୋଟାଏ ବାହା ଧରି ନଇଁପଡ଼ି କହିଲେ—ତୁମେ ଗାରେଡ଼ି ମନ୍ତ୍ର ଜାଣ ! ଦେଇଥିବା ଟଙ୍କାକୁ ପୁଣି ଯେ ଫେରାଇ ଆଣିପାରିଲ, ଏପରି କେତେ ଜଣ ସ୍ୱାମୀ ପାରିବେ ?

ଚନ୍ଦ୍ରମଣି ବାବୁ ଉତ୍ତର ଦେଲେ—କେତେ ଜଣ ସ୍ୱାମୀଙ୍କର ତୁମ-ପରି ନିର୍ମଳା ଦେବୀ ଅଛନ୍ତି କହ ତ ? ମୁଁ ପାରି ନାହିଁ ଯେ ତୁମେ ପାରିଛ !

# ଯବନିକା ପତନ

୧୯୪୩ ମସିହାର ଖରାଦିନେ ସରକାରୀ ଗାଡ଼ି ସବୁ ଯେତେବେଳେ ଓଡ଼ିଶାର ଆକାଶପବନ କମ୍ପାଇ ବୁଲୁଥିଲା 'ଓଡ଼ିଶା ବଳକା ପ୍ରଦେଶ' ବୋଲି ଘୋଷଣା କରି ସେହି ସମୟରେ ଦିନେ ସନ୍ଧ୍ୟାବେଳେ ପୁରୀଜିଲ୍ଲାର ଏକ ଅଖ୍ୟାତ ପଲ୍ଲୀ ଗାଁ ଭିତରେ ଜଣେ ବୃଦ୍ଧା ପାଟିକରି କହିବାର ଶୁଣାଗଲା—"ମୋର ବଳକା ଆୟୁଷ କିଏ ନେବ ନିଅ ।"

ବୁଢ଼ୀ ଯେ କେବଳ ସେହି ଗାଁ ଭିତରେ ଏଇ କଥା କହୁଥିଲା ତା ନୁହେଁ, କେତେବେଳେ କମିତ ଗାଁର ସୀମା ସରହଦ ଡେଇଁ ଅନ୍ୟ ଗାଁରେ ପଶି ସେକଥା କହୁଥିଲା ମଧ୍ୟ; ସେଠାରେ ତାର ମନ ମୁତାବକ ଉତ୍ତର ନ ପାଇଲେ, ତା'ର ବଳକବାକୁ ଥିବା ଜିନିଷକୁ ଗ୍ରାହକ ନ ଜୁଟିଲେ ସେ ଗୁହାରି କରିବାକୁ ଥାନା ଯାଏଁ ଚାଲିଆସୁଥିଲା ।

ଦିନେ ଥାନା ଦୁଆରେ ଖୁବ୍ ଲୋକ ସମାଗମ ହୋଇଛି । ପୁଲିସ୍ ସାହେବ ଆସିଛନ୍ତି ସେ ଅଞ୍ଚଳରେ ଖାଦ୍ୟ ପରିସ୍ଥିତି ବୁଝିବା ପାଇଁ । ବିଭିନ୍ନ ଗାଁର ବିଶିଷ୍ଟ ଭଦ୍ରଲୋକଙ୍କଠାରୁ ଆରମ୍ଭ କରି ଚଉକିଦାରୀ ପ୍ରେସିଡେଣ୍ଟଙ୍କ ପର୍ଯ୍ୟନ୍ତ ସମସ୍ତେ ସେଠି ଜମା ହୋଇଛନ୍ତି । ଏହିପରି ସମୟରେ ବୁଢ଼ୀର ପ୍ରବେଶ ସେହି ଦୁଆର ମୁହଁରେ । ସେହି ଏକାପରି ସ୍ୱର, ଏକା-ପରି ଚିତ୍କାର, ଏକାପରି ହାତହଲା—ଡାକ ଶୁଭିଲା—ବାବୁ, ମୋର ବଳକା ଆୟୁଷ କିଏ ନେବ ନିଅ । ଭଦ୍ରଲୋକ, ହାକିମ ହୁକୁମା ଥାନା ବାରଣ୍ଡାରେ ବସି ସେ ଅଞ୍ଚଳର ଖାଦ୍ୟ

ଉପସ୍ଥିତ କଥା ବଡ଼ର କହୁଛନ୍ତି, ଏହିପରି ସମୟରେ ସେହି ରଙ୍ଗମଞ୍ଚ ନିକଟରେ ବୁଢ଼ୀର ପ୍ରବେଶ ଗୁରୁତର ପରିବର୍ତ୍ତନ ଆଣିଲା । ପୁଲିସ୍ ସାହେବ ଚାହିଁଲେ ଦାରୋଗାଙ୍କୁ, ଦାରୋଗା ଚାହିଁଲେ ଚଉକିଦାରୀ ପ୍ରେସିଡେଣ୍ଟଙ୍କୁ । ଏକା ସ୍ୱରରେ ପ୍ରେସିଡେଣ୍ଟ ସଙ୍ଗେ ସଙ୍ଗେ ମନ୍ତବ୍ୟ ଦେଲେ—ବୁଢ଼ୀ ବାଘୁଣୀ ହୋଇଯାଇଛି । ମାତ୍ର ତାଙ୍କୁ ଜାଣିଥିବା ଭଦ୍ରଲୋକ କହିଲେ—ବୁଢ଼ୀ ପ୍ରକୃତରେ ବାଘୁଣୀ ହୋଇ-ନାହିଁ । ତା'ର ଯେ ଥିଲେ ତାଙ୍କୁ ଛାଡ଼ି ସେପାଖକୁ ଚାଲିଯାଇଥିଲେ । ଶେଷକୁ ତା'ର ଘନଆ ମଧ୍ୟ ଚାଲିଗଲା । ବୁଢ଼ୀ ଆଉ କଣ କହନ୍ତା ?

ଅନେକେ ବୁଢ଼ୀ ଦେଖିଥିବେ । ମାତ୍ର ପୁରୀ ଜିଲ୍ଲାର ଏକ ଅଖ୍ୟାତ ପଲ୍ଲୀର ଏହି ବୁଢ଼ୀର ବର୍ଣ୍ଣନା ଶୁଣିଲେ ସେମାନେ ଭୁଲ୍ ବୁଝିବେ ନାହିଁ ବୋଲି ଆଶା କରାଯାଏ । ବୁଢ଼ୀର ନାଁ କଣ ସେଇଠାରେ ଖାତାରେ ଟିପିବା ଦରକାର ପଡ଼ିଲା । ସାହେବ ପଚାରିଲେ ଦାରୋଗା ବାବୁଙ୍କୁ, ଦାରୋଗା ଚାହିଁଲେ ତାଙ୍କ ସହକାରୀଙ୍କୁ, ସହକାରୀ ମୁହଁ ବୁଲାଇଲେ ଦଫାଦାରଙ୍କ ଆଡ଼କୁ । ଦଫାଦାର ସିଧା ଉଠିଗଲେ ଚଉକିଦାର ଧାଡ଼ି ପାଖକୁ । ଠେଙ୍ଗା ସବୁ ଠକ୍ ଠକ୍ ଶୁଭିଲା, ମୁଣ୍ଡର ପଗଡ଼ି ସିଧା ହଣିଲା । ଦଫାଦାରଙ୍କ ଏକ ପ୍ରଶ୍ନରେ ଏକ ସମୟରେ ସବୁ ଚଉକିଦାର ଉତ୍ତର ଦେବାକୁ ଆରମ୍ଭ କଲେ । ଦଫାଦାର ବାବୁ କହିଲେ—ବୁଢ଼ୀ ଯେଉଁ ଗାଁର ସେଇ ଗାଁର ଚଉକିଦାର କହୁ । ତହିଁ ଏକ ସମୟରେ ସମସ୍ତେ କହିଲେ—ସେ ଆମ ଗାଁର ।

ଦଫାଦାର ନିରୁତ୍ତର । ସେ କେବଳ ଚାହିଁଲେ ଥାନାବାବୁଙ୍କ ମୁହଁକୁ । ଥାନାବାବୁ ବଡ଼ ବାବୁଙ୍କୁ, ବଡ଼ବାବୁ ବଡ଼ ହାକିମଙ୍କୁ ଚାହିଁ ରହିଲେ, ଯେପରି କି ସେମାନେ ଗୋଟାଏ ଗୋଲକଧନ୍ଦାରେ ପଡ଼ିଛନ୍ତି, ବଡ଼ ବାବୁ ଛୁଟାଇଦେବେ ।

ହାକିମ କିଛି ବୁଝିପାରିଲେ ନାହିଁ, ପଚାରିଲେ—ଜଣେ ଲୋକ କିପରି ସବୁ ଗାଁର ହୋଇପାରେ ?

ଉତ୍ତର ପାଇଁ ଠିକ୍ ସେହିପରି ଅପେକ୍ଷା କରାଗଲା । ଶେଷରେ ଚଉକିଦାରମାନଙ୍କ ମୁହଁରୁ ଯାହା ଉତ୍ତର ଶୁଣାଗଲା ସେଥିରୁ ଜଣାଗଲା ଯେ ବୁଢ଼ୀ ପ୍ରତିଦିନ ଭିକ ମାଗିବାକୁ ଯାଏ । ଯେଉଁ ଗାଁରେ ତାର ଘର ମାସକେ ଦିନେ ଦି'ଦିନେ ସେଇ ଗାଁରେ ସେ ରହି ବାକି ଦିନତକ ଅନ୍ୟ ଗାଁମାନଙ୍କରେ କଟାଇଥାଏ । ବୁଢ଼ୀର ବୟସରେ ହେଉ, ବ୍ୟବହାରରେ ହେଉ କିମ୍ବା ତାହାର ଚଗ ଚମାଳି ବୋଲିବାରେ ହେଉ ଯେଉଁ ଗାଁକୁ ସେ ଭିକ ମାଗିବାକୁ ଯାଏ ସେ ଗାଁ ଲୋକେ ତାକୁ ଦିନେ ଦି'ଦିନ ଆଶ୍ରୟ ନଦେଇ ଛାଡ଼ନ୍ତି ନାହିଁ । ତେଣୁ ତାକୁ କେଉଁ ଗାଁରେ କିଏ କେଉଁ ନାଆଁରେ ଡାକେ । ଶେଷରେ ଯେତେବେଳେ ତାର ପ୍ରକୃତ ନାଁ କଣ ଜଣାପଡ଼ିଲା ନାହିଁ—କିଏ କହିଲା—ଚମ୍ପୀ, କିଏ କହିଲା—ଚିଣ୍ଡି, କାହା ମୁହଁରୁ ଶୁଣାଗଲା ସୁନ୍ଦୁରୀ, କିଏ ବା କହିଲା ବେଙ୍ଗେଇ, କିଏ କହିଲା ମାଳୀ । ହାକିମ ଏ ସବୁଥିରୁ କିଛି ବୁଝି ନ ପାରି ଶେଷକୁ ଗୋଟିଏ ନାଁ ସ୍ଥିର କଲେ, ତା ନାଁଟି ବୁଢ଼ୀ । ବୁଢ଼ୀକୁ ସେଠାରେ ଆଦର୍ଶ କରି ସେ ରିପୋର୍ଟ ଲେଖିଲେ । ସେଠାରେ ଖାଦ୍ୟ ପରିସ୍ଥିତି ସେପରି କିଛି ଖରାପ ନୁହେ । ରିପୋର୍ଟ ଲେଖା ସରିବା ପରେ ବୁଢ଼ୀକୁ ଯେତେବେଳେ ଖୋଜାପଡ଼ିଲା ବୁଢ଼ୀ ଆଉ ସେଠାରେ ନାହିଁ । ଚଉକିଦାର ଦଉଡ଼ିଲେ, ଗୋଟି ଗାଁ ଭିତରେ ଗୋଟାଏ ଦି'ଟା ଗଳି କନ୍ଦିରେ ଖୋଜ ଖବର ନେଲେ । ବୁଢ଼ୀ ବୋଧହୁଏ ସେତେବେଳକୁ ତା'ର ବଳକା ବୟସ ବିକିବାକୁ ଅନ୍ୟ ଗାଁକୁ ଚାଲିଯାଇଥିଲା ।

ବୁଢ଼ୀର ବୟସ କେତେ ? ଶହେକ ଉପରକୁ କହିଲେ କହ, କିନ୍ତୁ ବୁଢ଼ୀ ଜାଣେ ନାହିଁ ତାକୁ କେତେ ବରଷ ! ଗାଁ ଲୋକଙ୍କୁ ପଚାରିଲେ କହିବେ—ଆମ ବାପା କହିପାରିବେ ତାର ବୟସ କେତେ ।

ସେଦିନ ପୁରାଞ୍ଚଳର ସେହି ମଫସଲ ଥାନାରେ ଖାଦ୍ୟ ପରିସ୍ଥିତିର ଆଲୋଚନା କରି ହାକିମ ଫେରିଗଲେ । ତାପରେ ସେ ଅଞ୍ଚଳରେ ବହୁତ କଥା ଘଟିଗଲା । ନ ଖାଇ କେତେ ଲୋକ ମରିଗଲେ, ଆଶ୍ରା ନ ପାଇ କେତେ କୁଆଡ଼େ ଚାଲିଗଲେ, ଚୋରା ବଜାର କରି କେତେ ଲୋକ ମଧ୍ୟ ବଞ୍ଚିଗଲେ; କିନ୍ତୁ ବୁଢ଼ୀର ଖୋଜଖବର ଆଉ କେହି ନେଲେ ନାହିଁ । ମନେକରାଗଲା ସେହି ନାଟକର ସେଇଠାରେ ଯବନିକା ପତନ ହୋଇଛି ।

ଏ ଘଟଣାର ଅଳ୍ପ କିଛି ଦିନ ପରେ ବୁଢ଼ୀର ଜୀବନ ନାଟକର ଯବନିକା ଉଠିଲା ପୁଣି ସେହି ଥାନା ଦୁଆରେ । ସେଦିନ ସାରା ମଫସଲ ଅଞ୍ଚଳର ଦଶ ପଚିଶି ଖଣ୍ଡ ଗାଁ ଧରି ଚହଳ ପଡ଼ିଗଲା—ଗୋଟାଏ ଭିକାରୁଣୀକୁ ଗୋଟାଏ ଭିକାରୀ ବିଷ ଦେଇ ମାରିଦେଇଛି । ଭିକାରୀ ଧରା-ହୋଇ ଆସିଛି, ଆଉ ଭିକାରୁଣୀର ଶବ ଥାନା ଦୁଆରେ ଥୁଆହୋଇଛି ।

ଭିକାରୀ କହିଲା—ମୁଁ ତାକୁ ମାରି ନାହିଁ । ମତେ ସେ ବଞ୍ଚାଉ-ବଞ୍ଚାଉ ନିଜେ ମରିଯାଇଛି । ସେ କିମିତି ମଲା ମୁଁ ଜାଣେନାହିଁ । ମତେ ଖାଇବାକୁ ଦେଉ ଦେଉ ଏତିକି ମାତ୍ର କହିଲା—ମରିଗଲି ରେ ଧନିଆ ! ଧନିଆ କିଏ ମୁଁ ଜାଣେନା । ବୁଢ଼ୀ ଦୁଆରକୁ ମୁଁ ବି ଯାଇ ନଥିଲି । ବୈଶାଖ ମାସ ଖରା ତାତିରେ ଉପରୁ ତ ନିଆଁ ବରଷୁଥିଲା, ତଳେ ମଧ୍ୟ ନିଆଁ ଜଳୁଥିଲା । ଏହି ଟିଣ ଥାଳଟି ଧରି ଦୁଆର ଦୁଆର ମାଗିଗଲି, ଡାକିଗଲି, ପାଟିଛୁଣ୍ଡ କଲି, କାହା ଦୁଆର ଫିଟିଲା, କାହାର ବା ଫିଟିଲା ନାହିଁ । ଯାହାର ବା ଫିଟିଲା ସେ କହିଲା—ପଛକୁ ଆ । ପଛକୁ ଆସିବି ଭାବି ଆଗକୁ ଆଗକୁ ଚାଲିଲି । ଯେତେବେଳେ ବୁଢ଼ୀର ଦୁଆର ନିକଟରେ ପହଞ୍ଚିଲି ଶୁଣିଲି ସେ ପାଟିକରୁଚି—କିଏ ନବରେ ପିଲେ ? ବୁଝିଲି ସେ ବୋଧହୁଏ ମୋତେ ଡାକୁଚି କଣ ଦେବା ପାଇଁ । ମୁଁ ତା ଦୁଆର ଡେଇଁ ଖଣ୍ଡେ ଦୂର ଚାଲି ଯାଇଥିଲି । ଫେରି ଆସି ଠିଆହେଲି । ବୁଢ଼ୀ ମୋତେ ଦେଖି କହିଲା— କଅଣ ନବୁ ? ମୋ ଆୟୁଷ ନବୁ ? ମୋର ଗୋଡ଼ ଭାଜିପଡ଼ୁଥିଲା, ତୋଣ୍ଟି ଶୁଖିଯାଉଥିଲା । କହିଲି ଯାହା ଦବୁ ଦେ । ମୁଁ ଜାଣେ ନା, ସେ ଘର ଭିତରେ ପଶି କଣ ଆଣିଲା । ମୋ ଥାଳରେ ପକାଇଦେଲା । ମୁଁ ଦି' ଚାରି ଥରରେ ତାକୁ ଢୋକଦେଇ ମୁହଁ ଟେକିଲା ବେଳକୁ ସେ ନଇଁକରି ପୁଣି କଣ ଆଣୁଚି । ସେତିକିବେଳେ ମତେ ଶୁଭିଲା—ମରିଗଲି ରେ ଧନିଆ !

ଥାନାର ଦାରୋଗା ବାବୁ ତାଙ୍କୁ ଆଖି ଖୋସିଦେଇ ବସି-ରହିଲେ । କିଛି ସମୟପରେ ଯାନବାବୁଙ୍କୁ ଚାହିଁ ପଚାରିଲେ—ଏ କଣ ସେହି ବୁଢ଼ୀ ? ଯାନବାବୁ କହିଲେ ଯେତେବେଳେ ସେଇ କଥା କହୁଚି ଏ ନିଶ୍ଚୟ ସେଇ ବୁଢ଼ୀ ହୋଇଥିବ ।

ଚାପରେ ଘମାଘୋଟ ତଦନ୍ତ ଚାଲିଲା । ବନ୍ଦମପୁର ଗାଁର ଶେଷ ମୁଣ୍ଡରେ ଥିବା ସେଇ କୁଡ଼ିଆଟିର ଆସବାବ ପତ୍ର ଖୋଜାଗଲା । ସନ୍ଦେହ କରାଗଲା ଶବ କେଉଁଠି ଥିବ ! ବୁଢ଼ୀର ବଳକା ବସ୍ତୁସବୁ କେହି ଯେତେବେଳେ କାଣି ନ ପାରିଲେ ଏ ବଳକା ପ୍ରଦେଶରେ ବୁଢ଼ୀ ବୋଧହୁଏ ଶବ କାଣି ତା ବସ୍ତୁମାନଙ୍କୁ ନଷ୍ଟ କରିଦେଇଛି । କିନ୍ତୁ ଦେଖାଗଲା, ଘର ବୋଇଲେ ଦି' ଖଣ୍ଡ କଅଁଶର ଖଣ୍ଡରେ ତାହା ତିଆରି । ଗତ କେତେ ବର୍ଷ ହେଲା ଛଣ ଛପର ହୋଇନାହିଁ । ଝଡ଼ ତୋଫାନରେ ଯେତେବେଳେ ତାଳ ନଡ଼ିଆ ଗଛରୁ ବରଡ଼ା ଖସେ ବୁଢ଼ୀ ତାକୁ ଗୋଟେଇ ଆଣି ଛଣ କାମରେ ଲଗାଇଥାଏ । ଯାହା ବଳକା ରହେ ସେଇ କୁଡ଼ିଆ ଭିତରେ ଖୁନ୍ଦିଲା ପରି ଭର୍ତ୍ତିକରିଦେଇଥାଏ । ରୋଷେଇ ତ ସେଇ ଘରେ ହୁଏ ନାହିଁ, ଏତିକି ହୁଏ ଗୋଟାଏ ଚୁଲି ଉପରେ କେଉଁ କାଳର ହାଣ୍ଡି ଟାଏ ଥୁଆହୋଇ ତା ଭିତରେ କିଛି ଖାଦ୍ୟ ଥାଏ । ଗାଁର ଯିଏ ଯାହା ଦିଏ—ଭାତ ହେଉ, କାଞ୍ଜି ହେଉ, ପେଜ ହେଉ, ସବୁ ନେଇ ତାରି ଭିତରେ ସେ ଭର୍ତ୍ତିକରେ । ବେଳେ ବେଳେ ତାହାର ଗନ୍ଧ ବାହାରକୁ ବି ଚାଲିଆସେ । ବୁଢ଼ୀ କିନ୍ତୁ ତାକୁ ବାହାରକୁ ଫିଙ୍ଗିଦିଏ ନାହିଁ । ଗାଁର ପାଠପଢ଼ୁଆ ପିଲାମାନେ ତାହା ଦେଖି କହନ୍ତି—ଆମ ଗାଁର ଏ ବୁଢ଼ୀ ଆର ଜନ୍ମରେ ବ୍ରହ୍ମଦେଶରେ ଜନ୍ମ ହୋଇଥିଲା । କାରଣ ଶୁଣାଅଛି, ସେମାନେ ଶ୍ରେଷ୍ଠ ଶ୍ରେଷ୍ଠ ଜୀବଜନ୍ତୁଙ୍କୁ ଆଗ୍ରହ କରିଥାନ୍ତି, ନାପି କରନ୍ତି । ଆମର ଏ ବୁଢ଼ୀ ପୋତକରି ଖାଉଚି ।

ଯେଉଁ ଦିନର ଘଟଣା କୁହାଯାଉଛି ସେଦିନ ପୋଲିସ ବୁଢ଼ୀର ଘର ଖାନତଲାସ କରି ରିପୋର୍ଟ ଦେଲେ—ଏ ଅଞ୍ଚଳର ଖାଦ୍ୟ ପରିସ୍ଥିତି ସୁଧୁରି ଆସୁଚି । ଅନାହାରରେ କେହି ମରିନାହାନ୍ତି । କେତେ ମାସ ତଳେ ଯେଉଁ ବୁଢ଼ୀ ତାର ବସ୍ତୁସ ବିକିବ ବୋଲି ବାୟାଣୀ ପରି ବୁଲୁଥିଲା ସାପ କାମୁଡ଼ାରେ ତାର ମୃତ୍ୟୁ ଘଟିଛି । ସେ ଗୋଟାଏ ଭିକାରୀକୁ ଖାଇବାକୁ ଦେଉଥିଲାବେଳେ ତାହାର ଚୁଲିତଳୁ ସାପ ବାହାରି ତାକୁ ମାରିଛି । ସେ ଘରୁ ମିଳିଥିବା କେତେ ଖଣ୍ଡି ଚିଠିରୁ ଜଣାପଡ଼ୁଛି ଯେ ଘନଆ ବୋଲି ତାର ଏକ ପୁଅ ଥିଲା । ସେ ରଙ୍ଗୁନ୍ ଯାଇଥିଲା । ରଙ୍ଗୁନରୁ ତା ମାଆ ପାଖକୁ ଚିଠି ଲେଖୁଥିଲା । ଚିଠିରେ ଉଲ୍ଲେଖରେ ଅଛି—ଭୁଞ୍ଜ ହେବା ପାଇବ । ଏଇଥିରୁ ଜଣାପଡ଼ୁଚି ତା ନାଁ ଭୁଞ୍ଜ ।

ଭୁଞ୍ଜ ଜୀବନର ଏଇଠାରେ ଯବନିକା ପତନ ହେଲା । ତାର ବଳକା ଆପ୍ଲୁତ କିନ୍ତୁ କେହି କାଣି ନେଇପାରିଲେ ନାହିଁ ।

# ଏକ ନଈ ଦୁଇ କୂଳ

ଗୋଟାଏ ନଈ, ତାର ଦୁଇ କୂଳରେ ଦୁଇଟି ଗାଁ । କିଏ ଆଗ କିଏ ପଛ ସେ କଥା କେହି କହିପାରିବେ ନାହିଁ । ଏ ଗାଁର ବରଗଛ ଆଗ ଉଠି ବାଟୋଇକ ଛାୟା ଦାନ କରିଥିଲା କି ସେ ଗାଁର ଓସ୍ତଗଛ ଆଗ ମୁଣ୍ଡ ଟେକି ଉଠିଥିଲା ତାର ଇତିହାସ କେହି ଲେଖି ରଖି ନାହାନ୍ତି । ଏକଥା କିନ୍ତୁ ସତ ଯେ ଦୁଇ ଗାଁର ମଝିରେ ନଈଟା ଆଗ ସୃଷ୍ଟି ହୋଇଥିଲା । ନଈର ଶୀତଳ ସ୍ୱଚ୍ଛଜଳ ଓ କୋମଳ ପଟୁମାଟି ନିଶ୍ଚୟ ଦୁଇ ଦଳ ମଣିଷଙ୍କୁ କୂଳକୁ ଟାଣିଆଣିଥିବ ।

ଏକ ପାଖରେ ମଦ୍ଧ ରାଜପୁର ଓ ଅନ୍ୟ ପାଖରେ ଘଣାଶାଳିଆ ଗାଁ —ଏ ମଝିରେ ଖଣ୍ଡପଡ଼ାର କୁଆଁରିଆ ନଈ କେତେ କାଳରୁ ଯେ ବହି-ଯାଉଛି ସେକଥା କିଏ କହିବ ? ଦେଖିଲେ ଜଣାଯାଏ ନଈର ବୟସ ଗାଁର ବୟସଠାରୁ ନିଶ୍ଚୟ ଖୁବ୍ ବେଶି । ଗାଁର ବୟସ୍କ ଲୋକେ ହୁଏ ତ କାଳ-ସମୁଦ୍ରର କ୍ଷୁଦ୍ରାଦପି କ୍ଷୁଦ୍ର ତରଙ୍ଗ—ଦିନ, ବର୍ଷ, ମାସର ମାପକାଠିରେ, ପିତୃ ପିତାମହ ପ୍ରପିତାମହଙ୍କ ଆଉ଼ୁ ଶୁଣିଥିବା କଥା ଉପକଥାରେ ମାପି ଗାଁର ବୟସ ବତେଇ କହନ୍ତି; କିନ୍ତୁ ନଈ କଥା ପଡ଼ିଲେ ସମସ୍ତେ ନୀରବ ରହନ୍ତି ।

ଦୁଇ ଗାଁ ମଝିରେ କୁଆଁରିଆ ନଈକି ଜନ୍ମ ହେଲାବେଳେ ନିଶ୍ଚୟ ଗୋଟିଏ ଝିଟିଆ ନାଳ ଥିବ । ନଈର ତାହା ପିଲା ବୟସ । ତେଣୁ ବୋଧହୁଏ ଜୀବନର ମାପକାଠିରେ ମାପି ନଈର ତା ନାଁ ଦେଇଥିଲା କୁମାରୀ

ବା କୁଆଁଣ୍ଟ । ସେହି କୁମାରୀ ବା କୁଆଁଣ୍ଟ ନଈ ଆଜି ଆଉ କୁଆଁଣ୍ଟ ହୋଇ ନାହିଁ । ସେ ଆଜି ପୂର୍ଣ୍ଣଯୌବନା । କେତେବେଳେ ତାର ଆର କୂଳରୁ ଏ କୂଳକୁ ବଣର ହରଣ, ଝଂଆଦ ଏକ ଖେପାକେ ଡେଇଁ ପାର-ହୋଇ ଯାଉଥିଲେ, ଏପାଖର ଗଛର ଡାଳ ସେପାଖର ଗଛର ଡାଳକୁ ପବନରେ ହଲ ହଲ ଛୁଉଁଥିଲା । ହୁଏ ତ ଏ ଗଛରେ ଲତା ଉଙ୍କ ବଢ଼େଇ ସେ ଗଛ ଦେହରେ ମାଡ଼ଯାଉଥିଲା । ଆଜି କିନ୍ତୁ ତାହା ଆଉ ନାହିଁ । ଆଜି ଏ କୂଳରେ ଠିଆହେଲେ ସେ କୂଳକୁ ଆଖି ପାଉନାହିଁ । ଏ କୂଳରୁ ଡାକଲେ ସେ ପାଖକୁ ଶୁଣାଯାଉନାହିଁ । ଏ ପାଖରୁ ସେ ପାଖକୁ ପାର ହେବାକୁ ହେଲେ ନାଆରେ ପାର ହେବାକୁ ପଡ଼ୁଚି ବର୍ଷାଦିନେ । ସେ କାଳର କୁଆଁଣ୍ଟ ଆଜି ଯୌବନ ଗର୍ବରେ କଳ କଳ ଛଳ ଛଳ ହୋଇ ବହି ଚାଲିଛି । ସେ ଉତ୍‌ଫୁଲ୍ଲ ହୋଇ ଉଠିଲାବେଳେ କୂଳ ମାନୁନାହିଁ, ସୀମା ମାନୁନାହିଁ, ମାନୁନାହିଁ ଗାଁଗଣ୍ଡା, କୂଳର ବନ୍ଧନ, ସୀମାର ବନ୍ଧନ । ସେ ବୋଧହୁଏ ତାର ତୀରବାସୀମାନଙ୍କୁ ଏହି ଶିକ୍ଷା ଦେଉଚି ଯେ ଆଗକୁ ଯିବାକୁ ହେବ, ନିଜର ଶକ୍ତି ବିସ୍ତାର କରିବାକୁ ହେବ, କାହାର ବାଧା-ବନ୍ଧନ ମାନିବାକୁ ହେବନାହିଁ, କିଏ ଯଦି ବାଧା ଦେବ ତାହାହେଲେ କୂଳ ଲଙ୍ଘିବାକୁ ହେବ । ଗୃହଆଡ଼େ ପରିପୂର୍ଣ୍ଣ କରିଦେବାକୁ ହେବ ।

କୁଆଁଣ୍ଟିଆ ନଈରୁ ଏ ଶିକ୍ଷା କିଏ କେବେ ଅତୀତରେ ଗ୍ରହଣ କରିଥିବ କହିହେବ ନାହିଁ; କିନ୍ତୁ ଏବେ ସେ ଅଞ୍ଚଳର ଲୋକେ ଜାଣିବାକୁ ତାର ତୀରବାସିନୀ ଯୁବତୀ ଶଶୀ ଗ୍ରହଣ କରିଛି । ତେଣୁ ଗୃହଆଡ଼େ ଚହଳ ପଡ଼ିଯାଇଛି—ଶଶୀ ଗାଁ ଛାଡ଼ିଲା, କୂଳ ଛାଡ଼ିଲା ।

ଶଶୀକୁ ଏ କୂଳରୁ ସେ କୂଳକୁ ନେଲା କିଏ ? ଏ କୂଳର ଘଣାଶାଳିଆ ଗାଁରେ ଶଶୀର ଜନ୍ମ । ଯେଉଁ ଘରେ ସେ ଜନ୍ମ ହୋଇଥିଲା ସେ ଘରର ସେତେବେଳେ କିଛି ବିଭବ ନଥିଲା । ବାପର ଥିଲା ଦୁଇ ଗୁଣ୍ଠ ମାଣ ଜମି । ପୋଷିବାକୁ ତିନୋଟି ଝିଅ ଓ ସ୍ତ୍ରୀ, ଅଜି ଶୁଝିବାକୁ ଥିଲା ହଜାରେ ଟଙ୍କାର ଖଣ୍ଡିଏ କରଜା ଦଲିଲ । ଏକ ସମୟରେ ସେ କରଜା ଶୁଝିଲା ଓ ଶଶୀକୁ ବିଭା ଦେଲା । ସେ କୂଳର ମର୍ଦ୍ଦରାଜପୁର ଗାଁର ଯାହା ଘରେ ଶଶୀ ବିଭା ହେଲା ସେଇ ଶୁଝିଲେ ଶଶୀ ବାପର କରଜା । ଅର୍ଥାତ୍, ଶଶୀର

ରୂପ ଗୁଣ ଦେଖି ହଜାରେଟି ଟଙ୍କା ଦେଇ ଶଶୀକୁ ଏକ ପ୍ରକାର କିଣି-ନେଲେ । ବିବାହ ବେଳକୁ ଶଶୀର ବୟସ ମୋଟେ ସାତ ବର୍ଷ । ବିବାହ କଣ ସେ ଜାଣେ ନାହିଁ । ଯାହା ସଙ୍ଗେ ତାର ହାତ ଛନ୍ଦିଦେଲେ ସେ ବି ଦଶ ବର୍ଷର ବାଳକ । ଘଣାଶାଳିଆ ଗାଁରେ ବିବାହ ସରିଲା ପରେ ଶଶୀର ବର ଅନୁକୂଳ ଆଉ ଏ କୂଳକୁ ଆସିନାହିଁ । ଶଶୀ ତ ଝିଅ, ସେ ଆଉ ସେ ପାଖକୁ ଯିବ କିମିତି ?

ଏ ଭିତରେ ୮।୧୦ ବର୍ଷ ବିତିଯାଇଛି । ଶଶୀ ପୂର୍ଣ୍ଣ ଯୁବତୀ । ବୟସ ଷୋଳ ପାର ହୋଇଛି । ସେ ଷୋଡ଼ଶୀ ପାଳିଟିଯାଇଛି ।

ଅନୁକୂଳ ପୂରା ଯୁବକ । ଚାରି ଭାଇ ଭିତରେ ସେ ସାନ । ତିନି ଭାଉଜ ଘରକୁ ଆସିସାରିଛନ୍ତି । କେବଳ ଶଶୀ ଯିବାକୁ ବାକି ଅଛି । ଏଇ ସମୟରେ ପଡ଼ିଲା ଜଗନ୍ନାଥଙ୍କର ନବକଳେବର । ମର୍ଦ୍ଦରାଜପୁରର ଗାଁ ସାରା ଲୋକ ବାହାରିଲେ ଦିଅଁ ଦର୍ଶନକୁ । ଅନୁକୂଳ ବି ସେମାନଙ୍କ ସଙ୍ଗରେ ଚାଲିଲା । ସେ କୂଳର ମର୍ଦ୍ଦରାଜପୁରର ଜନସ୍ରୋତ ପୁରୀ ଅଭି-ମୁଖେ ଚାଲିବାବେଳେ ଏ ପାଖେ ଘଣାଶାଳିଆ ଗାଁର ଲୋକେ ନିଶ୍ଚିନ୍ତ ନଥିଲେ । କଏ କି ଭାବରେ ଚୂଡ଼ା ଗୁଡ଼ଲ ବାନ୍ଧି ଜଗନ୍ନାଥ ଦର୍ଶନକୁ ଚାଲିଲେ । ଶଶୀ ଜାଣେନା, ସେ ଯାହାଙ୍କ ଘରକୁ ଆଉ ଦୁଇ ମାସ ପରେ ଯିବ, ଯାହାକୁ ସେ ବେଦୀ ଉପରେ ଥରେ ଦେଖି ପେରେ କଳ୍ପନା-ଚକ୍ଷୁରେ ଦେଖିଲେ ମଧ୍ୟ ଆଉ ବୁଝିପାରୁନାହିଁ, ସେହି ଅନୁକୂଳ ତାର ପ୍ରାଣର ଚନ୍ଦନ ପୁରୀ ଯାଇଛନ୍ତି ବୋଲି । ଜାଣିଥିଲେ ହୁଏ ତ ସେ ଲୋକଗହଳି ଭିତରେ ପୁରୀ ଯିବାକୁ ଇଚ୍ଛା କରି ନଥାନ୍ତା ।

ନବକଳେବର ସମୟରେ ଯାତ୍ରୀଙ୍କି ନେବାପାଇଁ ଏଜେଣ୍ଟ କମ୍ ନଥାନ୍ତି । ଗୁରି ପଇସା ରୋଜଗାର ପାଇଁ ସେବକ, ପଣ୍ଡା, ପଡ଼ିଆରୀ ତ ଲୋକ ନିଯୁକ୍ତକରିଥାନ୍ତି, ଗାଁମାନଙ୍କରେ ଏପରି ଲୋକ ଥାନ୍ତି ଯେଉଁମାନେ କି ଏହିପରି ଯାତ୍ରା ମଉଛାରେ ଅନେକ ଫାଇଦା ଉଠାନ୍ତି । ସେ ଅଞ୍ଚଳରେ ମାଲ୍ଲୀ ମା' ପଡ଼ିଆଣୀ ଏହି ଶ୍ରେଣୀର ଏକ ଏଜେଣ୍ଟ । ସେ ଶଶୀକୁ ଆସି

କହିଲା—ଝିଅ ଲୋ, ଦି'ମାସ ପରେ ତ ତୁ ତୋର ଦିଅଁଙ୍କୁ ଦେଖିବୁ, ଏବେ ଜଗତଯାକର ଦିଅଁ ଜଗନ୍ନାଥଙ୍କୁ ଦେଖି ଆସିବୁ ଟି । ସେଇ ତତେ ଆଶୀବାଦ କରିବେ ।

ମଲ୍ଲୀ ମା' ସାଙ୍ଗରେ ଖାଲି ଯେ ଶଶୀ ଗଲା ତା ନୁହେଁ, ଗାଁର ପାଞ୍ଚ ଦଶ ବୁଢ଼ୀ, ଦି' ଚାରି ଜଣ ଟୋକା, ବୁଢ଼ା ସମସ୍ତେ ଚାଲିଲେ । ମଲ୍ଲୀମା'କୁ ସେ ଅଞ୍ଚଳରେ ନ ଜାଣେ କିଏ ? ରଜାଘର ଦୁଆରେ ମାଲିମକଦ୍ଦମା ଲାଗିଲେ ଏଇ ମଲ୍ଲୀମା' ଅନେକଙ୍କର ଆଶ୍ରୟସ୍ଥଳ ହୁଏ । ସାକ୍ଷୀ ଯୋଗାଡ଼ କରେ ସିଏ, ଓକିଲ, ମୁକ୍ତିଆର ଜୁଟେଇଦିଏ ସିଏ । ସେଇ ତାର ବ୍ୟବସାୟ । ସେଇଥିରୁ ସେ ପାଞ୍ଚ ପଇସା ପାଏ । ସେଇଥିପାଇଁ ମଲ୍ଲୀମା'ର କୁଆଁଖିଆ ନଈର ଦୁଇ କୂଳରେ ଖୁବ୍ ନାଆଁ । ଏ ଗାଁର ସେ ପିଉସୀ ହେଲେ ସେ ଗାଁର ସେ ମାଉସୀ । ସେ ବୋହୂଙ୍କ ସାଙ୍ଗେ ବୋହୂ, ବୁଢ଼ୀଙ୍କ ସାଙ୍ଗେ ବୁଢ଼ୀ, ଆଉ, ସମସ୍ତଙ୍କ ପାଖେ ସବୁ ବିଷୟରେ ଜଣେ ଏଜେଣ୍ଟ ।

ଯେଉଁ ସମୟର ନବକଳେବର କଥା ଏଠାରେ କୁହାଯାଉଛି ଆଜିକାଲି ପରି ସେ ସମୟଟା ନଥିଲା । ପୁରୀ ବଡ଼ଦାଣ୍ଡ ବାଲିରେ ପୂର୍ଣ୍ଣଥିଲା । ସିଂହଦ୍ୱାରରୁ ରଥ ବାହାରି ଗୁଣ୍ଡିଚା ଘରେ ଲାଗିବାକୁ ସେତେବେଳେ ଲାଗୁଥିଲା ପ୍ରାୟ ସାତ ଦିନ । ଯିଏ ଆସୁଥିଲେ ଯାତ୍ରା ଦେଖି ଫେରିବେ ନାହିଁ, ଏହି ଆଶଙ୍କା ସବୁରି ପ୍ରାଣରେ ଥିଲା । ରଥଯାତ୍ରା ସହିତ ହଇଜା, ମଡ଼କ ସତେ ଯେପରି ସାଥିହୋଇ ଆସୁଥାଏ । ଖାଲି ଯେ ପୁରୀରେ ଏ ଦୁର୍ଘଟଣା ଘଟେ ତା ନୁହେଁ, ଦୂର ଦୂରାନ୍ତରୁ ଆସୁଥିବା ଯାତ୍ରୀ ଦେବଦର୍ଶନ ପରେ ପ୍ରାଣବିକଳରେ ଫେରିଯାଉଥିବା ବାଟଘାଟରେ, ଗାଁ ମଫସଲରେ ରୋଗର ବୀଜ ବୁଣିଦେଇ ଯାଉଥିଲେ । ସ୍ୱାସ୍ଥ୍ୟବିଭାଗର ତତ୍ପରତା ସହର ଭିତରେ ସୀମାବଦ୍ଧ ଥିଲା ।

ମହାକାଳ ମୃତ୍ୟୁର ଏହିପରି ଏକ ଅକାଳ ଉଦ୍‌ବୋଧନ ସମୟରେ ମଲ୍ଲୀମା' ପଣ୍ଡିଆଣୀ ସାଙ୍ଗରେ ନେଇଥିବା ଶଣୀ ଆଉ ତାର ଦଳକୁ ଧରି ଫେରିଆସୁଚି ଗାଁକୁ । ପୁଣି ଗୁଡ଼ିଏ କେତେ ବାଟ ସେମାନେ ଆସିଲେଣି ଆସିବା ଲୋକେ ଜାଣିପାରୁ ନାହାନ୍ତି; କିନ୍ତୁ ମଲ୍ଲୀ ମା' କହେ—ଆଉ ରହିଲା ତିନି ଓଳିର ବାଟ । ପଶ୍ଚିମ ଆକାଶରେ ସୂର୍ଯ୍ୟଦେବତା ଗଡ଼ଜାତର କେଉଁ ଅଜ୍ଞାତ ପାହାଡ଼ ପାଖେ ବୁଡ଼ିଯାଉଛନ୍ତି, ଆକାଶର ମେଘଖଣ୍ଡ ବିଚିତ୍ର ଶୋଭା ଧାରଣକରିଛି, କୁଆ, ବଣି, ପାରା ବସାଫେରନ୍ତା ହୋଇ କୋଳାହଳରେ ପୃଥିବୀ ଓ ଆକାଶକୁ ମୁଖରିତ କରୁଛନ୍ତି । ରାଜରାସ୍ତାରେ ଚାଲିଛନ୍ତି ମୂକ-ଯାତ୍ରୀଶ୍ରେଣୀ, ସତେ ଯେପରି ପିମ୍ପୁଡ଼ି ପଲ ! ମାତ୍ର କିଏ ଫେରୁ ନାହିଁ, ସମସ୍ତେ ଆଗକୁ ଯାଉଛନ୍ତି । ଠାଏ ଠାଏ ଗଛମୂଳେ ପାଣି ଚବକା ପାଖେ, ଗାଁ ନିକଟରେ ଥିବା ପୋଖରୀ କୂଳରେ ବାହୁଡ଼ା ଯାତ୍ରୀଙ୍କର ସମାଗମ ଖୁବ୍ ବେଶି । ବାଟ ଚାଲି ଚାଲି କ୍ଲାନ୍ତ, କିଏ କାହାକୁ ବାଟରେ ହଟୁରେଇଛି, କାହାର କିଏ ଅକାଳ ମୃତ୍ୟୁରେ ଢଳିପଡ଼ିଛି, ତେଣୁ କାହାର ମୁହଁରେ ହସ ନାହିଁ ।

ସେହି ଜନସ୍ରୋତ ଭିତରେ ମଲ୍ଲୀ ମା' ଚାଲିଛି ଆଗକୁ । ତାର ଏକ ପାଖରେ ଶଣୀ ଓ ତା ଗାଁର ଆଉ ଦୁଇ ଚାରୋଟି ଯୁବତୀ, ପଛରେ ବୁଢ଼ା ବୁଢ଼ୀ । କିଏ ପଛକୁ ବୁଲି ଚାହୁଁଛି କିଏ ଚାଲି ପାରୁନାହିଁ ବୋଲି । କିଏ ଡାକୁଛି—ଏଇ ପାଖେଇ ଗଲା ସେ ଗାଆଁ, ଅନ୍ଧାର ଆଗରୁ ନ ପହଞ୍ଚିଲେ ଜାଗା ମିଳିବ ନାହିଁ । କିଏ କହୁଚି—ହଇଲେ ମଲ୍ଲୀ ମା', ପାଣି ଟୋପେ ମିଳିବ ନାହିଁ ? ପିଲାଟା ଶୋଷରେ ଆଉଟୁ ପାଉଟୁ ହୋଇଗଲା । କିଏ କହୁଚି—ମଲ୍ଲୀ ମା, ଟିକିଏ ବସିପଡ଼ିବା । ଚାଲି ଚାଲି ଗୋଡ଼ରୁ ବାଲୁଳା ଉଠିଲାଣି । ମଲ୍ଲୀ ମା' ସମସ୍ତଙ୍କର ଏଜେଣ୍ଟ । ସଡ଼କ ପାଖର ଏକ ଆମ୍ବଗଛ ତଳେ ମଲ୍ଲୀ ମା' ଥକା ମାରି ଠିଆହେଲା । ସମସ୍ତେ ବସିପଡ଼ିଲେ ତାକୁ ଘେରିକରି । ସେଇ ପାଖରେ ଗୋଟାଏ ପାଣି ଚବକା ଥିଲା । ଟିକିଏ ହାଲିଆ ମାରିଲେ ପାଣି ପିଇବେ, ଯିବେ । ମଲ୍ଲୀ ମା'ର ବଡ଼ ବଡ଼ ଆଖି ହଠାତ୍ ସେହି ଚବକା ଉପରେ ପଡ଼ିଲା । ସେ ଟିକିଏ ଆଗକୁ ଚାଲିଲା । ପାଣି ଆଉ ଚାରି ହାତ ଦୂରରେ । ଲଇଁପଡ଼ି ଦେଖିଲା କଣ କେଜାଣି, ଚମକିଲା ପରି ଫେରିଆସି ଠିଆହୋଇଥିବା ଜାଗାରେ ଠିଆହେଲା । ତାର ଆଖି

କନ୍ଥ ଯେଆଡ଼୍ ଫେରଇ ନାହି । ତାର ଏ ଗୃହାର୍ଣ୍ଣ ଦେଖି ଙ୍ଶ କଣ ବବୁର ବସିବା ଜାଗାରୁ ଉଠିପଡ଼ଲା । ସିଏ ବ ସେଆଡ଼କୁ ଗୃହ୍ମାଁଲା । ତା ସହିତ ଆଉ ଦୁଇ ଗୃରେଟି ଝିଅ ଉଠିଲେ । ମଲ୍ଲୀ ମା କହିଲ—ଆହା ! ଚହ୍ନିଲୁ ଶଶୀ ?

ଶଶୀ କହିଲ—କଏ ଲେ ମଲ୍ଲୀ ମା' ? ଆମେ ଏଠୁ ପାଣି ପିଇବା ?

ମଲ୍ଲୀ ମା' କହିଲ—ପାଣି ପିଇବା କ ନାହିଁ ସେକଥା ଅଲଗା, ମାଟ ତୁ ଚହ୍ନିଲୁ କ ? ଶଶୀ ପାତ୍ରଣ୍ଡେ ଦ' ପାତ୍ରଣ୍ଡ ଆଗକୁ ଯାଇ ଉତ୍ଲେ-ପର ଫେରଆସିଲା । ପଗୃରଲା—ମଲ୍ଲୀ ମା', ଲେକଟା କଣ ବଞ୍ଚିତ ? ମଲ୍ଲୀ ମା' କହିଲ—ହଁ ଲେ ବଞ୍ଚିତ; ମାଟ ତୁ ଚହ୍ନିଲୁ ଠିକ ?

ସେତେବେଳକୁ ଶଶୀ କାଠ ପର ହୋଇଗଲ୍ଣି—ମଲ୍ଲୀ ମା' କାହିଁକ ତାକୁ ଏପର ଘନ ଘନ ପ୍ରଶ୍ନ କରୁଚ । ଅନ୍ୟ ଯାତ୍ରୀମାନେ ଉପ୍ତରେ ଠିଆହୋଇପଡ଼ଲେଣି । ଜଣେ ଦ'ଜଣ ସେ ଥାନ ଛାଡ଼ ଗୃଲିଯିବାକୁ ଆଗକୁ ପାଦ କାଢ଼ିଲେଣି । ମଲ୍ଲୀ ମା' କହିଲ—ଆଲେ ଶଶୀ, ଆଉ ଭାବଲେ କଣ ହେବ ? ଯାଇଥାନ୍ତୁ ଘରକୁ, ଜଗନ୍ନାଥେ କରେଇଦେଲେନ । ମୁଁ ପୋଡ଼ପାଡ଼ୀ ଜାଣେନ ଅନୁକୂଳ ପୁଅ ଆସିଚ ବୋଲ । ଜାଣିଥିଲେ କ ସେ ଏପର ପାଣି ଟୋପେ ପାଇଁ ଏଠି ପଡ଼ଥାନ୍ତା ? କଏ କୁଆଡ଼େ ଛାଡ଼ ଗୃଲଗଲେ । ସମସ୍ତେ ଏପର ଗୃଲିଯିବେ । ଆ ଆ, ଫେଚ ଆ । ଆଉ ଗୃହ୍ମାଁନା ଲେ ମାଆ ! ଥରେ ଗୃହିଁଥିଲୁ ବେଘାରେ, ଗୃହିଁଥାନ୍ତୁ ଘରକୁ ଯାଇଥିଲେ । ଆଉ ଗୃହିଁବା କନ୍ଥି ଲଭ ନାହିଁ । ଶୁଣିଥିଲି, ଭାଇ ଭଉଜ ଆସିଥିଲେ, ଶୁଣିଥିଲ ଗାଁ ଲେକେ ଆସିଥିଲେ । କେହି ତାର ସାହା ହେଲେ ନାହିଁ । ଜଗନ୍ନାଥେ ଯାହାର ସାହା ନୁହନ୍ତ ତାର ସାହା ହେବ କଏ ?

ଏହା କହ ମଲ୍ଲୀ ମା' ଯେତେବେଳେ ଶଶୀର ହାତ ଧର ଉଠ଼ଲ ଶଶୀ ଚାଲଲ ସତ; ତାର ପାଦ ଚଳଲା ନାହିଁ । ମଲ୍ଲୀ ମା' ଡାକିଲା—

ସେ ଶୁଣିଲା ନାହିଁ । ମଲ୍ଲୀ ମା' ସମସ୍ତିଙ୍କି ଚେତେଇଦେଲା, ହଇଜା ରୋଗୀ ପଡ଼ୁଛନ୍ତି, ସେ ସ୍ଥାନ ଛାଡ଼ି ଚାଲିଯିବାକୁ ହେବ । ଶଶୀ ତା କଥାକୁ କାନେଇଲା ନାହିଁ । ମଲ୍ଲୀ ମା' ଶଶୀକୁ ଦି' ଚାରି ଥର ଡାକ ପକେଇ ଆଗକୁ ପାଦ କାଢ଼ିଲା । ଦଶ ପଚାଶି ହାତ ଯାଏଁ ଆଗକୁ ଯାଇ ବୁଲି ଚାହିଁଲା । ଦୂରରୁ ଡାକିଲା । ଅନ୍ୟମାନେ ଆଗକୁ ଚାଲିଗଲେଣି, ଏକେଣ୍ଟ କେବଳ ପଛରେ । ଦେଖୁ ଦେଖୁ ସେ ବି ଦୂରରେ ମିଶିଗଲା ।

ମାଛୁ ଅନ୍ଧାର ବେଳକୁ ଶଶୀ କୋଳରେ ମୁଣ୍ଡ ରଖି ଅନୁକୂଳ ପଚାରିଲା—ମୋତେ ପାଣି ଦେଲା କିଏ ? ଓହୋ ! ଟିକିଏ ଭଲ ଲାଗିଲା । ତୁମେ କିଏ ? ଶଶୀ କହିଲା—ମୁଁ ? ମୋତେ ତୁମେ ଚିହ୍ନି ନାହିଁ ।

ତୁମ ଘର କେଉଁଠି ?

ଏ କୂଳରେ ।

ଘଣାଶାଳିଆ ?

ଅନୁକୂଳ ଟିକିଏ ଆଖି ବୁଜି ସତେ ଅବା କଣ ଭାବିଲା । ତା ପରେ ନିମୀଳିତ ନେତ୍ରରେ ଶଶୀ ମୁହଁକୁ ଚାହିଁ ଶିଥିଳ ହାତରେ ତାର ଡାହାଣ ହାତକୁ ଧରିପକାଇ କହିଲା—ଏଥର ବଞ୍ଚିଗଲି ! ତୁମେ ଆସିଥିଲ ବୋଲି ଶୁଣିଥିଲି ମାତ୍ର । ଆସିଥିଲେ ଆମ ଗାଁର ଅନେକେ । ସମସ୍ତେ ଚାଲିଗଲେ ଗାଁକୁ କିଏ କୁଆଡ଼େ । ତୁମେ ମୋତେ ଖୋଜିକରି ପାଇଛ, ଆଉ ସେମାନେ ?

ଶଶୀ ଆଖି ପୋଛୁ ପୋଛୁ କହିଲା—ସେମାନେ ମଧ୍ୟ ଆଗକୁ ଚାଲିଗଲେ ।

ପୁରାଣରେ ଶୁଣାଅଛି—ଶିବ ଦକ୍ଷଯଜ୍ଞରେ ନିଜ ସ୍ତ୍ରୀ ସତୀଙ୍କୁ କାନ୍ଧେଇ ଚାଲିଥିଲେ । ସେଦିନ ଦେଖାଗଲା, ସେହି ଆସନ୍ନ ଅନ୍ଧାର ଭିତରେ ସତୀ ଶିବଙ୍କୁ କାନ୍ଧେଇ ଆଗକୁ ଚାଲିଛନ୍ତି । କୁଆଡ଼େ ଯିବ ?

ଦଉଜା ରୋଗୀକୁ ନେଇ ଆଉ କୁଆଡ଼େ ଯାଅ । ଗାଁ ମୁରବି ମାନେ କହିଲେ —ଏ ଗାଁ ଭିତରେ ପଶିବାକୁ ଦେବ ନାହିଁ । ବାଟେ ଘାଟେ ଲୋକେ ଘଣ୍ଟା ହାତ ଦୂରକୁ ଘୁଞ୍ଚି ଚାଲିଗଲେ ।

ଦୂରରେ ବଣ ଗହନର ଭିତରେ ଦିଶୁଥିଲା ଏକ କ୍ଷୀଣ ଆଲୋକ ଶିଖା । ଶଶୀ ବୁଝିଗଲା—ଗାଁ ଭିତରେ କେତେ ଆଲୁଅ ଜଳୁଛି; କିନ୍ତୁ ଦେଖିଲା ସେ ଆଲୁଅ ତା ପାଇଁ ନୁହେ । ସେଇଁ କ୍ଷୀଣ ଆଲୁଅକୁ ସେ କାନ୍ଧରେ ଟେକି ଧରିଛି ଦୂରରେ ଜଳୁଥିବା ଏକାନ୍ତ ଆଲୋକ ବୋଧହୁଏ ତାକୁ ଡାକୁଛି । ସେ ଚାଲିଲା ସେଆଡ଼େ ଅଣ ବାଟରେ ବଣ ଭିତରେ । ଯାଇ ଠିଆ ହେଲା ନିଷ୍ପ୍ରଭ ଦୀପଶିଖା ପାଖେ । ବଖରାଏ ବୋଲି ଘର, ତା ଭିତରେ ଗୋଟିଏ ବିଧବା, ସେଇ ଦୀପଶିଖା ଆଲୋକରେ ବିଧବା ଦେଖିଲା— ସ୍ଖଳିତବସନା, ଆଲୁଳାୟିତକୁନ୍ତଳା ଏକ ଯୁବତୀ କାନ୍ଧରେ ଅର୍ଦ୍ଧମୃତ ଏକ ଯୁବକକୁ ଧରି ଦୁଆର ମୁହଁରେ ଠିଆହୋଇଛି । ସେ କାରଣ ବୁଝିବାକୁ ବାକି ରହିଲା ନାହିଁ । କିଛି ପ୍ରଶ୍ନ ନ କରି କହିଲା—ମାଆ ଲୋ ! ଏ ଗାଁ ବାଲା ମୋତେ ରଖେଇ ଦେବେନି । ଆହା······ ! ନିଷ୍ଟୁର ଏ ଚୋର······ ।

ଶଶୀ ସଙ୍ଗେ ସଙ୍ଗେ କାନ୍ଧରୁ ଅନୁକୂଳକୁ ଓହ୍ଲେଇ ପିଣ୍ଡା କାନ୍ଥକୁ ଆଉଜେଇ ନିଜର ବେକ ହାରଟି ଛିଣ୍ଡାଇ ବୁଢ଼ୀ ହାତକୁ ବଢ଼ାଇଦେଇ କହିଲା—ତୁ ମୋର ମାଆ ଲୋ ! କେଉଁ ଜନ୍ମରେ ମାଆ ଥିଲୁ ! ଏ ଆଲୁଅ ମୋତେ ଡାକିଛି ।

ଚାରିଦିନ ପରେ ଦେଖାଗଲା ଅନୁକୂଳ ସେ କୁଟୀର ପିଣ୍ଡାରେ ସିଧା ହୋଇ ବସୁଛି, ଆଉ, ଶଶୀ ସେ ଘରେ ଝିଅ ପାଲଟିଯାଇଛି । ପନ୍ଦର ଦିନ ପରେ ଶଶୀ ଆଉ ଅନୁକୂଳ ଯେତେବେଳେ ସେ ଘରୁ ବିଦାୟ ନେଇ ଗଲେ ବୁଢ଼ୀ ଆଖିରୁ ଦି'ଧାର ଲୁହ ଗଡ଼େଇ ଅନୁକୂଳ ଓ ଶଶୀର ହାତ ଦି'ଟାକୁ ଧରିପକାଇ କହିଲା—ଝିଅ ଜ୍ୱାଇଁ ଚାଲି ଯାଇଥିଲେ ଲୋ ଝିଅ ! ତୁମେ ମୋର ଫେରି ଆସିଛ । ଯାଉଛ ଯେ, ଆଉ ଦିନେ ଆସିବ ।

ଶଶୀ ଲୁହ ପୋଛୁଥିଲା, ଅନୁକୂଳ ବି ଲୁହ ପୋଛୁଥିଲା ।

ସେମାନେ ଚାଲିଲେ—ଆଗକୁ ଚାଲିଲେ; କିନ୍ତୁ ଯିବେ କୁଆଡ଼େ ?

ମର୍ଦ୍ଦରାଜପୁର ଗାଁଟା ଏକବାରେ ହଲଚଲ ହୋଇଗଲା । ଦଣ୍ଡାହକୃତ୍ୟ ସାରି ବାରଭୋଜ ସାରି ଘରଲୋକେ, ଗାଁ ଲୋକ ଅନୁକୂଳର ଶ୍ରାଦ୍ଧକୃତ୍ୟ ସାରିଦେଇଛନ୍ତି । ତେଣେ ଧର୍ମଶାଳାଆଡ଼ରେ ଏଜେଣ୍ଟ ମଲ୍ଲୀ ମା'ମୁହଁରୁ କଥା ଶୁଣି ଗାଁବାଲା ନିଷ୍ପତ୍ତି କରିସାରିଛନ୍ତି ଯେ ଶଶୀ ବି ଅନୁକୂଳ ସଙ୍ଗେ ଚାଲିଯାଇଛି । ଏପରି ଅବସ୍ଥାରେ ଅନୁକୂଳ ଯେତେବେଳେ ଯୁବତୀ ଶଶୀକୁ ସାଙ୍ଗରେ ଧରି ମର୍ଦ୍ଦରାଜପୁରରେ ପହଞ୍ଚିଲା ଗାଁର ବୁଢ଼ା ବୁଢ଼ୀ କହିଲେ—ପ୍ରେତକୁ ଆଉ ଗାଁରେ ପୂରେଇବାକୁ ହେବ ନାହିଁ । ଅନୁକୂଳର ମାଆ ନଥିଲା କି ବାପ ନଥିଲା । ବୋହୂକୁ ଘରକୁ ନେବାପାଇଁ ଶାଶୂ ଶ୍ୱଶୁର ନଥିଲେ । ରାତି ସମୟ । ଯେଉଁ ଘରେ ସେ ଦୁଆର କିଳି ରହିଲେ । ହରପାର୍ବତୀ ଶ୍ମଶାନ ଭୂଇଁରୁ ଉଠିଆସି ଗ୍ରାମାଞ୍ଚଳରେ ପ୍ରବେଶ କଲା ପରି ଅନୁକୂଳ ଶଶୀର ହାତକୁ ଧରି ଯେତେବେଳେ ଦୁଆର ମୁହଁରୁ ଫେରିଯିବାପାଇଁ ମୁହଁ ବୁଲେଇଲା, ଘର ଭିତରୁ ଶୁଭିଲା ଏକ ନାରୀ କଣ୍ଠର ବ୍ୟାକୁଳ ଆହ୍ୱାନ । ଜଣେ ପରିଣତ ବୟସ୍କା ଅତି ବ୍ୟାକୁଳ ଭାବରେ ସେମାନଙ୍କ ଆଗକୁ ଚାଲିଆସି ପଥ ଅବରୋଧ କଲାପରି ଠିଆହେଲା । କହିଲା—ମୋ ଦିଅରକୁ, ମୋ ଯାଆକୁ ମୁଁ ଘରୁ ଛାଡ଼ିଦେବି ନାହିଁ । ସେତିକିବେଳେ ଅନୁକୂଳ ଆଖିବୁଜି ଦେଖିଲା, ଶୈଶବରେ ମାତୃହୀନ ଅନୁକୂଳ ଯାହା କୋଳରେ ବଢ଼ିଥିଲା, ସେଇ ତାର ଭାଉଜ ମାତୃ ବେଶରେ ତାକୁ କୋଳକୁ ନେଇଯାଇଛି । ଶଶୀ ମୁଣ୍ଡ ପୋତି ଠିଆହେଲା । ଗାଁ ବାଲାଏ ଦୁଆର ଫିଟେଇ ଚାହିଁଲେ । ବୋହୂ ପୁଅ ଘରକୁ ଫେରି ଆସିଛନ୍ତି । ମିଛ ଝାପୁମର ବନ୍ଧନ ସେଠି ଛିଣ୍ଡିଗଲା !

ଏକ ନଈର ଦୁଇ କୂଳ । ଦୁଇ କୂଳର ଦୁଇଟି ଗାଁ । ଦୁଇ ଗାଁର ଦୁଇଟି କୂଳର ପୁଅ ବୋହୂ ଏହାପରେ ସଂସାର କଲେ ।

ସେହି ଦିନରୁ ଏବେଯାଏ ମଲ୍ଲୀ ମା' ଆଉ ସେ ଗାଁକୁ ଆସିନଛ ଘଣାଣାଳିଆ ଗାଁରେ ତାକୁ ଆଉ କିଏ ଦେଖିନ ।

# ଗୋଟିଏ ଗାଲ

ଦେହରେ ଗାଲ ଯେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରି ରହିଛି ଏ କଥା ସବୁବେଳେ ବୁଝିହୁଏ ନାହିଁ । କାନ ନ ଥିଲେ ଶୁଣିହୁଅନ୍ତା ନାହିଁ । ନାକ ନ ଥିଲେ ଗନ୍ଧ ବାରିହୁଅନ୍ତା ନାହିଁ, ଆଖି ନ ଥିଲେ କିଛି ଦେଖିହୁଅନ୍ତା ନାହିଁ—ଏକଥା ସହଜରେ ବୁଝିହୁଏ; କିନ୍ତୁ ଗାଲ ନଥିଲେ କି ଅସୁବିଧା ହୁଅନ୍ତା ପଚାରିଲେ ହଠାତ୍ ସମସ୍ତେ କହିପାରିବେ ନାହିଁ ।

ଗାଲ ନଥିଲେ ମୁହଁର କି ଅବସ୍ଥା ହୋଇଥାନ୍ତା ସେ କଥା ପ୍ରଥମେ ମାଆ ବୁଝେ, ପରେ ପ୍ରେମିକ ପ୍ରେମିକା ବୁଝନ୍ତି । ସନ୍ତାନବତ୍ସଳା ମାଆ ସନ୍ତାନର ଦନ୍ତୁରିତ ହସ ଦେଖି କୋଳରେ ଜାକିଧରି ତାକୁ ଯେତେବେଳେ ଚୁମା ଦେବାକୁ ଯାଏ ଗାଲ ନଥିଲେ କେଉଁଠି ଦିଅନ୍ତା ବିଚାରି ଦେଲେ ମନଟା ନିଶ୍ଚୟ ଦବିଯିବ । ହସର ସୌନ୍ଦର୍ଯ୍ୟଟା ଗାଲରେ ହିଁ ବାର ପଣ ଫୁଟିଉଠେ । ଶିଶୁର ରକ୍ତାଭ ଗୋଲ ଗାଲକୁ ଦେଖି କିଏ ଖୁସି ନ ହୁଏ ?

ବୟସ ହେଲା ଉତ୍ତାରୁ ଯେତେବେଳେ ଚଟଶାଳୀରେ ପାଠ ପଢ଼ିବାକୁ ହୁଏ ପଢ଼ା ଭଲ ନ କଲେ, ଦୁଷ୍ଟାମି କଲେ କିମ୍ବା ଅନ୍ୟମନସ୍କ ହେଲେ ଶିକ୍ଷକ ପିଲାର କାନ ମୋଡ଼ି ଚପୁଡ଼ା ମାରିବାକୁ ଗଲାବେଳେ ଗାଲ ନ ଥିଲେ ଯେ କି ଅସୁବିଧାରେ ପଡ଼ନ୍ତେ ସମସ୍ତେ ଅନୁମାନ କରିପାରିବେ । ଦୁଷ୍ଟାମି ବା ବଦମାସି କରିବା ସହିତ ଗାଲର ଯୋଗାଯୋଗ ଅବିଚ୍ଛିନ୍ନ । ନାନା ଜାତିଆ ଗାଳି ଭିତରେ ଗାଲୁଆ ଗୋଟାଏ ଗାଳି । ଗାଲେଇକରି ରହିବା

ଠକିବାର ଗୋଟାଏ ଅନ୍ୟ ନାମ । ପୁରୁଷ ଲୋକର ବଞ୍ଚତାର ସଙ୍କେତ ହେଉଛି ଲମ୍ବା ଦାଢ଼ି, ଯାହା କି ଗାଲ ନ ଥିଲେ ନ ଥାନ୍ତା ।

ପିଲାଦିନର ଗାଲ ଅପେକ୍ଷା ବଡ଼ ଦିନର ଗାଲର ମୂଲ୍ୟ ନିରୂପଣ କରିବା ସହଜ ନୁହେଁ । ବୟସ ହେଲେ, ଯୌବନ ପ୍ରବେଶ ଆରମ୍ଭରେ ଗାଲର ମୂଲ୍ୟ ଖୁବ୍ ବଢ଼ିଯାଏ । ପଦେ ପଦେ କଥାରେ, ପରିହାସରେ, ଆଉ ଚାହାଣିରେ କିମ୍ବା ଆଖି ଠାରରେ ଭିତରେ ଭିତରେ ରକ୍ତ କପଳ ଗାଲକୁ ଉଠି ତଳକୁ ଆସି ଯୁବକ ଯୁବତୀଙ୍କ ମୁଖମଣ୍ଡଳକୁ ରକ୍ତାଭ ବା ଗୋଲାପୀ ରଙ୍ଗରେ ରଞ୍ଜିତ କରିଦିଏ ସେଇମାନେ ହିଁ ବୁଝନ୍ତି ।

ଜୀବନର ଏହିପରି ଏକ ସନ୍ଧିକ୍ଷଣରେ ସିପ୍ରାର ଗାଲ କଣ ହୋଇଥିଲା ଆଜ ସେ ବର୍ତ୍ତିର ବସିଲା । ଡ୍ରେସିଂ ଟେବୁଲ ପାଖେ ଠିଆ- ହୋଇ ଅନେକ ସମୟ ମୁହଁକୁ ଚାହିଁରହିଲା । ଗାଲକୁ ଆଉଁସିଲା, ତାପରେ ପାଉଡ଼ର ମାଖିଲା । ପାଉଡ଼ର ମାଖିସାରି ଦର୍ପଣ ପାଖରୁ ଟିକିଏ ଦୂରେଇ ଠିଆହୋଇ ପୁଣି ମୁହଁକୁ ଚାହିଁଲା । ପୁଣି ଟେବୁଲ୍ ପାଖକୁ ଲାଗି- ଆସିଲା । ଆଉ ଥରେ ପାଉଡ଼ର ମାଖିଲା । ଏହିପରି ଭାବରେ ଯେତେ ଥର ଆଗକୁ ପଛକୁ ହେଲା ପାଖରେ ଥିଲେ କିଏ ନିଶ୍ଚୟ ମନେକରିଥାନ୍ତା ସିପ୍ରା କୌଣସି ଗୋଟାଏ ଜିନିଷକୁ ମୁହଁରେ ଲୁଚେଇ ରଖିବାକୁ ଚେଷ୍ଟା କରୁଛି କି ? ତାହା ହେଉଛି, ତାର ଡାହାଣ ପାଖ ଗାଲରେ ପ୍ରାୟ ତିନି ଇଞ୍ଚ ଲମ୍ବର ଏକ ବିରାଟ ଦାଗ, ଯାହା କି ଡାହାଣ ଆଖିର ତଳୁ ଚିବୁକ ପର୍ଯ୍ୟନ୍ତ ଖସିଆସିଛି । ଦୂରରୁ ଦେଖିଲେ ମନେହେବ, ଆଖିରୁ ଲୁହ ବୋହିଲେ ଲୁହର ସ୍ରୋତ ସେହି କ୍ଷୁଦ୍ର ନାଳ ଦେଇ ବହିଯିବା ଲାଗି ସତେ ଯେପରି ଆଗରୁ ସୃଷ୍ଟି ହୋଇଛି । ବାସ୍ତବିକ୍ ସିପ୍ରା ଯେତେବେଳେ କାନ୍ଦେ —ସେତେବେଳେ ପାଞ୍ଚ ଲୋକ ଆଗରେ କାନ୍ଦେ ନାହିଁ, ଘର ଭିତରେ ଏକୁଟିଆ କାନ୍ଦେ—ଦେଖେ ସେହି ଦାଗ ଉପର ଦେଇ ଲୁହ ବହିଯାଏ । ଯେତେବେଳେ ସେ ଲୁହ ପୋଛେ, ଭାବେ, ଗାଲର ସେ ଦାଗଟା ପୋଛି ହୋଇଯାନ୍ତା କି ? ଦାଗର ସ୍ମୃତି ତା ମନରୁ ଲିଭି- ଯାନ୍ତା କି ? ମନୁଷ୍ୟକୃତ କେତେ କେନାଲ ପୋତିହୋଇଯାଉଛି, ଗତ

ପରିବର୍ତ୍ତନ କରୁଚି, ଲୋପ ହୋଇଯାଉଚି ମଧ୍ୟ; କିନ୍ତୁ ସିପ୍ରା ଦେଖେ ତା ଗାଲର ସେହି ଦାଗ ଦଶ ବାର ବର୍ଷ ହେଲା ଠିକ୍ ସେହିପରି ଅଛି ।

ନିର୍ଜନ ପଲ୍ଲୀ ଗ୍ରାମର ସେହି କୋଠରୀଟି ଭିତରେ ଗ୍ରାମସେବକା ସିପ୍ରାର ସଂସାର । ଟେବୁଲ, ଚୌକି, ଖଟ, ଉତ୍କଳ ପ୍ରସଙ୍ଗ, ଝଙ୍କାର, ନଅାଁ ଖୁଣ୍ଟା, ଡଗର, ନବଜୀବନ ସବୁ ତାରି ଭିତରେ । ଓଡ଼ିଶାର ସମଗ୍ର ଚେଷ୍ଟିତିକୁ – ସତ୍ୟ, ମିଥ୍ୟା, ଛଳନା, ପ୍ରବଞ୍ଚନା, ବ୍ଲେକ୍ ବଜାର, ଠକାମି, ହରଣ; ଅପହରଣ ଆଦି ସକଳ ସମ୍ବାଦକୁ ନେଇ ସବୁ ଶ୍ରେଣୀର କାଗଜ-ପତ୍ର ତାହାରି ଭିତରେ ଆସନ ପାତି ରହିଛନ୍ତି; କିନ୍ତୁ ସିପ୍ରା ପ୍ରତିଦିନ ସକାଳେ ସେ ଭିତରୁ ବାହାରି ଦି' ତିନିଖଣ୍ଡ ଗାଁ ବୁଲି ଆସିବା ଭିତରେ ସେ ସବୁ କଥାକୁ କେବେ ବିଚାରକୁ ଆଣେ ନାହିଁ । ବିଚାରକୁ ଆଣେ ତାର ମାସିକ ଦରମା ଗଣ୍ଡାକ ପାଇଁ କିପରି ସୁରୁଖୁରରେ କାମ କରି ଚାଲିଯିବ । କାର୍ଯ୍ୟ କ୍ଷେତ୍ରରୁ ଫେରିଆସି ଘର ଭିତରେ ପଶିଗଲେ ସାରା ଓଡ଼ିଶାର ବିଭିନ୍ନ ରୂପ ଖବରକାଗଜଗୁଡ଼ିକ ଭିତରେ ଦେଖେ ।

ସେଦିନ ସିପ୍ରା ମନରେ ଗୋଟାଏ ବିରାଟ ଝଡ଼ ଉଠିଥିଲା । ଲକ୍ଷ-କୋଟି ବର୍ଷ ଧରି ନାରୀ ମନରେ ଯେ ଝଡ଼ ଉଠେ ସେହି ଝଡ଼ ସେ ଅନୁଭବ କରିଚି ତା ମନ ଭିତରେ । ମ୍ଲାଯୁଦ୍ଧ ମକା ବିଣ୍ଡା ଧରି ଗାଲରେ ଚାଉଡ଼ର ମାଖିଲାବେଳେ ଚମକିଲା ପରି ପଛକୁ ବୁଲି ଚାହେଁ ସତେ ଅବା ସେଦିନର ଚନ୍ଦ୍ରାମଣି ଆଜି ତାର ଘର ଭିତରକୁ ପଶି ଆସିଛନ୍ତି ! ଆଖି ବୁଜିହୁଏ । ଆଖି ଫିଟାଇଲେ ବେଦନା ଅନୁଭବ କରେ ।

ଗଜପତିପୁରର ଉନ୍ନୟନ ବ୍ଲକ୍‌ର ବି. ଡ଼ି. ଓ. ବାବୁ ଚନ୍ଦ୍ରାମଣି ସାମନ୍ତସିଂହାର ସେ ଦିନ ମଫସଲ ଗସ୍ତରୁ ଫେରିଲା ପରେ ଅଫିସର

କର୍ମଚ୍ଛଗ୍ରମାନେ ମନେକଲେ ତାଙ୍କର ଗୋଟାଏ କଛୁ ପରିବର୍ତ୍ତନ ଘଟିଛି । ଆସିବାର ଦେଢ଼ ମାସ ଭିତରେ ସେ ସେଠାରେ ଗୋଟାଏ କ୍ଲବ ଆରମ୍ଭ କରିଦେଇଥିଲେ । ଟେନିସ୍ ଖେଳ ପାଇଁ ପଡ଼ିଆ ତିଆରି ହୋଇଯାଇ-ଥିଲା । କ୍ଲବରେ କ୍ୟାରମ୍ ବୋର୍ଡ ପାଖେ ଚାରି ଜଣ ଖେଳୁଥିଲେ ତ ଆଉ ଚାରି ଛ' ଜଣ ଚାହିଁ ରହୁଥିଲେ । ଦେଢ଼ ମାସ ଭିତରେ ସାତଟା ଖାସି କଟା ଯାଇଥିଲା । ସେ ପରିଷ୍କାର ସ୍ୱଭାବ ପଣ ରଖିପାରିଥିଲେ ତାଙ୍କ ବ୍ଲକ ଅଞ୍ଚଳରେ କେଉଁ ଗାଁରେ କ କ ଭଲ ଜିନିଷ ମିଳେ । ସେ ଥିଲେ ବଡ଼ ଘରର ପିଲା । କଲେଜ ଛାଡ଼ିବା ପୂର୍ବରୁ ମୋଟର ସାଇକେଲରେ ବସି ବୁଲି ନ ଯାଉଥିଲେ ତାଙ୍କୁ ସୁଖ ଲାଗୁ ନ ଥିଲା । ସାଙ୍ଗରେ ସେ ସେଟାକୁ ବି ନେଇ ଆସିଥିଲେ; କିନ୍ତୁ ଗଜପତିଜପୁର ଅଞ୍ଚଳର ପନ୍ଦରପଣ କଚ୍ଚା ସଡ଼କ ଉପରେ ତାଙ୍କୁ ଅଧିକାଂଶ ସମୟ ସାଇକେଲରେ ବା ଜିପ୍‌ରେ ଯିବାକୁ ପଡ଼ୁଥିଲା । ଯେଉଁଠି କି ଜିପ୍ ବା ସାଇକେଲ ପାଇଁ ସୁବିଧା ନାହିଁ, ସେଠାକୁ ପାଦଗତି ଛଡ଼ା ଅନ୍ୟ ଗତି ନାହିଁ । ସେହିପରି ଏକ ମଫସଲ ଗାଁରୁ ଫେରିଆସି ଚିନ୍ତାମଣି ବାବୁ ଦୁଇ ଦିନ କାଳ ଅନ୍ୟମନସ୍କ ଭାବରେ କେବଳ ବସି ରହିବାରୁ କର୍ମଚ୍ଛରୀ, ସାଙ୍ଗସାଥି ଓ ସ୍ନେହପ୍ରୀତିର ଲୋକେ ଭାବିଲେ—ବଡ଼ଘରର ପିଲା, ଚାଲିବା ଅଭ୍ୟାସ ନ ଥିଲା, ପାଦଶ୍ରମରେ ବୋଧହୁଏ ଦେହ ସନ୍ତପୀଡ଼ା ହୋଇଯାଇଛି ।

କିନ୍ତୁ ପ୍ରକୃତରେ ତାହା ସେ ନୁହେଁ ଅଫିସିର ଚପରାସୀ ବୁଢ଼ା ପରୋକ୍ଷରେ ସେ ଦିନ କହୁ କହୁ କହି ପକାଇଲା ! ସମସ୍ତେ ଆଗ୍ରହରେ ଶୁଣିଲେ । ତାକୁ ପ୍ରଶ୍ନ ହେଲା—ସବୁ ତ ଅନୁମାନ କରିଛୁ ବୋଲି କହିଲୁ, ଆଚ୍ଛା କହିଲୁ ନାଁ ଟା କଣ ? ଚପରାସୀ ବୁଢ଼ା ଅଫିସିର ବଡ଼-ବାବୁଙ୍କ କାନ ଆଡ଼କୁ ମୁହଁ ନେଇ କହିଲା—ମୁଁ ଜାଣିନି, ବାବୁ ମୋତେ ପଚାରୁଥିଲେ ତା ନାଁ କଣ ସେପରି ? ବୁଝିପାରିଲି ନାହିଁ । ମୋତେ ଲାଜ ଲାଗିଲା କହିବାକୁ । ମୁଁ ମୁହଁ ଖୋଲି କହିଲି—ସେ ପରି ଗ୍ରାମସେବିକା ?

ସମସ୍ତେ ହସି ଉଠିଲେ । ବଡ଼ବାବୁ ହସି ହସି କହିଲେ—ଆରେ 'ସେପରି' ନୁହେ, ସିପ୍ରା, ସିପ୍ରା !

—ହଁ ବାବୁ, ଏଇମିତି ଗୋଟେ କଣ ତ କହିଲେ ।

— ଖାଲି କହିଲେ ନା, ଆଉ କିଛି ଅଛି ?

—ଆଉ ଅଛି କଣ ? ସେ ତ ସାଙ୍ଗେ ସାଙ୍ଗେ ଚାଲିଗଲା ଗାଁ ଭିତରକୁ । ବାବୁଙ୍କ ମନଟା ତ ସେଇଠୁ କମିତି ଫିକା ପଡିଗଲା ! ମୋତେ ତାପରେ କହିଲେ—ଆଉ ଏ ଗାଁକୁ ଆସିବାନି । ବହୁତ ବାଟ । ଘର ହାଲଆ ଲାଗୁଛି । ଏହା କହି ଜପ୍‌ରେ ବସିଲେ ସେ ଆଉ ବୁଲି ଚାହିଁ ନାହାନ୍ତି । ଅଇଲବେଳେ କେତେ କଥା ପଚାରନ୍ତି, କାହାର କେତେ ପରେଚୟ ନଅନ୍ତି । ଏଥର ମୁହଁଟା ସିମିତି ଶୁଖେଇକରି ଆସିଲେ ଯେ ତିନି ଦିନ ହେ ଲଠିକ୍ ସେହିପରି ରହିଛ । ଖିଆପିଆରେ ମନ ନାହିଁ, ଲୋକ ଯିବା ଆସିବାରେ ଲଯ୍ୟ ନାହିଁ । ଅଫିସି କାମରେ ତ ଯାହା ହେଉଚ ଦେଖୁଚ ।

ବଡ଼ବାବୁ ପଚାରିଲେ —ଆଚ୍ଛା ତତେ ଭଲା କଣ ପଚାରୁଛନ୍ତି ?

—ହଁ, କାଲି ପଚାରୁଥିଲେ ।

—କଣ ସେଇ କଥା ?

—ନାଇଁ ବାବୁ, ପଚାରିଲେ ମୋ ମୁହଁର ଏ ବସନ୍ତ ଚିହ୍ନ ଦେଖି ।

— ବସନ୍ତ ଚିହ୍ନ ?

ହଁ, ବସନ୍ତ ଚିହ୍ନକୁ ଦେଖି କହିଲେ—ତୋର ଏ ଚିହ୍ନ କେତେ ବର୍ଷ ତଳର ? ମୁଁ କହିଲି—ପିଲା ଦିନର । ପୁଣି ପଚାରିଲେ—ମୁହଁରେ ଚିହ୍ନ ହେଲେ କଣ ଲାଜେ ନାହିଁ ? ଏତିକି କହି ତୁନି ହୋଇ ଘରକୁ ଚାଲିଗଲେ ।

ଅତୀତର ଅନେକ ଘଟଣାର ଚିତ୍ର ବେଳେ ବେଳେ ସ୍ୱପ୍ନରେ ଦେଖାଯାଏ । ଚିନ୍ତାମଣି ବାବୁ ସେଦିନ ଘର ଭିତରେ ପଶିପାଇ ଖଟିଆରେ ଶୋଇ ପଡ଼ିଗଲେ । ନିଦରେ ଶୋଇପଡ଼ିବା ତାଙ୍କର ଉଦ୍ଦେଶ୍ୟ ନଥିଲା; ତଥାପି ଆଖି ବୁଜିହୋଇଗଲା । ତାହାରି ଭିତରେ ସେ ଦେଖିଲେ ଗୋଟାଏ ପଲ୍ଲୀ ଗ୍ରାମର ଚିତ୍ର । ଓଡ଼ିଶାର କୌଣସି ନଈକୂଳର ଏକ ମଫସଲ ଗାଁ ଭିତରେ ଦୁଇଟି ପିଲା ଅନେକ ଦିନଯାଏଁ ସାଙ୍ଗସାଥି ହୋଇ ଖେଳିଲେ, ଖେଳରେ ବାଲିଘର କଲେ, ହାତରେ ଗୁଙ୍ଗୁଡ଼ି ଧରି ସକାଳେ ଫୁଲ ତୋଳିଲେ, ସନ୍ଧ୍ୟାରେ ପିଣ୍ଡାରେ ବସି ମଧୁର କଣ୍ଠରେ ଗୀତ ଗାଇଲେ । ଏ ଘର ପିଲା ସେ ଘରେ, ଆଉ ସେ ଘର ପିଲା ଏ ଘରେ ଅତି ଆପଣାର ପରି ଚଳିଲେ । ତାହାରି ଭିତରେ କେତେ କଳି, କେତେ ରୁଷାରୁଷି, କେତେ ଲୁହ ପୋଛାପୋଛି, ଆଉ କେତେ ହସ କାନ୍ଦ ! କୋଳି ତୋଳିଲା ବେଳେ, ଗଛରେ ଚଢ଼ିଲା ବେଳେ, ନଈକୂଳରେ ଗାଧୋଇଲା ବେଳେ, କିଏ କାହାକୁ ଠେଲି ଦେଇଛି, କିଏ କାହାକୁ ପହଁରି ଶିଖେଇଛି, କିଏ କାହାକୁ ମାଡ଼ ମାରିଛି ମଧ୍ୟ । ଦିନକର ଘଟଣା, କଣ୍ଟା ବଣରେ ପଶି କୋଳି ତୋଳୁଥିବା ବେଳେ ଜଣେ ଡାଳକୁ ଭିଡ଼ି ଧରୁ ଧରୁ ଡାଳ ଖସିଯାଇ ଅନ୍ୟ ଜଣକ ମୁହଁରେ ବାଜି ରକ୍ତ ବୋହିଲା । ଘା' ଶୁଖିଲା ମାସକରେ । ମାତ୍ର ଘା' ଚିହ୍ନ ଲିଭିଲା ନାହିଁ । ଜଣେ ଚାଲିଗଲା ଦୂରକୁ ପାଠ ପଢ଼ିବା ପାଇଁ, ଆଉ ଜଣେ ରହିଲା ଗାଁରେ । ସେ କେବେ ଛୁଟିରେ ଆସିଲେ ଦୁହିଁଙ୍କର ଦେଖାହୁଏ; କିନ୍ତୁ ସେ ଦେଖା ଆଉ ଆଗପରି ନୁହେଁ । ସେପରି ଦେଖା ପାଇଁ ବାପ ମା' ମନାକଲେ । ଯେ ଥିଲା ଦୂରରେ ସେ ବେଳେ ବେଳେ ଚିଠି ଦିଏ । ଯେ ଥିଲା ଗାଁରେ ଉତ୍ତର ଦିଏ—ତୁମେ ସିନା ପାଖରେ ନାହିଁ, ତୁମେ ଦେଇଥିବା ସେଇ ଚିହ୍ନଟା ମୋ ପାଖରେ ଅଛି । ଦିନେ ଦୂରରେ ଥିବା ସାଥି ଗାଁକୁ ଆସି ଦେଖିଲା ତା ସାଥି ଚାଲିଯାଇଛି ଆଉ ଏକ ଗାଁକୁ ଜୀବନରେ ଆଉ ଜଣକୁ ସାଥି କରି ।

ଚିନ୍ତାମଣି ନିଦରୁ ଉଠିଲା ପରି ଉଠି ବସି ଡାକିଲେ—ସିପ୍ରା !

ଚପରାସୀ ବୁଢ଼ା ଚମକି ପଡ଼ିଲା । ଆଶ୍ଚର୍ଯ୍ୟ ହୋଇ ଟିକିଏ ଚୁପ ରହି କହିଲା—ବାବୁ, ମୁଁ ଅଛି ।

—ନା ନା, ଭୁଲ ଡାକଲି । କଣ ଗୋଟାଏ ସ୍ୱପ୍ନ ଦେଖିଲି ।

ଚପରାଶି ବୁଢ଼ା ଏତିକବେଳେ ମନେ ମନେ ହସିଲା । ଭାବିଲା, ଅଫିସିବାବୁମାନେ ଯାହା କହୁଥିଲେ ଠିକ୍ ତ ସେୟା ।

ଗ୍ରାମସେବିକା ସିପ୍ରା ଡ୍ରେସିଂ ଟେବୁଲ ଦର୍ପଣ ଆଗରେ ଠିଆହୋଇ ମୁହଁକୁ କେତେ ଥର ପୋଛିଲା । ଆଖିରୁ ଲୁହ ବୋହି ସେହି ଦାଗ ଦେଇ ଦି' ଟୋପା ତଳକୁ ଗଡ଼ିଗଲା । ତାର ମନେ ପଡିଗଲା ପିଲା ଦିନର କଥା । କୋଳି ଖାଉ ଖାଉ ମୁହଁରେ ଏ ଯେ ଗାର ପଡ଼ିଗଲା ଏ ଗାର ଆଉ ଲିଭିଲା ନାହିଁ । ଲିଭିବାର ସୁଯୋଗ ବାପ ମା'ମାନେ ଦେଲେ ନାହିଁ । ବିବାହର ସାତ ମାସ ପରେ ହାତରୁ କାଚ କାଢ଼ିବାକୁ ପଡ଼ିଲା । ଖାଲି କାଚ କାଢ଼ିବାକୁ ପଡ଼ିଲା ନାହିଁ, ଯେଉଁ ଘରକୁ ସଂସାର ଗଢ଼ିବାକୁ ଯାଇଥିଲା ସେ ଘର ବି ଛାଡ଼ିବାକୁ ପଡ଼ିଲା । ଗାଁର ପ୍ରାଇମେରୀ ଶିକ୍ଷକ, ମାସକୁ ସାମାନ୍ୟ ଦରମା, ଘର ତିନି ଖଣ୍ଡିକ ଛଡ଼ା ସଂସାରରେ ଆଉ କିଛି ନ ଥିଲା । ସେ ଘର ଯେତେବେଳେ ଭାଙ୍ଗିଗଲା ତାର ଏକମାତ୍ର ଭରସା ହେଲା ଗ୍ରାମସେବିକା ଚାକିରୀ ।

ସିପ୍ରା ଏତେ ଦିନ ଧରି ଗାଲର ଗାରକୁ ଭୁଲିଯାଇଥିଲା; କିନ୍ତୁ ସେ ଦିନ ଗଜପତିପୁରର ନୂଆ ବି. ଡ଼ି. ଓ. ଚିନ୍ତାମଣି ବାବୁଙ୍କୁ ଦେଖିବା ମାତ୍ରେ ମୁହଁର ଦାଗ ହଠାତ୍ ଗଭୀର ହୋଇ ଦିଶିଲା । ଫେରିଯାଇ ମନେକଲା—ଦାଗଟାକୁ ପାଉଡ଼ର ବୋଳି ଏଭଳି ଲିଭେଇଦେବି ଯେ ହାକିମ ଆଉ ଚିହ୍ନି ପାରିବେ ନାହିଁ ମୁଁ ସେଇ ସିପ୍ରା ବୋଲି ! ସେ ଏପରି ବଗିଚାଲା ବେଳକୁ ସେଇ ଦାଗହିଁ ବି. ଡ. ଓ.ଙ୍କ ପ୍ରାଣରେ ଆହୁରି ଗଭୀରତର ରେଖାପାତ କଲା । ସେ ଅସୁସ୍ଥ ହୋଇ ପଡ଼ିଲେ । ଡାକ୍ତର

ଆସି କହିଲେ—ଏଇଟା ମାନସିକ ରୋଗ । କୌଣସି ଦୁର୍ଘଟଣାରୁ ଏପରି ଘଟିଛି । ହୁଏ ତ କିଏ ଗାଳି ଦେଇଚି, ଅପମାନ ଦେଇଚି କିମ୍ବା ଏ କାହାପ୍ରତି ଗର୍ହିତ ବ୍ୟବହାର ଦେଖାଇ ମର୍ମାହତ ହୋଇଛନ୍ତି । ସ୍ଥାନ ପରିବର୍ତ୍ତନ ହେଲେ ଭଲ ହୋଇଯିବ ।

ବି. ଡ଼. ଓ. ଚିନ୍ତାମଣି ବାବୁ ଉପର ମହଲରେ ଚେଷ୍ଟା କରି ଯେଉଁ ଦିନ ତାଙ୍କର ଛୁଟି ଅର୍ଡ଼ର ପାଇଲେ ସେହି ଦିନ ଡାକରେ ଏ ଚିଠି ଖଣ୍ଡିକ ମଧ୍ୟ ପାଇଲେ—

"ଜୀବନରେ ଆଉ ଥରେ ଦେଖିବି ବୋଲି ଇଚ୍ଛା କରି ନଥିଲି । ବିଧିର ବିଧାନ, ହଠାତ୍ ଦେଖାହେଲା । ହାକିମଙ୍କୁ ମୁହଁ ଲୁଚେଇ ଠିଆ-ହେବା ଉଚିତ ମନେ କଲି ନାହିଁ । ଘରକୁ ଆସି ସେ ଗାଲର ଦାଗକୁ ଯେତେ ଲିଭେଇବାକୁ ଚେଷ୍ଟା କଲି ତାହା ତ ଲିଭିଲା ନାହିଁ, ମନ ଭିତରେ ଆହୁରି ଗୋଟାଏ ଦାଗ ପଡ଼ିଲା । ମୋତେ ଗୁରି ମାସ ଛୁଟି ମଞ୍ଜୁର କରି ରକ୍ଷାକର ।"

ଚିନ୍ତାମଣି ବାବୁ ଝରକାବାଟେ ପୂର୍ବାକାଶକୁ ଚାହିଁ ରହିଲେ । ପଶ୍ଚିମ ଦିଗରେ ସୂର୍ଯ୍ୟ ରଡ ରଡ, ଇନ୍ଦ୍ରଧନୁର ଗୋଟାଏ ବିରାଟ ଦାଗ ଆକାଶରେ ପଡ଼ିଥିଲା । ସେ ବୋଧକଲେ ସୂର୍ଯ୍ୟ ବିଦାୟ ନେଲାବେଳେ ଆକାଶ ଉପରେ ଏ ଯେଉଁ ଦାଗ ପକାଇଦେଇଗଲା, ଆହା ! ତାହା କେଡ଼େ ମଧୁମୟ !

# ମାଗାର ସ୍ମୃତି

ମାଗା ଯେତେବେଳେ ଗାଁ ଛାଡ଼ି ସହରକୁ ଚାଲିଗଲା ଗାଁଲୋକେ କହିଲେ —ଯାହା ହେଉ ମାଗାଟା ଶେଷରେ ଗୋଟାଏ କୂଳ ପାଇଲା ।

ମାଗାର ବୁଦ୍ଧି ହେଲା ଦିନଠାରୁ ଦୀର୍ଘ ତିରିଶି ବର୍ଷ ପର୍ଯ୍ୟନ୍ତ ସେ କେବେ ଗାଁ ବାହାରକୁ ଯାଇ ନଥିଲା । ଏପରି କି, ବାଡ଼ିତଳ ଗାଁରେ ଲୋକଙ୍କ ପାଟିତୁଣ୍ଡ ବେଳେ ବେଳେ ତା ଗାଁକୁ ଶୁଭିଲେ ମଧ୍ୟ ଏବଂ କାହିଁକି ସେ ଗାଁରେ ଏତେ ବେଶି ପାଟିତୁଣ୍ଡ ହୁଏ ତହିଁର କାରଣ ସେ ବୁଝୁଥିଲେ ମଧ୍ୟ କେବେ ଥରେ ହେଲେ ଆଗ୍ରହ ଦେଖାଇ ସେ ଗାଁରେ ତାର ପାଦ ପଡ଼ି ନଥିଲା । ନିଜର ପୈତୃକ ସମ୍ପତ୍ତି ବିଲ ଚାରି ମାଣରେ ସେ ମାଟି ମାଉଁସ ହୋଇ ଲାଗି କୌଣସିମତେ ଗୁଜୁରାଣ ମେଣ୍ଟାଉଥିଲା ।

ପୂର୍ବାଚାର୍ଯ୍ୟମାନେ କହିଯାଇଛନ୍ତି—ସଂସାର କଲେ ବେଳେ ବେଳେ ଉପରୁ ପଥର ପଡ଼େ ଏବଂ ସେ ମାଡ଼ ସହିବାକୁ ହୁଏ । ତାହା ପ୍ରକୃତରେ ପଥର ପଡ଼େ କି ପଥର ପରି ଆଉ କଣ ପଡ଼େ ମାଗା ସେ କଥା ବି ବୁଝିପାରିନଥିଲା । ଥରେ ମାଗା ଉପରେ ପଥର ପଡ଼ିଲା । ସେହି ଦିନ ସେ ବୁଝିଲା ଯେ ଉପରେ ପଥର ପଡ଼ିବା କଥା ଯେ ଆଗରୁ ଶୁଣୁଥିଲା, ତାହା କଣ । ମାଗା ସେହି ପଥରକୁ, ସେହି ଆଘାତକୁ ସମ୍ଭାଳିବା ପାଇଁ ଦୁଇ ମାଣ ବିଲ ବିକିଲା । ଦଶ ପଚିଶ ଟଙ୍କା କରଜ କଲା । ଗାଁ କବିରାଜଙ୍କ ଠାରୁ ଆରମ୍ଭ କରି ଜଡ଼ିବୁଟି ଜାଣିଥିବା ଗୁଣିଆଙ୍କ ଯାଏଁ କାହାକୁ ଯେ ସେ ସେକଥା ନ କହିଛି ଏପରି ନୁହେଁ । ସବୁ କରି, ସମସ୍ତଙ୍କୁ କହି ସେ କଲୁ

ପଥରକୁ ଅଟକାଇପାରିଲା ନାହିଁ । ଯେତେବେଳେ ମାଗାର ତିନି ବର୍ଷର ପିଲାଟି କବିରାଜଙ୍କ ଔଷଧ ଓ ଗୁଣିଆର ଜଡ଼ିବୁଟି ଝଡ଼ାଝଡ଼ିର ବାରଣ ସତ୍ତ୍ୱେ ତା ଘର ଖାଲିକରି ଚାଲିଗଲା, ମାଗାର ଅଣ୍ଟା ଭାଙ୍ଗିଗଲା । ସେହି ଦିନ ମାଗା ବୁଝିଲା ସଂସାରରେ ପଥର ପଡ଼ିଲେ କଣ ହୁଏ । ମାଗା ସେଇଠି କେତେ ଦିନ ମୂକ ହୋଇ ବସି ରହିଲା । କିଏ କେତେ ବୁଝାଇଲେ ମଧ୍ୟ ବୁଝିଲା ନାହିଁ । ଘା ଶୁଖିଗଲେ ଦରଜ କମିଯାଏ; କିନ୍ତୁ ଅନେକ ସମୟରେ ଘା'ର ଚିହ୍ନଟା ଲିଭେ ନାହିଁ । ଅନେକ କ୍ଷେତ୍ରରେ ସେ ଚିହ୍ନ ମଶାଣି-ପଦାକୁ ଗଲା ପର୍ଯ୍ୟନ୍ତ ବି ରହେ । ମାଗାର ମନ ଭିତରେ ଯେ ଦାଗ ପଡ଼ିଗଲା ସେ ଆଉ ଲିଭିଲା ନାହିଁ; ତଥାପି ମାଗା ବଞ୍ଚି ରହିଲା ।

ମାଗା ଚାଲିଗଲା ସହରକୁ । ସହରରେ ସେ କେଉଁଠି ଚାକିରି କଲା, ଜଣା ନାହିଁ; ମାତ୍ର ଯିବାର ଦୁଇ ମାସ ପରେ ସେ ଯେତେବେଳେ ଫେରି-ଆଇଲା ବାଟରେ ପ୍ରଥମେ ଭେଟିଲା ଗାଁର ରାଜଗୁରୁଙ୍କୁ । ତାକୁ ଦେଖିଲା-ମାତ୍ରେ ରାଜଗୁରୁ ପଚାରିଲେ—କିରେ ମାଗା ! ଏତେ ବେଗି ଫେରି ଆଇଲୁ ? ଦେହ କଣ ବେମାର ହେଲା ? ବିଦେଶ ଜାଗା ନା, କେହି ସାହା ସାଥି ନ ଥିବ ! କଣ ହୋଇଥିଲା ?

ଅଣ୍ଟାରେ ବାନ୍ଧିଥିବା ବୁଜୁଲାଟିକୁ ତରତରରେ କାନ୍ଧରୁ ଓହ୍ଲାଇ ତଳେ ଥୋଇଦେଇ ମାଗା ଆଗ ଗୋଟାଏ ଲମ୍ବ ଦଣ୍ଡବତ ପକାଇ କହିଲା —ସାଆନ୍ତେ, ଦେହ ମୋର ଠିକ୍ ଥିଲା; ମାତ୍ର ମନଟା ଏତେ ଖରାପ ହେଲା ଯେ ଆଉ ସେଠାରେ ମୁହୂର୍ତ୍ତେ ରହିବାକୁ ଇଚ୍ଛା ବଳିଲା ନାହିଁ । ସବୁବେଳେ ଏଇଠା କଥା ମନେ ପଡ଼ିଲା ।

ରାଜଗୁରୁ ମାଗାର ମର୍ମବେଦନା ବୁଝିଲା ପରି କହିଲେ—ଆରେ ବାପୁ, ସେକଥା ଆଉ ବିଚାରି ଲାଭ କଣ ? ଯିଏ ଚାଲିଗଲା ସେ ଆଉ ତୋର ନୁହେ । ଯେତିକି ଦିନ ପାଇଁ ସେ ଆସିଥିଲା ସେତିକି ଦିନ ତୋ ପାଖରେ ରହିଲା । ଯାହା ବିବାଦ ଥିଲା ତାହାହିଁ ହେଲା, ଏକଥା ବିଚାରରେ ।

ଏକଥା ଶୁଣି ମାଗା କହିଲା—ସାଆନ୍ତେ, ମୁଁ ସେଇ କଥା କହୁଚି । ଯେତିକି ଧନ ବଗାଦ ଥିଲା ସେତିକି ଧନ ସହରରେ ରହିଲା । ମୋତେ ଆଉ ଅଟକାଇବ କିଏ ? ମୁଁ ଚାଲିଆଇଲି ଆପଣମାନଙ୍କୁ ଦେଖିବା ପାଇଁ ।

ରାଜଗୁରୁ ମାଗା ମୁହଁରୁ ଏହା ଶୁଣି ମନକୁ ମନ ବିଚାରିଲେ—ଠିକ୍ ବୁଝିଚି । ମୋର କଥାରେ ମୋତେ ଉତ୍ତର ଦେଇଚି । ଯାଉ ଯାଉ ତାକୁ ଶୁଣେଇଲା ପରି କହିଲେ—ହଁ ଯା, ଯା, ମନ ସ୍ଥିର କର । ହାତ ଚଳିଲେ ତ ପେଟ ଚଳିବ, ଇମିତି ହେଲେ କଣ ହେବ ?

ମାଗା ସହରକୁ ରୋଜଗାର କରି ଗଲାବେଳେ ସହର ବିଷୟରେ ସେ ଯେ ଧାରଣା ନେଇ ଯାଇଥିଲା ଫେରିଲାବେଳେ ଠିକ୍ ଓଲଟା ଧାରଣା ନେଇ ଫେରିଲା । ସହର ବିଷୟରେ କିଏ ତାକୁ କଣ ପଚାରିଲେ ସେ ଉତ୍ତର ଦିଏ—ସହରଟା ଭଲ ଜାଗା ନୁହେ । କେତେ ଲୋକେ ତ ନିଜେ ଠକନ୍ତି, ଠକିବା ପାଇଁ ଅନ୍ୟକୁ ବୁଦ୍ଧି ମଧ୍ୟ ବତାନ୍ତି । ଏ ମାଗା କ'ଣ ସେ ଜାତିର ଲୋକ ? ମାଗା କଣ କେବେ ଗାଁରେ କାହାକୁ ଠକିବାର ଦେଖିଚ ? ମାଗା ଧାନ ବିକୁଛି; ମାତ୍ର ସେଥିରେ ଅଗାଡ଼ି ମିଶାଇ ବିକେ ନାହିଁ । ବାଡ଼ିରେ ପନିପରିବା କରି ବିକୁଛି; ମାତ୍ର ନେସର ଚକଡ଼ିରେ ଊଣା ଓଜନ କରି ଦେଇ-ନାହିଁ । ଏ ମାଗା ସହରରେ ଠକାମିରେ ପଡ଼ନ୍ତା କପରି ? ପଡ଼ି ନ ପାରିଲା ବୋଲି ଚାଲିଆଇଲା ।

ମାଗାର ସହର ଅନୁଭୂତି କଥା ଶୁଣିବାକୁ ଲୋକଙ୍କୁ ଭାରି ଭଲ ଲାଗେ । ଗାଁରେ ଯିଏ ଟିକିଏ ଦରପାଠୁଆ, ଜାଣିବା ଶୁଣିବା ଲୋକ ଥାନ୍ତି, ମାଗା ମୁହଁରୁ କଥା ଶୁଣି ମତ ଦିଅନ୍ତି—ମାଗାଟା ପାଠ ପଢ଼ିଥିଲେ ଗୋଟାଏ ପଣ୍ଡିତ ବୋଲେଇଥାନ୍ତା । କଥାଗୁଡ଼ାକ ସବୁ ଭିନ୍ନ ଦୃଷ୍ଟିକୋଣରୁ କହୁଛି । ମାଗା ଲୋକଙ୍କର ଏ ପ୍ରକାର ମତାମତରୁ ମଧ୍ୟ କିଛି ରସ ଗ୍ରହଣ କରିପାରେ ନାହିଁ । ସେ ସିଧାସଳଖ ଚାର ସ୍ୱଭାବସୁଲଭ ସରଳଭାଷାରେ ସହର ବିଷୟରେ ମତ ଦେଇଯାଏ । କହେ, ସେ ଯେଉଁଠି ଥିଲା ସେଠି ଖାଲି ଦୁଧ ଓ ମହୁ ଭାସୁଥିଲା । ଖାଇବା ପିଇବାର କିଛି ଅଭାବ ନଥିଲା । ତା ସାଙ୍ଗକୁ ଆଉ ଦଶ ପଚାଶ ଲୋକ ବି ଥିଲେ । ସେ ଆନଟା କିନ୍ତୁ ତାକୁ ଭଲଲାଗିଲା ନାହିଁ ।

କିଏ ଜଣେ ତାଙ୍କୁ କହିଲା—କହିଲେ ମାଗା ! ତମ ସେଠି ଏତେ ସୁବିଧା ଥିଲା, କାହିଁକି ଚାଲିଆସିଲୁ ? ଦୁଇ ପଇସା ରୋଜଗାର କରି ପିଲା କୁଟୁମ୍ବ ମୁହଁରେ ତୋରାଣି ଦେଇଥାନ୍ତୁ । ଏକଥା ଶୁଣି ମାଗା ଆଗ ଆଖି ବୁଜିଦେଲା । ବୋଧହୁଏ ସେ ଭାବେ କଣ ଉତ୍ତର ଦେବ ବୋଲି । ସେ ଟିକେ ସୁସ୍ଥ ହେଲାପରେ, ଅତୀତର କେଉଁ କଥାକୁ ମନେ ପକାଇଲା ପରି କହେ— ଏ ମାଗା ମଣିଷ ମାତ୍ର ଜାଣେ ନାହିଁ ସାଆନ୍ତେ ! ଏହା କହି ଆଖି ଛଳ ଛଳ କରିଦିଏ, ଆଉ ଗୋଟାଏ ଦୀର୍ଘ ନିଶ୍ୱାସ ଛାଡ଼ି ମୁହଁକୁ ବୁଲାଇଦିଏ ।

ମାଗାର ମନ କଥା କେହି ବୁଝିପାରନ୍ତି ନାହିଁ । ଅନେକେ ଭାବନ୍ତି ବୋଧହୁଏ ତାକୁ କିଏ ଠକିଦେଲା । ମଫସଲିଆ ଲୋକ ତ, କୌଣସି କାରଣରୁ ସହର ଉପରେ ଚିଡ଼ି ଚାଲିଆସିଛି ।

ମାଗା ସହର ବିଷୟରେ ଗାଁରେ ଏତେ ବେଶି ଖରାପ ଧାରଣା ଦେଲା ଯେ, ସହର ସହିତ ପରିଚିତ ହୋଇଥିବା ଅନେକ ଲୋକଙ୍କ ସହିତ ଗୁରୁତର ମତଭେଦ ହେଲା; କିନ୍ତୁ କାହିଁକି ସେ ଏପରି କହେ କେହି ବୁଝିପାରନ୍ତି ନାହିଁ । ଦିନେ ସେ ତାର ଅନୁଭୂତି କହି ବସିଲା । କହିଲା— ସହର ବଡ଼ ଜାଗା । ଘରଗୁଡ଼ାକ ମେଘକୁ ଛୁଇଁଛି । ବାଟେ ଘାଟେ ସବୁ-ବେଳେ ଲୋକ । ଦୋକାନ ଦୁଆର ସବୁବେଳେ ଗହଳି । ହେଲେ, ମୁଁ ସେ ସବୁ କଥା କହୁନାହିଁ । ମୁଁ କହୁଛି ମୋର ଚାକରି କଥା । ମୁଁ ଯାହା-ପାଖେ ଚାକରି କଲି ତାର ଶହେ ମଇଁଷି, ଆଉ ପଚିଶେ ଗାଈ । ତାଙ୍କୁ, ମଇଁଷି ଦୁହିଁବାକୁ ଆମେ ଥିଲୁ ପଚିଶି ଜଣ । ମୁଁ ଯେଉଁ ଦିନୁ ସେଠି କାମ କଲି ମୋ ମାଲିକକୁ ଦେଖି ନଥିଲି । କାମରୁ ବାହାର ହେଲାଦିନ ଦେଖିଲି । ଓହୋ, କି ଭୀଷଣ ମୂର୍ତ୍ତି ! ମୁହଁରେ ଦି'ପଟା ମୋଟା ନିଶ, ହାତ ଦୁଇଟା ଶାଳୁଆ ଗଜା ପରି, ପେଟଟା ଠିକ୍ ଗଣେଶ ପେଟ ପରି ଓହଳି ପଡ଼ିଛି । କଥା କହିଲେ ଆଖି ଡୋଳାକୁ ଶଗଡ଼ ଚକ ପରି ବୁଲେଇ ବୁଲେଇ କହେଁ । ତାକୁ ଦେଖିବା ଆଗରୁ ମୋର ଦରମା ଠିକ୍ ହୋଇଥିଲା ମାସକୁ ଷାଠିଏ । ଖିଆପିଆ ମୋ ହାତରୁ । ମୋ ଭାଗକୁ ପଡ଼ିଥିଲା ଦଶଟି ମଇଁଷି ଦୁହିଁବାକୁ । ଦଶଟି ମଇଁଷି ଦୁହିଁ ମହଜଣେ ଦୁଧ ଦେବାପାଇଁ ମତେ ଆଦେଶ ହୋଇଥିଲା । ଆଠ ଦିନ କାଳ କେତେ ଚେଷ୍ଟା କଲି, ତିରିଶି ସେରରୁ ଆଉ ଛଟାଙ୍କିଏ ବଳିଲା ନାହିଁ । ଦୁହିଁ ଦୁହିଁ ହାତ ପିଡ଼ା ହୋଇଗଲା ।

ଏଇ ଯେ ମହଜଣଙ୍କଠୁ ଦଶ ଟଙ୍କାର ଋଣ ହୋଇଗଲା ଏଇ ହେଲା ମୋର ଦୋଷ । ମହଜଣ ଆଦାୟ ନ ଦେଲେ ଗୃହକର୍ମ ଚଳିଯିବ ଏକଥା ଦିନେ ଶୁଣିଲି । ଦିନରେ ଭାବେ, ରାତିରେ ଶୋଇଲାବେଳେ ମଧ୍ୟ ଭାବେ । ସକାଳୁ ଉଠି ଦୁହିଁକରି ଦେଖେ, ଯେଉଁ ତିରଣିକ ସେଇ ତିରଣି । ମୋର ସାଥିମାନେ ମହା ସୁଖରେ ଥାନ୍ତି । ସେମାନଙ୍କୁ ଯେତିକ ଦୁହାଯାଇଥାଏ ସେତିକ ମଜୁରି ଦିଅନ୍ତି । ଦିନେ ଜଣେ ସାଥିବାଲାକୁ ପଚାରିଲି ତିରଣି ସେରଠୁ ତ ବେଶି ହେଉ ନାହିଁ, ମୁଁ ମହଜଣେ ଦେବି କୁଆଡ଼ୁ ? ସେ ଲୋକଟା ମୋତେ କହିଲା—ଆରେ ବୋକା ! ଦୁଧ କଣ ଖାଲି ମଇଁଷି ଦିଅନ୍ତି । ତା ପାଇଁ ଏ ରାସ୍ତାତଳର ପାଇପ୍ ଅଛି । ତୁମେ ଯେତେ ଦୁହିଁବ ଦୁହଁ, ଅଭାବ ପଡ଼ିଲେ ପାଇପ୍ ତାହା ପୂରଣ କରିଦେବ । ଏକଥା ଶୁଣି ମୋ ଆଖି ତାଳୁକୁ ଖୋସିହୋଇଗଲା । ପଚାରିଲି, ତାହା ହେଲେ ତୁମେ କଣ ପାଣି ମିଶାଇ ଦୁଧ ଭରଣା କରୁଚ ? ଏ ଦୁଧ ଖାଉଚି କଏ ?

ସେ ହସି ହସି ଥକାକଲାପରେ କହିଲା—ଆରେ ବୋକା, ତୋ ଘର କେଉଁଠି ? ପାଣି ମିଶାଯାଇଚି ବୋଲି କହିଲେ ଲୋକେ କଣ ଦୁଧ କିଣିବେ ? କହିବାକୁ ହେବ ଖାଣ୍ଟି ଦୁଧ । ଖାଣ୍ଟି ଦୁଧ କହିଲେ ଖାଣ୍ଟି ପଇସା ମିଳିବ । ମାଲିକକୁ ଖାଣ୍ଟି ପଇସା ମିଳିଲେ ଆମ ଗୃହକର୍ମ ଏଠାରେ ବଜାୟ ରହିବ ।

ଏତକ କହିଦେଇ ମାଗା ଅନନ୍ତ ଆକାଶକୁ ଚାହିଁଲା । ଆଖିପତା ଓଦା ହୋଇ ଆସିଲା । ବୋଧହୁଏ ତାର ମନେ ପଡ଼ିଲା ବର୍ଷକ ତଳର ଗୋଟାଏ ଘଟଣା । ତାର କୋଳର ସୁଙ୍ଗାଳି, ଜୀବନର ଦୀପ ଯେତେବେଳେ ଲିଭିଆସିଲା, କବିରାଜ, ଗୁଣିଆ ସମସ୍ତେ ତାକୁ କହିଥିଲେ ପାଣିମିଶା ଦୁଧ ଖାଇ ପିଲାଟାକୁ ଥଣ୍ଡା ଓ କଫ ହୋଇଗଲା । ଔଷଧ ଦେଣ୍ଟୁ ପରାସ୍ତ ହେବ ।

ମାଗା ଆଖି ଫିଟେଇ ଚମକିଲାପରି ହୋଇ ଝାଡ଼ିଝୁଡ଼ି ହୋଇ ବସିଲା । ତା ପରେ କହିଲା—ମୁଁ ସାଙ୍ଗେ ସାଙ୍ଗେ ଉତ୍ତର ଦେଲି—ଭାଇ, ମୁଁ ପିଲା ମାରିପାରିବି ନାହିଁ, ମୁଁ ଠକିପାରିବି ନାହିଁ, ମୁଁ ଦୁଧରେ ପାଣି

ମିଶାଇ ପାରିବ ନାହିଁ । ମୋର ଶୁକଣି ହେଉଛି ନ...ହେଲା ନାହିଁ, ଆଜି ଏତିକି ।

ମାଗା ଦୁଇ ମାସ ସହରରେ ରହି ସହର ବିଷୟରେ ଯେ ତିକ୍ତ ଧାରଣା ନେଇ ଆସିଥିଲା ତା ମନରୁ ତାହା ଆଜି ଲିଭିଲା ନାହିଁ । ଲୋକେ ଦେଖିଛନ୍ତି ସେ ଆଜି କେବେ ସହରମୁହାଁ ହୋଇନାହିଁ ।

# ଜଡ଼ା କୁରୁପାର ପ୍ରେମ

ମାଙ୍କଡ଼ରୁ କଟରି ମଣିଷ ହେଲା ଏଥିର ଉତ୍ତର ମାଗିଲେ ସ୍କୁଲ କଲେଜ ପିଲାଏ ସୁଦ୍ଧା ବହି ଲେଖି ଥୋଇଦେବେ; କିନ୍ତୁ କୁରୁପା ଗଉଡ଼ କପରି ମଣିଷରୁ ଗୋରୁ ପାଲଟିଲା ସେ କଥା ନଳପଡ଼ା ଗାଁର ଲୋକଙ୍କ ଛଡ଼ା ଏ ଓଡ଼ିଶା ମୂଲକରେ ଆଜି କେହି ଜାଣନ୍ତି ନାହିଁ ।

କୁରୁପା ପ୍ରଥମେ ଥିଲା ମଣିଷ, ଏ କଥା ଏବେ ମଧ୍ୟ ନଳପଡ଼ା ଗାରେ ପଚାରିଲେ ତାର ଯଥେଷ୍ଟ ପ୍ରମାଣ ମିଳିବ । ସେ ଗାଁର ଲୋକେ କହିବେ—କୁରୁପାକୁ ଛାଡ଼ି ତାର ବାପ ମା' ଯେତେବେଳେ ସଂସାରର ଆରପାଖକୁ ଚାଲିଗଲେ, କୁରୁପା ସେମାନଙ୍କ ସାଥିରେ ଯିବାକୁ ବେଶି କିଛି ବାଧା ନ ଥିଲା । ସେତେବେଳକୁ ତାକୁ ନଅ ମାସ ବୟସ । କେଉଁ ଦିଅଁଙ୍କ କୃପାରୁ ବାପ ମା' ତାକୁ ପାଇଥିଲେ କେଜାଣି, ସେ କିନ୍ତୁ ପିଲାଟି ଦିନରୁ ଗାଁ ଯାକର କୃପାପାତ୍ର ହେଲା । ଯେଉଁ ଘରେ ସେ ଜନ୍ମ ହୋଇଥିଲା ସେଠାରେ ରହିପାରିଲା ନାହିଁ । ବାପ ମା ମଲାବେଳକୁ ଘର ଉପରେ ସାତ ପିଉକା ଖଜଣା ବାକି ପଡ଼ିଥିବାରୁ ଗାଁର ପଧାନ ବୁଢ଼ା କଚେରୀ ସହିତ ତାକୁ ଘରୁ କାଢ଼ିଦେଇଥିଲେ । ତା ମାଉସୀ ତାକୁ ନେଇ ପାଳିଲା ।

କୁରୁପାର ଜୀବନୀ ଏଠାରେ କୁହାଯାଉ ନାହିଁ । କୁହାଯାଉଛି ତା ଜୀବନର କେତୋଟି ନିତାନ୍ତ ଶ୍ରେଷ୍ଠ ଶ୍ରେଷ୍ଠ କଥା । ସେ ଦିନେ ଥିଲା ମଣିଷ, ଆଉ ମଣିଷ ନିଜ ପାଇଁ ଯାହା ଲୋଡ଼େ ସେ ତାହା ଲୋଡ଼ୁଥିଲା ।

ବାପ ତାର ଗାଈଜଗୁଥିଲା । ସେ ମଧ୍ୟ ଗାଈ ଗୋଠପଛରେ ବୁଲିଲା, ମନ ବାପ ପରି ନୁହେଁ । ତାର ନିଜ ଗାଁ ଠାରୁ କାହିଁ ଦଶ କୋଶ ବାଟ ଆର ପାଖେ ଚମ୍ପାପୁର ଗାଁରେ ପ୍ରଜାପତି ତାପାଇଁ ଜଣକୁ ସଜାଡ଼ି ରଖିଥିଲେ ବୋଲି ସେ ନିଜ ହାତ ଜ୍ୟୋତିଷକୁ ଦେଖାଇ ଜାଣିପାରିଥିଲା । ତେଣୁ ସେ ଗାଈ ଗୋଠ ସଙ୍ଗେ ସଙ୍ଗେ ଜ୍ୟୋତିଷର ବଚନ ପଛରେ ମଧ୍ୟ ବହୁତ ବୁଲିଲା ।

କୁରୂପାର ଗାଁଟା ନିତାନ୍ତ ଛୋଟ । ତାହାର ଭିତରେ ସେ ଗୋଟାଏ ବଡ଼ କଥା କରିବାକୁ ଚେଷ୍ଟା କଲା । କୁରୂପା ଭାବିଲା ସେ ହେବ ଗାଁର ଜଣେ ମଣିଷ ! ଗାଁରେ ଅନେକ ମଣିଷ ଥିଲେ । ହାସେ ଥିଲେ, ଦିନକୁ ଗୁରି ପଇସାର ପାନ ଖାଇ, ମୁଣ୍ଡରେ ସୁନ୍ଦା କାଟି ବାଣ୍ଡକୁ ବାହାରନ୍ତି । ପଧାନେ ଅଧୁଆ ମଠା ପିନ୍ଧି, ବଟୁଆ ଧରି ଦିନପାକ ଟହଲ କରନ୍ତି । ରଥେ ଗୀତ ଗାଇ, ମୃଦଙ୍ଗ ବଜାଇ ଦିନ କାଟନ୍ତି । କୁରୂପା ବିଗୃରିଲା ଠିକ୍ ସେ ଏହିପରି ଗୋଟାଏ ମଣିଷ ହେବ !

କୁରୂପା ସବୁ କଲା । ସଉଦାରେ ସେ ପାନ ବଟୁଆ କଣିଲା । ପାନ ପାଇଁ କେତକୀ ଖଇର ବର୍ଷକ ଲାଗି ସଜାଡ଼ିଲା । ବେଶ ପାଇଁ ଦୁଧ ସରପରି ଧୋବ ଲୁଗା ରଖିଲା । ବାସନା ତେଲ ସହିତ ପାନିଆ ଦର୍ପଣ ମଧ୍ୟ କଣିଲା । ସବୁ କଣିଲା କେବଳ ସେ ଜଣକ ପାଇଁ । ଜଣେ ପାଇଁ ସେ ଜୀବନଟାକୁ କେତେବେଳେ ଅତି ତୁଚ୍ଛ ମନେକଲା । ଜଣକ ଲାଗି ସେ ରାତିରେ ଶୋଇଲା ନାହିଁ, ଦିନରେ ଥିର ହୋଇ ଭାବିଲା ନାହିଁ, ଗୋଠରେ ମନ ଦେଇ ଗାଈ ଜଗିଲା ନାହିଁ । ଭାବିଲା, କେତେବେଳେ ସେ ସେହି ଜଣକୁ ପାଇବ, ଆଉ ଏ ସବୁ ବେଶବାସ ପିନ୍ଧି ନିଜ ଗାଁ ବାଟରେ ବୁଲି ସଂସାରକୁ ଚମକାଇଦେବ !

କୁରୂପା ଶିଖିଲା ଅନେକ କଥା । ସେ ପାନ ଖାଇ ଓଠ ରଙ୍ଗାଇ ଶିଖିଲା, ପାନିଆ ଦର୍ପଣ ଧରି ମୁଣ୍ଡ କୁଣ୍ଡାଇ ଶିଖିଲା । ମୃଦଙ୍ଗରେ ହାତ ମାରି ବଜେଇ ଶିଖିଲା । ମାତ୍ର ଗୋଟିଏ କଥା ସେ ଶିଖିପାରିଲା ନାହିଁ, ତାହା ହେଉଛି—କଥା ।

କେତେ ଚେଷ୍ଟା କରି କୁରୁପା କଥା କହି ଶିଖିପାରିଲା ନାହିଁ । ତାକୁ ଯେ ଗଢ଼ିଥିଲା ସେହି ଅମୂଲ୍ୟ ସମ୍ପଦରୁ ତାକୁ ବଞ୍ଚିତ କରିଥିଲା । ସେ ଯେତେବେଳେ ପ୍ରଥମେ ଏଇ ପୃଥିବୀରେ ପଡ଼ିଥିଲା ଗୋଟାଏ କଳା ଛନ ଛନ ରୂପ ନେଇ ପଡ଼ିଥିଲା । ତାର ହାତ, ଗୋଡ଼, ନାକ, କାନ ସବୁ ଠିକ୍ ଥିଲା; ମାତ୍ର ନ ଥିଲା ସ୍ୱର । ତେଣୁ, ଚାରି ବର୍ଷ ପରେ ନଳପଡ଼ା ଗାଁ ଲୋକେ ତା ନାଁ ଧରି ଡାକିଲେ—ଜଡ଼ା କୁରୁପା ।

ମଝିରେ ଚାଳିଶ ବର୍ଷ ଭିତରେ ଅନେକ କଥା ଘଟିଗଲା । କାଳସ୍ରୋତରେ ଚାଳିଶିଟା ବସନ୍ତ ଚାଲିଗଲା । ନଳପଡ଼ାର ସରୁ ରାସ୍ତା ଓସାର ହେଲା, ରାସ୍ତା ନ ଥିବା ସ୍ଥାନରେ ରାସ୍ତା ବି ଫିଟିଲା । ବୁଢ଼ାମାନେ ପିଲାଙ୍କ ଉପରେ ସଂସାର ଭାର ଦେଇ ଚାଲିଗଲେ । ନଳପଡ଼ାର ଗାଈ-ଗୋଠରେ ଅର୍ଜୁନା, ପାଣ୍ଡ୍ରା, ଚକରା ବୋଲି ତିନି ତିନିଟା ଷଣ୍ଢ ରାଜତ୍ୱ କରି କୁଆଡ଼େ ଗଲେ; ମାତ୍ର ଗୋଟାଏ ମଣିଷ ଏ ସବୁ ଦେଖିଗଲା । ମୁଣ୍ଡରେ ଭୂତ ପରି ବାଳ ରଖି, ହାତରେ ଶତେ ଉଚ୍ଚ ଠେଙ୍ଗା ଧରି, ଅଣ୍ଟାରେ ଦି' ଚାରିଟା ପଘା ବାନ୍ଧି, ଦୁଇଟା ଉଚ୍ଚ ଉଚ୍ଚ କଠଉ ଚଢ଼ି ଯେତେବେଳେ ସେ କଣ ଗୋଟାଏ ଡାକଦିଏ ଲୋକେ ଘର ଭିତରେ ଥାଇ ମନେକରନ୍ତି, ଜଡ଼ା କୁରୁପା ଗାଈ ଆଣୁଛି ।

ଜଡ଼ା କୁରୁପା ଗାଈ ନିଏ, ଗାଈ ଆଣେ, ଏହା ଛଡ଼ା ସେ ଆଉ କିଛି କରେ ନାହିଁ । ଗାଈ ଜଗିବାର ଚାଳିଶି ବର୍ଷ ଭିତରେ ସେ ମୁହଁ ଟେକି ମଣିଷ ମୁହଁକୁ ଚାହିଁ ନାହିଁ । କେତେବେଳେ ସେ ମୂଳ ପାଇଁ ଗାଁର ଦୁଆର ଦୁଆର ଯାଏ । ମୁହଁ ପୋତି ରଖି କେବଳ କାନ ପତେଇଦିଏ । ଦେଲେ ତ ଆଣେ, ନ ଦେଲେ ଏପରି ପାଟିକରେ ଯେ ଗାଁଟା ଯାକ ଚହଳ ପଡ଼ିଯାଏ । ସେ ଯେ ନିଜ ଗାଁରେ କାହା ମୁହଁକୁ ଚାହେଁ ନାହିଁ,

ତାହା ନୁହେ । ଧାନ ନେଇ ଦୋକାନକୁ ଗଲେ ଦୋକାନୀ ଆଗରେ କୁଢ଼ାଇଦିଏ । ହାତ ଦେଖାଇ ଜିନିଷ ମାଗେ, ନ ହେଲେ ଧାନର ଦାମ ନେଇଆସେ ।

କିନ୍ତୁ ଲୋକେ କହନ୍ତି, କୁରୂପା ନିଜ ଗାଁରେ ସିନା ମୁହଁ ଫିଟେ ନାହିଁ, ଗୋଠରେ ମୁହଁ ସଳଖ କରି ଚାଲେ । ସତେ ଯେପରି ସେଠାରେ ସେ ରଜା । ଗୋଠରେ କୁରୂପା କେବଳ ଯେ ମୁହଁ ଫିଟେ ତା ନୁହେ, ମୁହଁ ଫିଟି ହସେ, କାନ୍ଦେ, ବାଡ଼ି ବୁଲେଇ ଗାଈଙ୍କ ପଛରେ ଖେଳେ । ଗାଈ ଯଦି ଦୁଷ୍ଟାମି କଲା, କୁରୂପା ତାକୁ ପିଟିଦିଏ ନାହିଁ । ତା କାନ ମୋଡ଼ି ଥୋମଣିକୁ ଚୁପୁଡ଼ା ମାରେ, ତା'ପରେ ମୁହଁକୁ ମୁହଁ ଲଗେଇ ଗଁ ଗଁ ହୋଇ କଣ କହେ । ଗାଈ ଆଖିରୁ ଲୁହ ବୋହିଲେ ତା ଆଖିରୁ ଲୁହ ବୋହିଯାଏ । ବେଳେ ବେଳେ ସେ ଗାଈକୁ କୁଣ୍ଢାଇ ଧରି କାନ ପାଖେ କଣ କହେ କେଜାଣି, ଗାଈ କିନ୍ତୁ ତାର ଭାଷା ବୁଝିଲା ପରି ଠିଆହୋଇଥାଏ । ଗୋଟାଏ ମୂକ ମଣିଷ ଗୋଟାଏ ମୂକ ପଶୁଙ୍କୁ ସାଥିରେ ଧରି ଯେ କି ରହସ୍ୟ ଖେଳେ ସମସ୍ତେ ବୁଝିପାରନ୍ତି ନାହିଁ । ଗାଁର ପ୍ରବୀଣମାନେ କହନ୍ତି, କୁରୂପା ପୂର୍ବ ଜନ୍ମରେ ଥିଲା ପଶୁ, ଏଇ ଜନ୍ମରେ ଠିକ୍ ସେୟା ହେଲା !

ତେଣୁ କୁରୂପାକୁ କେହି ମଣିଷ ଭିତରେ ଗଣନ୍ତି ନାହିଁ । ତାକୁ ସମସ୍ତେ କହନ୍ତି ଗୋରୁ । ବାସ୍ତବିକ୍, ସେ ଗୋରୁ ପରି ଚଳେ । ଗୋରୁ ଗୁହାଳରେ ବନ୍ଧାହୋଇ ଦିନରେ ବିଲକୁ ଗଲାପରି କୁରୂପା ରାତିଟା ଖଣ୍ଡେ ଭଙ୍ଗା କୁଡ଼ିଆ ଭିତରେ ପଡ଼ିରହି ଦିନଯାକ ଗୋଠ ନେଇ ବୁଲୁଥାଏ । ଚାଳିଶି ବର୍ଷ ଭିତରେ ଦିନେ ହେଲେ ତାର ଦେହ ବେମାର ହେଲା ନାହିଁ, ଚାଳିଶି ବର୍ଷ ଭିତରେ ସେ ଥରେ ହେଲେ ଗାଁର କେଉଁ କବିରାଜଙ୍କ ଦୁଆରକୁ ଗଲା ନାହିଁ । ସେ ନିଜର ଅଭାବ ଅସୁବିଧା କଥା କାହାକୁ କହିଲା ନାହିଁ, କି କାହାର ଦୁଃଖ ଦେଖି ଆହା ବୋଲି ନିଶ୍ୱାସ ପକାଇଲା ନାହିଁ । ଗାଁ ଭିତରେ ମଣିଷ ସମାଜ ପାଖେ ତାର ଲୁହ ନାହିଁ କି ହାସ୍ୟ କୌତୁକ କିଛି ନାହିଁ—ସତେ ଯେପରି ସେ ଗୋଟାଏ ପଶୁ ! ତେଣୁ କିଏ କିଏ କହିଲେ, କୁରୂପା ଥିଲା ଦିନେ ମଣିଷ,

ପରେ ଗୋରୁ ପାଳୁଥିଗଲା । ଅନେକ ସମୟରେ ପାଷଣ୍ଡ ପଣ୍ଡିତ ହୁଏ, ଦସ୍ୟୁ ବାଲ୍ମୀକି ବୋଲାଏ; ମାତ୍ର କୁରୁପା ପରି ଦିନେ ପ୍ରେମ ପାଗଳ ରସିକ ଜଣେ ଯେ ଗୋରୁ ପାଳୁଥିପାଏ, ନ ଜାଣିବା ଲୋକ ସତ କରିବେ ନାହିଁ ।

ମଫସଲ ନଳପଡ଼ା ଗାଁକୁ ଅନେକ ଲୋକ ଆସି ଯାଇଛନ୍ତି; କିନ୍ତୁ କୁରୁପା ପରି କିଏ ଆସି ଯାଇ ନାହିଁ । କୁରୁପା ଆସିଥିଲା ଯେଉଁ ଦିନ ସେ ଦିନ ଝଡ଼ ତୋଫାନ ହୋଇଥିଲା । ସଂସାର ଭାଙ୍ଗିବ ବୋଲି ଲୋକେ ମନେକରିଥିଲେ । ସଂସାର ନ ଭାଙ୍ଗି ତାର କେତେ ମାସ ପରେ କୁରୁପାର ସଂସାର ଭାଙ୍ଗିଗଲା--ତାର ବାପ ମା ଗ୍ଭଲିଗଲେ । ପୁଣି, କୁରୁପା ଯେଉଁ ଦିନ ଗଲା ସେଦିନ ଗୋଟାଏ ଖଣ୍ଡ ପ୍ରଳୟ ଭିତରେ ଗଲା । ଉଣିଶି ଶହ ଏଗାର ସାଲ ଶେଷକୁ ଯେଉଁ ତେରଦିନିଆ ଝଡ଼ ଓଡ଼ିଶାର ବଡ଼-ବଡ଼ ଉଆସ ଓ ପ୍ରାସାଦ ଭିତରେ ସୌଖୀନ ମଣିଷଙ୍କୁ ଦୋହଲାଇ ପକାଇ-ଥିଲା, ସେହି ତୋଫାନ କୁରୁପା ସହି ପାରିଲା ନାହିଁ । ତାର ଗାଈ ତେର ଦିନକାଳ ଦାଣ୍ଡକୁ ବାହାରିପାରିଲେ ନାହିଁ । ଦୀର୍ଘ ତେର ଦିନକାଳ ସେ ଗାଈଙ୍କ କାନ ପାଖେ ମୁହଁ ରଖି ମନ କଥା କିଛି କହିପାରିଲା ନାହିଁ । ଗାଁରେ କେତେ ଲୋକଙ୍କ ଘରେ ପାଣି ପଶିଲା, ବାଡ଼ ଭାଙ୍ଗିଲା, ଗାଁ ବାହାରେ ଯେ ମାଟି କୂଡ଼ଆଟି ଥିଲା ତାହା ଆଦୌ ଠିଆହୋଇରହି-ପାରିଲା ନାହିଁ । ଦିନେ ସକାଳେ ଦେଖାଗଲା ଘର ଭାଙ୍ଗି ତଳେ ମିଶି-ଯାଇଛି, କୁରୁପା ପାଖଆଖରେ ନାହିଁ । କୁରୁପା କାହିଁ ବୋଲି ଚହଳ ପଡ଼ିଗଲା । ଲୋକେ ଲାଗି ମାଟି ଉଠାଇ କୁରୁପାକୁ ବାହାରକୁ ପାଇଲେ । ସେ ଶୋଇଥିଲା । ସେ ଆଉ ଉଠିବା ପାଇଁ ଶୋଇ ନ ଥିଲା । ଲୋକେ ଚେଷ୍ଟା କଲେ, ସେ କିନ୍ତୁ ଉଠିଲା ନାହିଁ । ତା ଗୋଡ଼ତଳେ ହଳେ କଉଡ଼ି ଓ ମୁଣ୍ଡ ତଳେ ଲୁଗାର ଗୋଟିଏ ବୁଜୁଲା ଥିଲା । ବୁଜୁଲା ଫିଟାଯାଇ ଦେଖାଗଲା ତାହାର ଭିତରୁ ହଠାତ୍ ଚମତ୍କାର ବିଦ୍ୟା ପରି କେତେ କଣ ଜିନିଷ ବାହାରିଲା ! ସେଥିରୁ ମିଳିଲା ଗୋଟାଏ ନୂଆ ବଟୁଆ, ଗୋଟାଏ ଶିଙ୍ଗ ପାନିଆ, ଦର୍ପଣ, ଲୁଗା, ଚୂନଖାଇ, ଗୁଆକାତି, ଆଉ ଦି' ମୁଠି ଭଙ୍ଗାକାଚ !

ଜଡ଼ା କୁରୂପା—ଗୋରୁ କୁରୂପା ଘରେ ଏ ଜନଷ ପୁଣି କଣ ? କଏ କଏ କହିଲେ କୁରୂପା ଟେଁଶ୍ୱା କରିଥିଲା; କିନ୍ତୁ ଗୁଳଣି ବର୍ଷ ତଳର କଥା ସମସ୍ତେ କ ଜାଣନ୍ତି ? ଗୁଳଣି ବର୍ଷ ତଳେ କୁରୂପାର ଯୌବନ ପ୍ରେମ ଯେତେବେଳେ ମହାନଦୀ ସ୍ରୋତପରି କୂଳ ଲଙ୍ଘି ଗୁଳି-ଥିଲା, ସେତିକିବେଳେ ସେ ତାହା ସଜେଇ ରଖିଥିଲା । ସେହି ସ୍ରୋତରେ ଯେତେବେଳେ ସେ ଜଳକେଳି କରୁଥିଲା, ପ୍ରାଣର ବଂଶୀ ଯେତେବେଳେ ବାଜୁଥିଲା, ସ୍ୱପ୍ନପରି ତାହା ସବୁ କଣିପକାଇଥିଲା । ସେତିକିବେଳେ ତାର କଳ୍ପନାର ଦେବୀ ଉଦ୍ଦେଶ୍ୟରେ ଜୀବନଟାକୁ ଉତ୍ସର୍ଗ କରି ଦେଇ-ଥିଲା । ତାହାପାଇଁ ସେ ଭାବ ଭାବ ରାତି ଶୋଉ ନ ଥିଲା କ ଦିନରେ ଥିର ହୋଇ ରହୁ ନ ଥିଲା । ଏଇ ଜନଷ ଧରି ସେ ତା’ ପାଇଁ ସଜ ହେଉଥିଲା; କିନ୍ତୁ ତାର ପ୍ରେମର କୁଞ୍ଜ ଅକାଳରେ ଶୁଖିଗଲା । ଜଡ଼ା ବୋଲି ତାର ପ୍ରାଣର କଥା କିଏ ବୁଝିପାରିଲା ନାହିଁ । ସେ କଥା କହି ପାରିଲା ନାହିଁ ବୋଲି ତା ପ୍ରାଣର ପିପାସା ପ୍ରାଣରେ ମରିଗଲା । ଏ ଅବୁଝା ସଂସାରକୁ ସେ ଭିନ୍ନ ଆଖିରେ ଦେଖିଲା । ସେହି ଦିନୁ ମଣିଷଙ୍କୁ ସେ ମୁହଁ ଟେକି ଚାହିଁଲା ନାହିଁ, ମଣିଷ ଜାତି ପ୍ରତି ତାର ଘୃଣା ହେଲା !!

ଶେଷରେ, ଯେତେବେଳେ ଜଡ଼ା କୁରୂପାର ରଇ ନଳିପଡ଼ା ମଶାଣିରେ ଶିଖାଟେକ ଜଳିଉଠିଲା, ତାର ସେଇ ବୁଜୁଳାଟିକୁ ସେଥିରେ ଥୋଇଦିଆଗଲା ! ଏହିପରି ଭାବରେ ଗୋଟିଏ ମୂକ ପ୍ରାଣ ପ୍ରେମର ପ୍ରତି-ପ୍ରେମ ନ ପାଇ ସଂସାରର ଅଜଣା ଅଚିହ୍ନା କୋଣରେ ନଳିପଡ଼ା ପଲ୍ଲୀ ଭିତରେ ଜୀବନଲୀଳା ଶେଷ କଲା ।

# ଘନ ଦରଜୀର ଜମି

ଘନ ଦରଜୀ କହେ— ମୋର ଜମି ଅଛି; କିନ୍ତୁ ସେଥିରେ ମୁଁ କେବେ ପାଣି ମଡ଼ାଏ ନାହିଁ, ଖତ ଲଗାଏ ନାହିଁ, ବିହନ ବୁଣେ ନାହିଁ, ଅଥଚ ଫସଲ ପାଏ ! ସେ ଫସଲ ପୁଣି ଖାଣ୍ଟି ଫସଲ । ସେଥିରେ ମଳଧୂଳି କିଛି ନ ଥାଏ । ଏକଥା କହିଲା ବେଳେ ଘନ ଦରଜୀ ତାର ସିଲେଇକଳ 'ସିଙ୍ଗର ମେସିନ୍' ପାଖେ ସିଲେଇ କରୁଥାଏ । ସିଲେଇ କଳ ପ୍ରତିମୁହୂର୍ତ୍ତରେ, ପ୍ରତିସେକେଣ୍ଡରେ ଘଡ଼ ଘଡ଼, ଘଡ଼ ଘଡ଼ ହୋଇ ଚାଲିଥାଏ; ଆଗକୁ ସିଲେଇ ଜିନିଷ କୁଢ଼େଇ ହେଲାପରି ପଡ଼ିଯାଉଥାଏ । କେତେବେଳେ ସେ ଛୁଞ୍ଚିରେ ସୂତା ଗଳାଉଥାଏ, କେତେବେଳେ କଇଞ୍ଚି ଲଗାଇ କନା କାଟି ପକାଉ-ଥାଏ, କେତେବେଳେ ବା ଭାଙ୍ଗି ଦେଇ ମୋଡପକାଉଥାଏ । ଏସବୁ ଭିତରେ ସେ ଜମି ଜମା, ଭୂସଂସ୍କାର ବିଷୟରେ ଲୋକଙ୍କୁ ନାନା ତଥ୍ୟ କହୁଥାଏ । ଲୋକେ ତା କଥା ଶୁଣି କିଛି ବୁଝିପାରନ୍ତି ନାହିଁ, ସେ କିନ୍ତୁ ଠୋ ଠୋ ହସେ । ସେ କହେ—ବାବୁ, ତୁମେ ବୁଝୁ ନାହଁ ବୋଲି ମୋର ଦୁଃଖ ନାହିଁ; ଦୁଃଖ ହେଉଛି, ଏ ରାଜ୍ୟକୁ ଯେ ଚଳାଉଛି ସେ ବୁଝିପାରୁ-ନାହିଁ । ବୁଝିବାର ଗୁରୁ ଦାୟିତ୍ୱ ନେଇ ଯେ ଆସିଛି ତାର ଏ ବିଷୟରେ କିଛି ଧାରଣା ନାହିଁ !

ଏଠାରେ ଘନ ଦରଜୀର ଟିକିଏ ପରିଚୟ ଦେଲେ ଚଳିବ । ମାନଗୋବିନ୍ଦପୁରର ମକଦ୍ଦମ ବଂଶର ଗୌରବ ରବି ଅସ୍ତ ହୋଇ ଆସିଲା ବେଳକୁ ଘନଶ୍ୟାମ ଭରମଲ୍ଲଙ୍କୁ ବୟସ ମୋଟେ ପାଞ୍ଚ ବର୍ଷ । ବଂଶର ଦାୟାଦ ରୂପେ ସେହି କେବଳ କୁଳରକ୍ଷା କରିବାକୁ ରହିଲେ । ବିଲରୁ ଧାନକଟା

ସରଳା ପରେ ବେଳେ ବେଳେ ନଡ଼ା ଦେହରୁ କରମି ଗଛ ଉଠିଥାଏ, ସେଥିରେ ବି ଧାନର ଗୌରବ ଦେଖାଇ ଦ'ଗୁଚ୍ଛା ଧାନଶୀସା ଫଳେ । କରମି ଗଛର ସେହି ଧାନ ଶୀସାର ଗୌରବ ପରି ଘରମଲ୍ଲ ବଂଶର ଗୌରବ ହେଉଛନ୍ତି ଘନଶ୍ୟାମ । ଘନଶ୍ୟାମ ଯୌବନରେ ପଦାର୍ପଣ କଲା-ବେଳକୁ ତାଙ୍କ ନାଁରେ ଅଛି ଆଉ ବଲ ଦୁଇ ମାଣ । ତଥାପି ସେ ଜମିଦାର ! ତଥାପି ସେ ମକଦ୍ଦମ !! ତଥାପି ସେ ଭୂମିବାନ୍ ଲୋକ ବୋଲି ଆଗରୁ ଯେ ଗୌରବ ଥିଲା ତାହା ମଳିନ ପଡ଼ି ନ ଥିଲା । ଗାଁରେ ଯାତ୍ରା, ସୁଆଙ୍ଗ ଦେଖେଇବା ପାଇଁ ଯାତ୍ରାଦଳ, କୋଳାଭାଟ ଆଇଲେ ପ୍ରଥମେ ତାଙ୍କର ଦୁଆରେ ଠିଆ ହୁଅନ୍ତି; ଅଥଚ ତାଙ୍କ ବଂଶର ସମଗ୍ର ଜମିର ମାଲିକ ହୋଇ ଯେଉଁମାନଙ୍କ ଘରେ ରାତିରେ ଆଲୋକ ଲିଭେ ନାହିଁ ସେମାନେ 'ମକଦ୍ଦମ' ନୁହନ୍ତି ! ଗାଁର ନବାଗତ କେହି ସେମାନଙ୍କ ଦୁଆରକୁ ଭୁଲରେ ଆଗ ଯାଆନ୍ତି ନାହିଁ, ଏଠାରୁ କରିଆ ଗାମୁଛା ଖଣ୍ଡେ ଶାଢ଼ୀ ରୂପେ ପାଇଲେ ମଧ୍ୟ ସେଥିରେ ଗୌରବ ଅନୁଭବ କରନ୍ତି; ଅଥଚ ଏଠି ଦାଣ୍ଡ ଦୁଆରର ପଥର ପାହାଚରୁ ଖଣ୍ଡିଏ ଖଣ୍ଡିଏ କଟା ମୁଗୁନି ପଥର ନ ବିକିଲେ ଘନଶ୍ୟାମଙ୍କ ଘରର ଦୈନିକ ଖର୍ଚ୍ଚ ଚଳୁ ନ ଥିଲା !

ଗାଁର ବୁଢ଼ା ବୁଢ଼ା ଲୋକେ କହନ୍ତି—୧୮୯୮ ସାଲକୁ ଘରମଲ୍ଲ ବଂଶର ସୌଭାଗ୍ୟର ମଧ୍ୟାହ୍ନ । ସେତେବେଳେ ସେ ନାଁ ଧଇଲେ ଗର୍ଭିଣୀ ଗାଈ ବାଟ 'ଛାଡ଼ିଦେଉଥିଲା । କଥା ଅଛି—କେବେ ଏହି ମକଦ୍ଦମ ବଂଶର ବିରୋଧୀ ପଡ଼ିଶା ଗାଁ ଗୋବର୍ଦ୍ଧନପୁରର ଶିବସିଂହ ବଂଶ ସହିତ ଶତ୍ରୁତା ଥିଲା । ଥରେ ବୁଢ଼ା ଶିବସିଂହ ନାତିର ବିବାହ ଭୋଜିରେ ସେହି ଖଣ୍ଡ-ମଣ୍ଡଳର ଲୋକଙ୍କୁ ନିମନ୍ତ୍ରଣ କରିଥିଲେ । ନିମନ୍ତ୍ରିତ ଲୋକେ ମାନଗୋବର୍ଦ୍ଧନ-ପୁର ବାଟ ଦେଇ ଫେରିଲାବେଳେ ମକଦ୍ଦମ ଘର ଯେଉଁ ଚର୍ଚ୍ଚା କଲେ ସେଥିର ହିସାବରୁ ଜଣାଯାଇଥିଲା ଯେ ଶିବସିଂହ ଘର ଭୋଜି ଖର୍ଚ୍ଚର ଦେଢ଼ ଗୁଣ ସେ ଖର୍ଚ୍ଚ କରିଛନ୍ତି; ଅଥଚ ସେହି ବଂଶର ଶେଷ ଦାୟାଦ ହେଉଛନ୍ତି ଏଇ ଘନଶ୍ୟାମ ଯେ କି ସିଲେଇ ମେସିନରେ କାମ କଲାବେଳେ ଲୋକଙ୍କୁ ଭୂସମ୍ପତ୍ତିର ବିଷୟରେ ବୁଝାଉଛନ୍ତି !

'ମକଦ୍ଦମ' ପଦବୀରୁ 'ଦରିଦ୍ର' ପଦବୀ ଘନଶ୍ୟାମଙ୍କୁ କେବେ ମିଳିଲା, କପରି ମିଳିଲା ତାହାର ଏକ ଇତିହାସ ଅଛି । ବଂଶର ଶେଷ ସ୍ଥାବର ସମ୍ପତ୍ତି ଦୁଇ ମାଣ ବିଲକୁ ମହାଜନଙ୍କ ହାତରୁ ଘନଶ୍ୟାମ କୁଟୁମ୍ବ ପୋଷିପାରିଲେ ନାହିଁ । ଜମିକୁ ମହାଜନଙ୍କ ହାତରୁ ହାତକୁ ଆଣି ଚାଷ କରିବାକୁ ଗଲାବେଳେ ଦେଖିଲେ ଦେଉଳଠାରୁ ମୁଖଶାଳା ଟାଣ । ହଳେ ବଳଦ, ପଟେ ଲଙ୍ଗଳ, ଚାଷର ଅନ୍ୟାନ୍ୟ ସରଞ୍ଜାମ, ବିହନ ଓ ଖତକୁ ହିସାବ କରି ଦେଖାଗଲା ସମଗ୍ର ଜମିର ମୂଲ୍ୟର ଅଧା ଉପରକୁ ତାହା ଉଠୁଛି । ତାକୁ ସେ ପଣା ବୋଲି ପିଇପାରିଲେ ନାହିଁ କି ପାଣି ବୋଲି ଫିଙ୍ଗି-ପାରିଲେ ନାହିଁ । ଜଣକ ସହିତ ସାଥି ହୋଇ ଚାଷ କଲେ । ଯାହା ମିଳିଲା ଦୁଇ ମାସର ଭରଣପୋଷଣକୁ ନଅଣ୍ଟ ! ଅଥଚ 'ମକଦ୍ଦମ', 'ଭୂମିବାନ୍', 'ଜମିଦାର'—ଏ ଉପାଧି ତାଙ୍କୁ ଛାଡ଼ିଲା ନାହିଁ !

ମାନଗୋବିନ୍ଦପୁରର ମକଦ୍ଦମ ଦିନେ ଗଲେ ଚାକିରୀ ଖୋଜି । ହୀରାକୁଦରୁ ରାଉରକେଲା ପର୍ଯ୍ୟନ୍ତ ବୁଲିଲେ । କଟକରୁ ଭୁବନେଶ୍ୱର ପର୍ଯ୍ୟନ୍ତ ପଚିଶ ଥର ଧାଇଁଲେ । ଏ ଭିତରେ ତାଗିଦା ଆସିଲା ସରକାରର ଖଜଣା ବାକି ତିନି ବର୍ଷର । ମୁଣ୍ଡରେ ବଜ୍ର ପଡ଼ିଲା, ଖଜଣା ନ ଦେଲେ ସବୁ ଜମି ନିଲାମ ହେବ । ଖାଲି ତାଙ୍କର ହେବନାହିଁ, ଗାଁର ଆଉ କେତେ ଲୋକଙ୍କର ବି ହେବ । ଗାଁକୁ ସେ ଫେରିଯାଇ ଗୋଟାଏ ସଙ୍ଗଠନ ଆରମ୍ଭ କଲେ । ସଙ୍ଗଠନର ନାଁ ଦେଲେ 'ଖଜଣା ବାକି ସମିତି' । ସମିତିର ଉଦ୍ଦେଶ୍ୟ ହେଲା କପରି ଖଜଣା ଛାଡ଼ ପାଇବେ, ଫଳରେ ଜମି ବିକିବେ ନାହିଁ । ସେଥିପାଇଁ ସତ୍ୟାଗ୍ରହ ଦରକାର । ସମିତିର ମାନ୍ତ ଶୁଣିବାକୁ ସମସ୍ତଙ୍କୁ ସୁଖ ଲାଗିଲା; କିନ୍ତୁ କାର୍ଯ୍ୟକ୍ଷେତ୍ରରେ ଦେଖାଗଲା, ଯେଉଁ ଦିନ ନାଏବ ତହସିଲଦାର ଖଜଣା ନ ଦେଲେ ଜମିନିଲାମ ହୋଇ-ଯିବ ବୋଲି ଗାଁରେ କହିଲେ, କିଏ କଂସା ଥାଳିଆ, କିଏ ଝିଅ ବୋହୂଙ୍କ ହାତର ଖଡ଼ୁ, ନାକର ଅଳଂକାର ବିକି, ବନ୍ଧା ଦେଇ ବୁଡ଼ିଯାଉଥିବା ଜମିକୁ ରକ୍ଷାକଲେ; କିନ୍ତୁ ଘନଶ୍ୟାମଙ୍କର ସେତକ ବି ନ ଥିଲା । ଦି'ବର୍ଷ ତଳୁ ଘରେ ଖାଇବା ପାଇଁ ସେ ଗୋଟାଏ ନୂତନ ବାସନ ଆବିଷ୍କାର କରିଥିଲେ । ତାହା ହେଉଚି, ଘରେ ଦି' ଚାରିଟା ଗ୍ରେଟ ଗ୍ରେଟ ଗାତ ଖୋଳି, ତାରି ଉପରେ ପତ୍ର ପକେଇ ଖାଇବା ପିଇବା ବ୍ୟବସ୍ଥା କରୁଥିଲେ ।

ତାଳ ବଦଳରେ ମାଟିର କୁଣ୍ଢା ଥିଲା ଏକମାତ୍ର ପାତ୍ର । ବିଧବା ଆଉ ସଧବା ଭିତରେ ମକଦ୍ଦମାଣୀଙ୍କ ବେଶର କିଛି ପ୍ରଭେଦ ନ ଥିଲା ।

ମକଦ୍ଦମ ଘନଶ୍ୟାମ କରିବେ କଣ ? ଗତିରେ ନଦ ହେଲା ନାହିଁ, ବନରେ ଶାନ୍ତ ପାଇଲେ ନାହିଁ । ଜମି କଣିବାକୁ ଗ୍ରାହକ ଯେ ନାହାନ୍ତି ତା' ନୁହେଁ; କିନ୍ତୁ ବିକି ସେ ଚଳିବେ କମିତି ?

ଏ ଘଟଣାର ମାସକ ପରେ ଦେଖାଗଲା, ଘନଶ୍ୟାମ ଗୋଟିଏ ସିଲେଇକଳ ନେଇ ଦୁଆରେ ବସିଛନ୍ତି । ପ୍ରଥମେ ପ୍ରଥମେ ତାଙ୍କୁ ଟିକିଏ ଅଡୁଆ ବୋଧହେଲା । ଦାଣ୍ଡକୁ ମୁହଁ ଟେକି ଗୁହାଁବାକୁ ଲଜ୍ଜା ବୋଧକଲେ; କିନ୍ତୁ ଲଜ୍ଜା କ୍ରମେ ଘୁଞ୍ଚିଗଲା —ଯେତେବେଳେ କାମ ପରେ କାମ ଆସି ପହଞ୍ଚିଲା, ଯେତେବେଳେ କାମର ବାହୁଲ୍ୟରେ ଲୋକଙ୍କୁ ଫେରେଇବାକୁ ସେ ବାଧ୍ୟ ହେଲେ ସେତିକବେଳେ ସେ କହିଲେ—ମୋର ଜମି ଅଛି; କିନ୍ତୁ ସେ ଜମିରେ ମୋର ପାଣି ମଡ଼ାଏ ନାହିଁ, ଖତ ଦିଏ ନାହିଁ, ବିହନ ବୁଣେ ନାହିଁ, କିନ୍ତୁ ଫସଲ ଆଦାୟ କରେ; ତଥାପି ମୁଁ ବର୍ତ୍ତମାନ ଭୂମିହୀନ ଲୋକ ।

କିନ୍ତୁ ପଡ଼ଶାଘରର ରମିବୋଉ, ବିଧବା ଗୁଳିଣି, ପୁଅ ନାବାଳକ ଦୁଇ ମାଣ ଜମିରେ ସେ ଭୂମିବାନ୍ ବୋଲେଇ ସରକାରଙ୍କୁ ଖଜଣା ଗଣୁଛି ! ରମିବୋଉ ଖଜଣା ଦେଲାବେଳେ ଘନ ଦରଜୀ ହସେ, କହେ—ସରକାର ତୋ ଜମିରେ ସିନା ଖଜଣା ପକାଇଛନ୍ତି, ମୋ ଜମି ପାଖ ମାଡ଼ିବେ ନାହିଁ । ଦିନକୁ ପାଞ୍ଚ ଟଙ୍କା ହିସାବରେ ମାସକୁ ଦେଢ଼ଶ' ପାଉଛି ମୁଁ । ବର୍ଷକୁ ତୁ ପାଉଚୁ ଗୁଳିଣି ଗୌଣୀ, ସେଇଥିରୁ କିଛି ବିକି ଖଜଣା ଦେଉଚୁ । ତେଣୁ କେଉଁଟା ଜମି କେଉଁଟା ଜମି ନୁହେଁ ତୁ ବୁଝ୍ । ସରକାର ଏ କଥା ବୁଝିଛନ୍ତି ବୋଲି ମୋର ଏ ସିଲେଇ ମେସିନ୍ ଜମିରେ ଖଜଣା ନାହିଁ; ଅଥଚ ସିଲେଇ ମେସିନଟା ମୋର ଦୁଇ ମାଣ ଜମି !! ଜମିର ରୂପ ବଦଳିଗଲେ ତାହା ହୁଏ ସିଲେଇ ମେସିନ, ଭଡ଼ାହୁଆ ଟାଇଲ୍ ଘର, ଗ୍ରେଷ୍ଟ ଗ୍ରେଷ୍ଟ ଚଳନକଳ, ଗ୍ରେଷ୍ଟ କ୍ରେଷ୍ଟ ହଲାର ମେସିନ୍ । ଭୂମି ବିକି ଯିଏ ଯେ ରଖିବ ସେ ହେବ ଭୂମିହୀନ ଲୋକ । ମୁଁ ଘନ ଦରଜୀ ଭୂମିହୀନ ।

# 'ଦୁଇ ଥର ପ୍ରଶ୍ନ

ସେଦିନ ବୈଦ୍ୟନାଥବାବୁ ଘରକୁ ଆସିବା ମାତ୍ରେ କାନ୍ଥରେ ଲଟକାହୋଇ-ଥିବା କାଲେଣ୍ଡରଟା ଆଡ଼କୁ ଏକ ଲୟରେ ଚାହିଁରହିଲେ ।

ସେଇ ଘର ଭିତରେ ଗୋଟିଏ ଛୋଟ ଟେବୁଲ । ଟେବୁଲ ପାଖରେ ଦୁଇଟି ଚଉକି । ପୁଣି ଘରର ଏକ ପାଖରେ ଖଣ୍ଡିଏ ଖଟ । ଖଟ ଉପରେ ପରିଷ୍କାର ଧଳା ବିଛଣା ଚଦର ବିଛାଯାଇଛି । ଡାକ୍ତରଖାନାରେ ରୋଗୀ ପାଇଁ ଯେପରି ଶେଯ ସଜାହୋଇଥାଏ, ତାହା ଠିକ୍ ସେହିପରି ଦେଖାଯାଉଛି । କାରଣ, ଖଟର ମୁଣ୍ଡ ପାଖେ କାନ୍ଥ ଆଲମାରି ଭିତରେ ଦୁଇଟି ସାନ ବଡ଼ ଚୀନାମାଟିର ଥାଳିଆ, ଦୁଇଟି ଚା' ପିଆଲା, ନେଳି ରଙ୍ଗର ଏକାପରି ଦୁଇଟି ଗ୍ଲାସ, ଗ୍ଲାସ ଉପରେ ଗୋଟାପାଡ଼ିଆ ଦୁଇଟି ଢାଙ୍କୁଣୀ—ସବୁ ଅତି ସାବଧାନତାର ସହିତ ସଜା ହୋଇପରି ରହିଛି । ଆଲମାରିର ଆଉ ଏକ ଥାକରେ କିଛି ଖାଇବା ଜିନିଷ—ଦୁଇ ଚାରିଟା କମଳା, ଗୋଟାଏ କାଚ ଜାରରେ କିଛି ବିସ୍କୁଟ ଏବଂ କାଗଜ ଢାଙ୍କୁଣୀ-ଦିଆ ଗୋଟାଏ ବଡ଼ ପାଉଁରୁଟିରୁ ଫାଳେ । ଏ ସବୁ ଦେଖିଲେ ଓ ଘରର ପରିଷ୍କାର ପରିଚ୍ଛନ୍ନତା କଥା ବିଚାରକଲେ ଯେ କୌଣସି ଲୋକ ମନେ-କରିବା ସ୍ୱାଭାବିକ ଯେ, ସେ ଭିତରେ ଜଣେ ଦୁଇ ଜଣ ଅତି ରୁଚିସମ୍ପନ୍ନ ବ୍ୟକ୍ତି ଅଛନ୍ତି ଏବଂ ହୁଏ ତ ସେମାନଙ୍କ ଜଣକର ଦେହ ବେମାର ଅଛି ।

ବୈଦ୍ୟନାଥବାବୁ ଘର ଭିତରକୁ ପଶିଆସି ଚଉକିଟାରେ ବସିପଡ଼ି କାଲେଣ୍ଡରକୁ ଚାହିଁବାର ଭଙ୍ଗୀ ଯେ ଦେଖିବ ମନେକରିବ ସେ ବହୁଦିନର

ରୋଗୀ ନ ହେଲେ ମଧ୍ୟ ହଠାତ୍ ରୋଗାକ୍ରାନ୍ତ ହୋଇପଡ଼ନ୍ତ୍ରନ୍ତି । ମୁହଁରେ ସରସତା ନାହିଁ । କିଛି ଗୋଟାଏ ଗୁରୁତର ଚିନ୍ତାରେ କପାଳ କୁଞ୍ଚିତ ହୋଇଯାଇଛି । ଲଗାଇଥିବା କାମିଜର ବୋତାମ ଫିଟା ରହିଛି । ମୁଣ୍ଡରେ ସତେ ଯେପରି ଦୁଇ ତିନ ଦିନ ତେଲ ପାଣିଆ ବାଜିନାହିଁ !

କିନ୍ତୁ ସେ ରୋଗୀ ନୁହନ୍ତି । ମାସର କେତେ ଦିନ ଆଉ ବାକି ଅଛି କାଲେଣ୍ଡରକୁ ଚାହିଁ ଗଣନା କରୁଥିଲେ । ଠିକ୍ ଏହିପରି ସମୟରେ ଘରର ଦକ୍ଷିଣ ବଟରୁ ବୋଷେଇ ଘରୁ ମାଳତୀ ଆସି ଚଉକାର ପଛପଟେ ତାଙ୍କ ମୁଣ୍ଡ ଉପରକୁ ଝୁଙ୍କିଲାପରି ଠିଆହୋଇ ପଚାରିଲେ—ଆଜି କ'ଣ ଚଞ୍ଚଳ ଛୁଟି ହୋଇଗଲା ? ଏତିକି କହି ମୁହଁ ଉପରେ ପଡ଼ିଥିବା ଦୁଇ ଚାରିଟା କେଶଗୁଚ୍ଛକୁ ଉପର ଆଡ଼କୁ ସାଉଁଳେଇ ଦେଇ ଉତ୍ତରକୁ ଅପେକ୍ଷାକରି ରହିଲେ । ଉତ୍ତର ମିଳିଲା – ଛୁଟିଟା ଯେ ହେଲା ଏ କଥା ସତ; କିନ୍ତୁ ଛୁଟି ପରେ ଆଉ ଯିବାକୁ ହେବ ନାହିଁ । ତାଙ୍କ ମୁହଁରୁ ଶୁଣୁ ଶୁଣୁ ମାଳତୀ କହିଲେ – ଆଗରୁ ତ ଆଶଙ୍କା କରୁଥିଲି; କିନ୍ତୁ ଟିକିଏ ବିଳମ୍ବ ନ ହୋଇ ଛୁଟିଟା ଚଞ୍ଚଳ ମିଳିଗଲା । ଏଥିପାଇଁ ଏତେ ଭାବୁଛ କ'ଣ ?

ଦୈତ୍ୟାରି ବାବୁ ଠୋ ଠୋ ହସି ଉଠିଲେ । ମେଘ ଆଢ଼େଇ ହୋଇଗଲେ ଚନ୍ଦ୍ର ତାର ଆଲୋକ ଦେବାରେ ଯେପରି କୁଣ୍ଠିତ ହୁଏ ନାହିଁ ଦୈତ୍ୟାରି ବାବୁଙ୍କ ହସଟା ଠିକ୍ ସେହିପରି ହେଲା । କିନ୍ତୁ ଗୋଟାଏ ଚିନ୍ତାର ମେଘ ମୁଖମଣ୍ଡଳକୁ ଘୋଟିଯାଇଥିଲା । ସଙ୍ଗେ ସଙ୍ଗେ ତାକୁ ଦୂର କରି କହିଲେ—ବ୍ୟସ୍ତ ? ମୁଁ କେବେ ବ୍ୟସ୍ତ ହୁଏ ନାହିଁ । କେବଳ ବସି ଦେଖୁଥିଲି ମାସ ଯେତେବେଳେ ଶେଷ ହୋଇ ନାହିଁ ବାକି ଦରମାଟା କେବେ ମିଳିବ; ଆଉ ଆମେ କେବେ ଏ ଘର ଛାଡ଼ିବାକୁ ହେବ ।

ଏ ଘଟଣାର ବର୍ଷେ ପରେ ।

କାଳସ୍ରୋତରେ ଘଟଣାଚକ୍ର ବୁଲିଯାଇଛି ।

ଭଦ୍ରଖ ଉପକଣ୍ଠର ଏକ ଛୋଟ କୋଠରୀ ଭିତରେ ସେହି ଦୈତ୍ୟାରି ବାବୁ ସେହିପରି ଚଉକି ଟେବୁଲ ପକାଇ ବସିଛନ୍ତି; ମାତ୍ର ସେତେବେଳକୁ ସେ ଦୁଇ ଜଣ ହୋଇ ନାହାନ୍ତି, ତିନି ଜଣ ହୋଇଗଲେଣି । ଶ୍ରୀମତୀ ମାଳତୀ ଚାରି ମାସର ଛୋଟ ଶିଶୁଟିକୁ କୋଳରେ ଧରି ଦିନେ ହସି ହସି ଆସି କହିଲେ—ଦେଖୁଚ ନା, ଏ କୁନି କେବେ ମୋତେ ଛାଡ଼ି ରହିବ ?

ଦୈତ୍ୟାରିବାବୁ ଠିକ୍ ସେଇପରି ହସି ହସି କହିଲେ—ରହିବ, ନିଶ୍ଚୟ ରହିବ । ଅଭ୍ୟାସରେ ସବୁ ହୋଇପାରିବ । ଦେଖୁଚ ନା, ଆମର ଏ କୁକୁରଟା ପ୍ରଥମେ ପ୍ରଥମେ ବିଲେଇ ଛୁଆଟାକୁ ଦେଖିଲେ କାମୁଡ଼ି ଗୋଡ଼ାଉଥିଲା । କେତେଟା ଦିନ ଆମର ଚେଷ୍ଟା ଓ ତାର ଅଭ୍ୟାସ ଫଳରେ ଏବେ ସେ ତାକୁ କୋଳରେ ଧରି ଶୋଉଚି । ତୁମେ ତ ଜାଣ, ବିରାଡ଼ି ଆଉ କୁକୁରକୁ ଏକାଠି ରଖିବାର ଯୋଜନା କଲାବେଳେ ନିତାନ୍ତ ଅସମ୍ଭବ ବୋଲି ତୁମର ଆଡ଼ୁ ଘୋର ଆପତ୍ତି ହୋଇଥିଲା ।

ମାଳତୀ କହିଲେ—ତୁମର ଏ ଢଙ୍ଗର କଥା କେବେ ଯିବ ନାହିଁ । ପଶୁ ଯାହା କଲା ମଣିଷ କ'ଣ ତାହା କରିବ ? ମଣିଷର ପରି ବୁଦ୍ଧିବୃତ୍ତି ଅଛି ?

ବୁଦ୍ଧିବୃତ୍ତି ଅଛି ବୋଲି ତ ମଣିଷ ବେଳେ ବେଳେ ପଶୁକୁ ଟପିଯାଏ; ଏହା କହି ଦୈତ୍ୟାରି ବାବୁ ପୁଣି ହସି ଉଠିଲେ । କହିଲେ—ତୁମେ କଣ ଏ ପର୍ଯ୍ୟନ୍ତ ଏ କଥା ବୁଝିପାରିଲ ନାହିଁ ? କଟକରୁ ଭଦ୍ରଖ ଯାଏଁ ଆସିଲ, ରଙ୍ଗୀନ୍ ଶାଢ଼ୀରୁ ଯାଇ ଦୋସିଆଁ ଶାଢ଼ୀରେ ରହିଲ, ଏ ଛୋଟ ଶିଶୁଟି ମୁହଁରେ ମନମୁତାବକ କ୍ଷୀର ଟୋପାଏ ଦେଇପାରିବ କି ନାହିଁ ସେ କଥା ଚିନ୍ତା କରୁଚ, ଏସବୁ କାହା ଯୋଗୁଁ ? ମଣିଷ ଯୋଗୁଁ ନା ପଶୁ ଯୋଗୁଁ ? ମଣିଷଠୁଁ ପଶୁ ବରଂ ଭଲ । ମୁଁ ଶୁଣିଚି ଓଡ଼ିଶାର ଜଣେ ବିଶିଷ୍ଟ ନେତା କୂଟମିତ୍ରରେ ପାରି ନ ଉଠି ଯେତେବେଳେ ନିଃସଙ୍ଗ ଭାବରେ ଘର ଭିତରେ ରହିଲେ ଆଉ ମଣିଷ ପାଖକୁ ବେଶି ଗଲେ ନାହିଁ—ତାଙ୍କର ସାଥି

ହୋଇଥିଲେ ଦୁଇଟି କୁକୁର, ଗୋଟିଏ ଶୁଆ, ଗୋଟିଏ ବିଲେଇ, ଗୋଟିଏ ହରିଣ, ଆଉ ଗୋଟିଏ ଶ୍ରେଷ୍ଠ ବାଘପିଲା । ସେ କାହିଁକି ଏପରି ଚିଡ଼ିଆ-ଖାନାରେ ଅଛନ୍ତି ବୋଲି ପଚାରିବାରୁ କୁଆଡ଼େ ହସି ହସି ଉତ୍ତର-ଦେଇଥିଲେ—ମଣିଷଠୁ ଏମାନେ ଭଲ । ମଣିଷ ମଣିଷକୁ ଭୁଲିଯାଏ ସୁବିଧା ପାଇଲେ; କିନ୍ତୁ ଏମାନେ ସେପରି ନୁହନ୍ତି ।

ମାଳିମା କହିଲେ—ବୁଝିଲି ବୁଝିଲି । ତୁମର ଏ କହିବା ଛଟା ବୁଝୁଛି । ଏବେ କହ ମତେ ଗୁଡ଼ ଏ ପିଲା କିମିତି ରହିବ ।

କିମିତି ରହିବ ? ତହିଁର ମୁଁ ଏକ ଯୋଜନା କରିଛି—ଏହା କହି ଦୈତ୍ୟାରି ମାଳିମାଙ୍କ ମୁହଁକୁ ଚାହିଁ ପୁଣି ଠୋ ଠୋ ହସିଲେ ।

ମାଳିମାଙ୍କୁ ହସଟା ଅସହ୍ୟ ହେଲା । କହିଲେ—ପୁଣି ସେଇ ଥଟ୍ଟା —କହି ମୁହଁକୁ ବୁଲାଇଦେଲେ ।

ଦୈତ୍ୟାରିବାବୁ ସ୍ୱରକୁ କଅଁଳ କରି କହିଲେ—ଥଟ୍ଟା ନୁହେ ମାଳିମା, ଥଟ୍ଟା ନୁହେଁ । ସତରେ ଯୋଜନା କରିଛି । ଯୋଜନା ଛଡ଼ା ଏ ଦେଶର ଗତି ନାହିଁ । ରୁଷିଆର ସାତବର୍ଷିଆ ଯୋଜନା କଥା ତୁମକୁ ବୁଝାଇଥିଲି । ଯୋଜନା ଫଳରେ ସେଠାର ମାଆମାନେ ଆଉ ପିଲାଙ୍କୁ ଚନ୍ଦ୍ର ଦେଖାଉ ନାହାନ୍ତି, ପିଲାକୁ ଧରି ଚନ୍ଦ୍ରଲୋକରେ ଯାଇ ପହଞ୍ଚିବାକୁ ବାହାରିଲେଣି । ଆଉ ଆମ ଦେଶର ପଞ୍ଚବାର୍ଷିକ ଯୋଜନା କଥା ତ ଶୁଣିଥିବ । ମିଛ ?

ହଁ, ହଁ, ସେ କଥା ବନ୍ଦ କର । କହ, ପୁଅକୁ ମୁଁ ଛାଡ଼ି କିମିତି ରହିବି—ଏହା କହି ମାଳିମା ବସି ରହିଲେ ।

ବୈତ୍ୟାଣି ସ୍ତ୍ରୀଙ୍କ କଥାରୁ ତଥ୍ୟ ଆବଷ୍ଟାର କଲାପରି ଉତ୍ତର-ଦେଲେ—ଓହୋ, ଏକଥା କହୁ ନାହିଁ ! ଏ କମିତି ଚଳିବ ତୁମ ବିନା ନୁହେଁ ଯେ ତୁମେ କମିତି ଚଳିବ ସ୍ତ୍ରୀ ବିନା, ସେ କଥା ପଚାରୁଛ ନା ?

ମାଳଶ୍ରୀ ପିଲାଟିକୁ କୋଳକୁ ବଢ଼ାଇଦେଇ କହିଲେ—ଏତେ ଅଛା ନକର ଧଇଲ ସ୍ତ୍ରୀକୁ, ମୁଁ ଯାଏ । ଏହା କହି ସେ ନଯାଇ ଠିଆ-ହୋଇ ରହିଲେ ।

ବୈତ୍ୟାଣି ବାବୁ ପିଲାକୁ ଦୁଇ ହାତରେ ଧରିନେଇ ଟିକଏ ବ୍ୟଙ୍ଗ ସ୍ୱରରେ କହିଲେ – ମାଳଶ୍ରୀ, ତୁମେ ଯେ ଭୁଲିଯାଇଚ ମୁଁ ପୁରୁଷ ବୋଲି ! ଭୁଲି ଯିବାଟା ସ୍ୱାଭାବିକ । ପୁରୁଷ ହୋଇଥିଲେ କି ମୁଁ ଆଜି ଲୁଚି ଲୁଚି ଏ ବାଟରେ ଯିବା ଆସିବା କରୁଥାନ୍ତି ? ମୁଁ ମୁଣ୍ଡରେ ଓଢ଼ଣା ପକାଉନାହିଁ ସତ; ମାତ୍ର ଲଜ୍ଜା ପରିଚିତ ପାଖେ ଯେପରି ଆଡ଼େଇହୋଇ ଚାଲିଯାଉଛି ତାହା ଓଢ଼ଣାର ଆଡ଼ୁର ବେଶି କଡ଼ି । କଲେଜ ଜୀବନରେ ଯାହାଙ୍କ ସହିତ କାନ୍ଧକୁ କାନ୍ଧ ମିଳାଇ ଜୀବନର ବଡ଼ଦାଣ୍ଡରେ ଏକାପରି ଚାଲିବା-ପାଇଁ କଥାବାର୍ତ୍ତା କରୁଥିଲି ଆଜି ସେଇମାନଙ୍କ ପାଖରୁ ଦୂରେଇ ରହିବାକୁ ଚେଷ୍ଟା କରୁଚି । ତୁମକୁ ପାଇଲାବେଳେ ମନେ କରି ନଥିଲି ଯେ ଦିନେ କହିବାକୁ ପଡ଼ିବ ତୁମେ ଚାକିରି କରି ମୋତେ ପୋଷିବ ବୋଲି । ସମାଜ ଓ ରାଜନୀତିର ଏଇ କୃତ୍ରିମ ପରିସର ଭିତରେ ବଞ୍ଚି ରହିବାକୁ ହେଲେ ଏଇପରି ହେବାକୁ ପଡ଼େ ।

ଏତିକି କହି ବୈତ୍ୟାଣି ଆଖି ବୁଜି ଚିନ୍ତା କଲେ; କେତେ ସମୟ ମେ ସେପରି ବସି ରହିଲେ କିଛି ଜାଣିଲେ ନାହିଁ । ଆଖି ବୁଜିଲେ ଅନ୍ଧାର ଦିଶେ; କିନ୍ତୁ ତା ଭିତରେ ସେ ଗୋଟାଏ ବିରାଟ ଜଗତ ଦେଖିଲେ । ଦେଖିଲେ ବୈତ୍ୟାଣି ବୋଲି ଗୋଟାଏ ଦୁର୍ଦ୍ଧର୍ଷ ବାଳକ ସବୁବେଳେ ସବୁ କ୍ଷେତ୍ରରେ ଚହଳ ପକାଇ ଆସିଲା । ସଭାସମିତିରେ ଭଲ କହିପାରିଲା । ଲେଖାଲେଖିରେ କଲମର ଦକ୍ଷତା ଦେଖାଇଲା । ଚିନ୍ତାରେ ନୂଆ ନୂଆ ଖୋରାକ ଯୋଗାଇଲା ସାଙ୍ଗ ସାଥିଙ୍କୁ । ଛାତ୍ର ଜୀବନର ରଙ୍ଗିନ୍ ସ୍ୱପ୍ନରେ ସେ

ବିହ୍ୱଳ ହୋଇପଡ଼ିଲା । ତା ପରେ ଆସିଲା ଆଗକୁ ବାସ୍ତବ ଜଗତ । ମାଳମା ଆସି ପାଖରେ ଠିଆହେଲା । ଦୃଢ଼ତା ଶରୀର ସତ; ମାତ୍ର ଗୋଟାଏ ଆତ୍ମାରେ ସେମାନେ ବିଶ୍ୱାସ କଲେ । ଗୃହ ଜୀବନର ଯେଉଁ ପ୍ରଷ୍ଟବାଦିତା, ଯେଉଁ ମତବାଦ ତାଙ୍କୁ ଉପରକୁ ଟେକିଥିଲା ଗୃକଣି ଭିତରେ ପଶିଲା। ପରେ ତାହା ତାଙ୍କୁ କାଳ ହେଲା । ତେଣୁ ଯେଉଁ ଦିନ ସେ ମାସ ଅଧାରେ ଅଫିସରୁ ଫେରିଆସି ସେହି କ୍ଷୁଦ୍ର କୋଠରୀ ଭିତରେ କାଲେଣ୍ଡରକୁ ଚାହିଁ ଦିନ ଗଣୁଥିଲେ ଧୀରେ ଧୀରେ ସେହି ସମୟକୁ ସେ ଫେରିଆସିଲେ । ତା ପରେ ତାଙ୍କ ନିଦ ଭାଙ୍ଗିଗଲା । ଚମକିଲା ପରି ଆଖି ମେଲି ଦେଖିଲେ ମାଳମା ପାଖରେ ଠିଆହୋଇଛନ୍ତି । ଗୃହ ମାସର ଶିଶୁକୁ କେତେବେଳେ ସେ ଉଠାଇନେଇ କୋଳରେ ଜାକିଧରିଛନ୍ତି, ଆଉ, ଟେବୁଲ ଉପରେ ପଡ଼ିଛି ସାମାଜିକ ଶିକ୍ଷା ଟ୍ରେନିଂ ପାଇଁ ମାଳମା ଯିବାକୁ ସରକାରଙ୍କ ଆଦେଶ ପତ୍ର । ଥରେ ମାଳମାଙ୍କୁ, ଥରେ ସେଇ ସରକାରୀ କାଗଜକୁ ଚାହିଁ କହିଲେ—ତୁମ କଥା ଶୁଣି ମୁଁ ଟିକିଏ ଶୋଇପଡିଥିଲି ବୋଧହୁଏ ।

ଉତ୍ତର ମିଳିଲା — ତୁମେ ତ ସବୁବେଳେ ଏଇପରି ଚେଇଁକରି ଶୁଅ, ତୁମକୁ ଉଠେଇବ କିଏ ?

ଦୈତ୍ୟାରିଙ୍କ ଘରେ ଜନସଂଖ୍ୟା ତିନିରୁ କ୍ରମେ ଗୃହ ହେଲେ; କିନ୍ତୁ ଏ ଯେ ଚତୁର୍ଥ ଜଣକ ବଢ଼ିଲେ ଏହା ଦୈତ୍ୟାରିଙ୍କ ଯୋଜନା ଫଳରେ । ଯେଉଁ ଦିନ ସେ ନିଜର ମତବାଦ ନେଇ ଉପରିସ୍ଥ ହାକିମଙ୍କ ଦୃଷ୍ଟି ଦୃଷ୍ଟିରେ ପଡ଼ି ଦୁଇଶ ଟଙ୍କାର ଗୃକଣି ହରେଇଲେ ସେ ଦିନକୁ ଥିଲେ ଦୁଇ । ସସତ୍ତ୍ୱା ମାଳମାଙ୍କୁ ଧରି ଘରକୁ ଫେରିଆସି ହେଲେ ତିନି । ଟୋପାଏ ଦୁଧଠାରୁ ମୁଠାଏ ଶାଗ ଭାତ ଭିତରେ ସଙ୍କୋଚରେ ଚଳିବାପାଇଁ ବହୁ ଚେଷ୍ଟା କଲେ । ମୋଟର ଅଫିସିରେ ଗୃକଣିଟା ଟଙ୍କାକୁ ମୁଣ୍ଡ ବିକି ମଧ୍ୟ

ଚଳନ୍ତେ ନାହିଁ । ସକଳ ଦୁଃଖ ଦୈନ୍ୟକୁ ମୁଣ୍ଡେଇ ନେଇ ସଂସାରରୁ ବିଚ୍ଛିନ୍ନ ହେଲାପରେ ଚଳିବା ଭିତରେ ମାଳତୀ ସାମାଜିକ ଶିକ୍ଷା ସେଣ୍ଟରଂ ପାଇଁ ଯିବାର ସୁବିଧା ମିଳିଲା । ଯିବାପାଇଁ ଯେଉଁ ସୁବିଧା ମିଳିଲା ଯିବାକୁ ତାହୁଁ ବଳି ଅସୁବିଧା ହେଲା । ମାଳତୀ ସେଣ୍ଟରଂରୁ ଫେରିଆସିଲେ ଯିବେ ବିକଶିତ, ବୈଦ୍ୟାଣୀ ରହିବେ ଘରେ—ଏକଥା ବିଚାରିଲେ ହୁଏ ତ ଆଜି କେଉଁ ଯୁବକଙ୍କୁ ଖରାପ ଲାଗୁଥିବ; କିନ୍ତୁ ବୈଦ୍ୟାଣୀ ସେଥିରେ ମନେ ମନେ ଗର୍ବ ଅନୁଭବ କରୁଥିଲେ । ତାଙ୍କ ମତରେ ନାରୀ ଜାତି ପୁରୁଷର ସମକକ୍ଷ ହୋଇ ନ ପାରିଲେ ଏ ଦେଶ ଜାଗିବ ନାହିଁ; ମାତ୍ର ସେ ସେଣ୍ଟରଂକୁ ଗଲେ ଦେଶର ଭବିଷ୍ୟତ ତାଙ୍କର ସେହି ଶ୍ରେଷ୍ଠ ଶିଶୁଟିକୁ କାହା କୋଳରେ ଛାଡ଼ିଦେଇ ଯିବେ ଏଇ ହୋଇଥିଲା ଚିନ୍ତାର କଥା । ତେଣୁ ବୈଦ୍ୟାଣୀଙ୍କ ଯୋଜନା ଅନୁସାରେ ଘରେ ଆସି ମାଳତୀଙ୍କ ସାନ ଭଉଣୀ ପଦ୍ମାକ୍ଷୀ ଜନସଂଖ୍ୟା ଭିତରୁ ସ୍ଥିର ହୋଇଗଲେ । ଯୋଜନାଟାର ମୂଳ କଥା ହେଲା—ମାଳତୀ ଘରେ ଥାଇ ସାନ ଭଉଣୀକୁ ଶିଶୁପାଳନ ପଦ୍ଧତି ଶିଖେଇବାକୁ ହେବ ।

ସେତିକି କେତେ ଦିନ ବୈଦ୍ୟାଣୀଙ୍କ ଘରେ ଯେଉଁ ଶିଶୁ ପାଳନ ପଦ୍ଧତି ଶିକ୍ଷା ଦିଆଗଲା ଅଭାବ ଅନାଟନରେ ପଡ଼ି ନଥିଲେ ତାହା କେବେହେଲେ ହୋଇ ନଥାନ୍ତା । ଅଫିମିଆକୁ ଆସ୍ତେ ଆସ୍ତେ ଅଫିମ ଛଡ଼ାଇଲା ପରି ମାଳତୀଙ୍କ କୋଳରୁ ଆସ୍ତେ ଆସ୍ତେ ଶିଶୁଟିକୁ ଛଡ଼ାଇନିଆଗଲା । ପିଲା କାନ୍ଦିଲେ ସେ ଧଇଲେ ନାହିଁ, ଖାଇବାକୁ କ୍ଷୀର ଦେଲେ ନାହିଁ, ପାଟି ଶୁଣିବ ବୋଲି ବେଳେ ବେଳେ କଥା ବି କହିଲେ ନାହିଁ । ଦେଖିଲେ କାଳେ ଚିହ୍ନି ପକାଇବ ବୋଲି ଓଢ଼ଣା ଦେଇ ଚାଲିଲେ । ଘରେ ଏ ସବୁ କାଣ୍ଡ ଚାଲିଥିଲା ବେଳେ ବୈଦ୍ୟାଣୀ କେବଳ ଜଣେ ନୀରବ ଦର୍ଶକ ଭାବରେ ଏହା ଦେଖୁଥାନ୍ତି, ଆଉ ମନେ ମନେ ଭାବୁଥାନ୍ତି—ଏ ଦେଶରେ ଅଭାବ ଲୋକକୁ କି ଅବସ୍ଥାକୁ ନ ଆଣୁଚି ! ସ୍ୱାମୀ ସ୍ତ୍ରୀର ସ୍ନେହ ଭୁଲିବାକୁ ଚେଷ୍ଟା କରୁଚି, ଆଉ, ସ୍ନେହମୟୀ ମାଆ ଆଜି ନିଜ ଛୁଆ ପିଲାକୁ ଭୁଲିପାରୁଛି ।

ବୈଦ୍ୟାଣୀଙ୍କ ଘରେ ଦିନେ ଦୁଃଖର ଘୁଣ୍ଟା ଘୋଟିଗଲା । ଘୁଣ୍ଟାଟା କିନ୍ତୁ ଘରେ ରହିବା ଲୋକଙ୍କ ଉପରେ ବେଶି ନ ପଡ଼ି ଘର ଛାଡ଼ି ଦୂରକୁ

ଯାଉଥିବା ଲୋକଙ୍କ ଉପରେ ବେଶି ପଡ଼ିଲା । ମାଳତୀ ପିଲାକୁ ଭୁଲ ଧାରିବା ଟ୍ରେନିଂରେ ପାଶ୍ କରିଥିଲେ ସତ, କିନ୍ତୁ ଗଲାବେଳେ ଆଖିରୁ ଯେ ଦୁଇ ଧାର ଲୁହ ଗଡ଼ିଗଲା ତାହା ମାତୃତ୍ୱର ଅମୃତଧାରା ପରି ଦୈତାରୀଙ୍କ ଆଖିକୁ ଦିଶିଲା ।

ଦୈତାରୀ ମାଳତୀକୁ ନେଇଯାଇ ସାତ ଦିନ ପରେ ପୁଣି ଯେତେବେଳେ ତାଙ୍କ ଧର ଘରକୁ ଫେରିଆସିଲେ ତାଙ୍କୁ ଜାଣିଥିବା ଲୋକେ ଭାବିଲେ—ଅଭାଗାର ଭାଗ୍ୟ ସବୁ କ୍ଷେତ୍ରରେ ଏକାପରି ! ଦୁଇଶ ଟଙ୍କା ଦରମା ପାଇ ଚାକିରୀଟା ରଖିପାରିଲା ନାହିଁ, ତା'ପରେ ଟଙ୍କା ଗୁଣିଣିଟାକୁ ମୁଣ୍ଡ ବିକିଲା । ଶେଷକୁ ସ୍ତ୍ରୀକୁ ନେଇଥିଲା ଚାକିରୀ ଦେବାପାଇଁ ଯେ କି ଲଭ୍ରାଟ୍ କରି ଫେରିଆସିଛି ! ଏଥିରୁ ସିଏ ଯାହା ବୁଝନ୍ତୁ, ଦୈତାରୀ କିନ୍ତୁ ବୁଝିଲେ ସେ ଠିକ୍ କରିଛନ୍ତି । ସେହି ଦିନୁ ଦେଖାଗଲା ତାଙ୍କ ମନଟା ଯେପରି ପରିଷ୍କାର ହୋଇଯାଇଛି । ସେ ଖୋଲା ଭାବରେ ହସି ପାରୁଛନ୍ତି ଯେପରି ହସୁଥିଲେ ଚାକିରୀରୁ ବରଖାସ୍ତ ହେଲା ଦିନ ।

ଦିନେ ସେ ଚଉକିରେ ବସି କ୍ୟାଲେଣ୍ଡରକୁ ଚାହିଁଛନ୍ତି ମାଳତୀ ପିଲାଟିକୁ କାଖେଇ ଆସି ପଛରେ ଠିଆହୋଇ ପଚାରିଲେ—ଏ ପର୍ଯ୍ୟନ୍ତ ବୁଝିପାରିଲି ନାହିଁ ତୁମେ କାହିଁକି ଯେ ମୋତେ ଫେରାଇଆଣିଲ । ଦୈତାରୀ ଠୋ ଠୋ ହସି ଉତ୍ତରଦେଲେ —ବୁଝିପାରି ନାହିଁ ? ତୁମକୁ ପାଇବା ପାଇଁ ଫେରାଇଆଣିଲି ।

"ମୋତେ କଣ ତାହା ହାରି ହରାଉଥିଲ ?"

"ହରାଇବା ଠାରୁ ବେଶି ।"

"ମାନେ ?"

"ମାନେ ଆଉ କଣ ? ତୁମେ ସରକାରୀ ଷ୍ଟାଇପେଣ୍ଡ ପାଇବା କଥା ହେଲା । ତା ବଦଳରେ ତୁମେ କୁନିର ମମତାକୁ ଭୁଲିପାରିଲ କିନ୍ତୁ ମୁଁ ତୁମକୁ ଭୁଲିପାରିଲି ନାହିଁ ।"

ମାଳତୀ କହିଲେ—"ଏଇପରି ଗୁଡ଼ାଏ କଥା ମୋତେ ଆଜ କହିବ ନାଇଁଟି !"

"କହିବ ନାଇଁ କଣ, ଶୁଣ । ସେ ବାବୁ ସେଦିନ କହିଲେ—ତୁମେ କୁଆଡ଼େ ସେ କାମକୁ ପାରିବ ନାହିଁ, ସ୍ୱାସ୍ଥ୍ୟ ଖରାପ, ତେଣୁ ଚାରି ମାସ ପରେ ଯିବାକୁ ହେବ ।"

"ଚାରିମାସ ପରେ ପୁଣି ଯିବାକୁ ହେବ ?"

"ନା, ଆଜ ଆଦୌ ଯିବାକୁ ହେବନାହିଁ । ତାଙ୍କ କଥା ଶୁଣି ମୁଁ ଯେତେବେଳେ ବ୍ୟସ୍ତ ହୋଇ କହିଲି ସେ ପାଖରେ ଯାହା ଥିଲା ସବୁ ବିକ ଭାଙ୍ଗି ଏତେ ବାଟ ଆସିଛୁ, ଫେରିଅ ନାହିଁ, ସେ କଣ କହିଲେ ଜାଣ ?"

ଏତିକ କହି ବୈଦ୍ୟନାଥ ନୀରବ ରହିଲେ ।

ମାଳତୀ କହିଲେ—କହନ, କ'ଣ କହିଲେ ?

ବୈଦ୍ୟନାଥ ଭଙ୍ଗା ଗଳାରେ ଅନିଚ୍ଛା ସତ୍ତ୍ୱେ କହିଲେ – ସେ କହିଲେ ତୁମେ ବଡ଼ ନିଷ୍ଠୁର । ଏ ତୁମର ଧର୍ମ ପତ୍ନୀ ହୋଇ ନ ଥିବେ । ହୋଇ-ଥିଲେ କ ତାଙ୍କର ଏ ଭଗ୍ନ ସ୍ୱାସ୍ଥ୍ୟରେ ଏପରି ଅବସ୍ଥାରେ ପକାନ୍ତ ? ଏତିକ କହି ବୈଦ୍ୟନାଥ ମାଳତୀଙ୍କ ହାତକୁ ଧରିପକାଇଲେ । ତାଙ୍କ ଆଖି ଛଳ-ଛଳ ହୋଇଗଲା ।

# ଲୋକସମ୍ପର୍କ

ଅନେକ ସମୟ ଅପେକ୍ଷା କଲାପରେ ଶ୍ରୀନାଥ ଶେଷକୁ ଡାକିଲା—କୁନ୍ଦ !

କୁନ୍ଦ ତ ଶୁଣିଲା ନାହିଁ, ଆଉ ଯିଏ ତା ସାଙ୍ଗରେ ବସିଥିଲେ ସେମାନେ ବି କିଛି କହିଲେ ନାହିଁ ।

ପୁଣି କିଛି ସମୟ ଗଲା । ରାତି ପ୍ରାୟ ନଅଟା ହେଲା । ମଫସଲ ଗାଁ ହାଣ୍ଡିଟା ଜନଶୂନ୍ୟ ହୋଇଆସିଲା । ଦୂରରେ କେଉଁଠି କାହା ଘର ବାଡ଼ ପଟେ ବୁଲା କୁକୁର ଭୁକିଉଠିଲା । ଶ୍ରୀନାଥ ନିଦରୁ ଉଠିଲା ପରି ଆଣ୍ଠୁ ଭିତରୁ ମୁହଁ ଟେକି ଚାହିଁଲା କୁନ୍ଦ ସେହିପରି ବସିଚି, ତାସମୁଠା ହାତରେ ଧରି ଏକାଗ୍ରଚିତ୍ତରେ । ତା ସହିତ ଆଉ ଯେଉଁମାନେ ବସିଛନ୍ତି ସେମାନେ ବି ସେହି କାର୍ଯ୍ୟରେ ରତ । ସତେ ଯେପରି ସେମାନେ ଗମ୍ଭୀର ଗବେଷଣାରେ ବ୍ୟସ୍ତ ! ଶ୍ରୀନାଥର ଧୈର୍ଯ୍ୟର ସୀମା ଟପିଗଲା । ସେ ଘରୁ ବାହାରି ସକାଳ ସାଢ଼େଟାରେ ଆସି ପହଞ୍ଚିଚି ସେ ଗାଁରେ ସନ୍ଧ୍ୟା ଛ'ଟାରେ । ଦୀର୍ଘ ତିନି ଘଣ୍ଟା କାଳ ତାସଖେଳାଳୀଙ୍କ ପାଖେ ବସି ରହିବା ତାର କେବେ ଅଭ୍ୟାସ ନଥିଲା । ସେ ଆସିଛି କୁନ୍ଦ ପାଖକୁ—ଦୁଇ ଦିନ ଛୁଟି ନେଇ ଆସିଛି । ଦୁଇ ଦିନ କୁନ୍ଦ ସହିତ ରହି ପୁଣି ଚାକିରିକୁ ଫେରିଯିବ । ଦୁଇ ଦିନରୁ ଗୋଟିଏ ଦିନ ଗଲା, ରାତି ନଅଟାରୁ ବେଶି ହେଲା; ଅଥଚ କୁନ୍ଦ ସହିତ ପଦେ କଥା ହୋଇପାରିଲା ନାହିଁ । ଆଉ କେତେ ସମୟ ଅପେକ୍ଷା କରିବ ? ଧୈର୍ଯ୍ୟ ହରାଇ ବସିବା ସ୍ଥାନରୁ ଉଠିପଡ଼ି, ଆଣ୍ଠୁରେ ହାତଭରା ଦେଇ ଲଇଁଲା ପରି ଠିଆହୋଇ କୁନ୍ଦ ଆଡ଼କୁ ଝୁଙ୍କିପଡ଼ି ଡାକିଲା—କୁନ୍ଦ !

ସତେ ଯେପରି ତାପସଖେଳାଳୀଙ୍କ ଯୋଗ ସାଧନାରେ ବାଧା ଦେଇଗଲା ! କୁନ୍ଦ ଉତ୍ତର ନ ଦେଉଣୁ ସେ ଭିତରୁ ଜଣେ ବିରକ୍ତ ହୋଇ କହିଲେ—ଘର କେଉଁଠି ? ମଫସଲିଆ ପରି ହେଉଚ କଣ ? ବସ ନା !

ଶ୍ରୀନାଥ ବସିବ କି ଠିଆହେବ, ଠିଆହେବ କି ସେଠୁ ଚାଲିଯିବ କିଛି ସ୍ଥିର କରିପାରିଲା ନାହିଁ । ଏତିକିବେଳେ କୁନ୍ଦ ମୁହଁ ଟେକି ଶ୍ରୀନାଥ ଆଡ଼କୁ ଚାହିଁଲା । ତାର ମନେ ପଡ଼ିଲା ଶ୍ରୀନାଥ ତିନି ଘଣ୍ଟା ତଳୁ ଆସିଛି, ତାକୁଇ ଅପେକ୍ଷା କରି ବସିଛି, ଅଥଚ ସେ ତାକୁ କିଛି ପଚାରି ନାହିଁ । କହିଲା, ଆଉ 'ପାଞ୍ଚ ମିନିଟ' । ରଙ୍ଗଟା ମୋ ହାତରେ ଅଛି, ଟିକିଏ ଅପେକ୍ଷା କର ।

ଶ୍ରୀନାଥର ମନ ସେତେବେଳକୁ ପୁରୀ ବଡ଼ ଦାଣ୍ଡରେ । ମନେ ମନେ ସେ ପୁରୀ ଦାଣ୍ଡକୁ ଫେରିଗଲା । ଆଜକୁ ବାର ବର୍ଷ ତଳେ ସେ ଯେତେ-ବେଳେ ଅନାଥ ବାଳକ ରୂପେ ବଡ଼ ଦାଣ୍ଡରେ ବୁଲୁଥିଲା ତାକୁ କିଏ ଏପରି ଅପେକ୍ଷା କରିବାକୁ କହି ନଥିଲା । ସେ ଥିଲା ସ୍ୱାଧୀନ । ଯୁଆଡ଼େ ଇଚ୍ଛା ସିଆଡ଼େ ଯାଇପାରୁଥିଲା । ମନକୁ ଯାହା ପାଉଥିଲା ତାହା କହୁ-ଥିଲା । ସେ ଜାଣିଥିଲା ପୁରୀ ଗୋଟାଏ ସହର । କେଉଁ ଦୂର ମଫସଲରେ ଜନ୍ମ ହୋଇଥିଲେ ବି ମଫସଲରେ ବେଶି ଦିନ ରହିବା ତା ଭାଗ୍ୟରେ କେବେ ଘଟି ନାହିଁ । ବାପ ମା ଜନ୍ମ ଦେଇଥିଲେ ସିନା; କିନ୍ତୁ ପାଳନର ଭାର ନ ନେଇ ସଂସାରର ଆର ପାଖକୁ ଚାଲିଗଲେ । ନାଁ ଦେଇଥିଲେ ଶ୍ରୀନାଥ; ମାତ୍ର ସେ ସବୁବେଳେ ନିଜକୁ ମନେ କରୁଥିଲା ଅନାଥ । ଯାହାର ଘର ନାହିଁ, ନିଜର ଗାଁ ବୋଲି ସିଏ କୌଣସି ଗାଁକୁ ଦାବୀ କରି ନ ପାରେ, ଅନ୍ୟର ସ୍ନେହ ଆଦର ପାଇବା ପାଇଁ ସିଏ ହକଦାର ନୁହେଁ, ସେ ଶ୍ରୀନାଥ ହେବ କିପରି ? ସେ ହେବ ଅନାଥ ! ସେ ଆଖି ବୁଜି ଦେଖିଲା ଅନାଥ ଭାବରେ ବଡ଼ଦାଣ୍ଡରେ ବୁଲୁଥିଲା ବେଳେ ତାକୁ ଡାକି ନେଇ ଜଣେ 'ଶ୍ରୀମନ୍ତ' କରି ପକାଇଲେ । ସେ ହେଉଛନ୍ତି ଲକ୍ଷ୍ମଣ ବାବୁ । ଲକ୍ଷ୍ମଣ ବାବୁ ଖୋଜି ବୁଲୁଥିଲେ ଚାକରଟିଏ । ଶ୍ରୀନାଥ ଖୋଜି ବୁଲୁଥିଲା କେଉଁଠି ମୁଣ୍ଡ ଗୁଞ୍ଜିବା ପାଇଁ ଜାଗା । ହଠାତ୍ ଲକ୍ଷ୍ମଣ ବାବୁଙ୍କର ଦୃଷ୍ଟି ତା ଉପରେ ପଡ଼ିଲା ।

କୁନ୍ଦର 'ପାଞ୍ଚ ମିନଟ୍' ପଞ୍ଚସ୍ତରିଶି ମିନଟରେ ଆସି ପହଞ୍ଚିଲା । ଶ୍ରୀନାଥ କୁନ୍ଦ ମୁହଁରୁ 'ପାଞ୍ଚ ମିନଟ୍' ଅପେକ୍ଷା କରିବାକୁ ଯେ ଶୁଣିଥିଲା ତାହା ପଞ୍ଚସ୍ତରିଶି ମିନଟ୍‌ରେ ପରିଣତ ହେଲା; କିନ୍ତୁ ଶ୍ରୀନାଥକୁ ତାହା ଜଣାପଡ଼ିଲା ନାହିଁ । ଲୋକର ଅବସ୍ଥାଭେଦରେ ପାଞ୍ଚ ମିନଟ୍‌ଟା ବର୍ଷେ ପରି ଲାଗେ, ପାଞ୍ଚ ଦଶ ବର୍ଷର ସବୁ କଥା ବି ସେହି ପାଞ୍ଚ ମିନଟ୍‌ରେ ସରିଯାଏ । ତେଣୁ ପାଞ୍ଚ ମିନଟ୍ କେତେବେଳେ ଶେଷ ହେବ ଶ୍ରୀନାଥ ସରିପାରିଲା ନାହିଁ । ତାର ବାର ବର୍ଷର ଇତିହାସ ସିନେମାର ଚିତ୍ରପଟ ପରି ମାନସପଟରେ ଘନ ଘନ ଦେଖାଗଲା—ଲକ୍ଷ୍ମଣ ବାବୁ ତାକୁ ଡାକନେଲେ ମୋଟରରେ ବସାଇ ।

ଲକ୍ଷ୍ମଣ ବାବୁ ? ଲକ୍ଷ୍ମଣ ବାବୁ ପୁଲିସର ସବ୍‌ଜଜ୍ । ଶିକ୍ଷିତ ମହଲରେ ତାଙ୍କର ପରିଚୟ ପଚାରିବା ଆବଶ୍ୟକତା ନାହିଁ । ଶ୍ରୀନାଥ ତାଙ୍କର ପାଖରେ ରହିଲା । ଗାଁ ନାଁ ପଚାରିଲେ କହିପାରିଲା ନାହିଁ । କାରଣ, ବାପ ମା'ଙ୍କ ସାଙ୍ଗରେ ଜ୍ଞାନ ହେଲା ପର୍ଯ୍ୟନ୍ତ ସେ ଦୁଇ ତିନିଟା ଗାଁରେ ରହିଛି । କେଉଁ ଗାଁ ତା ନିଜର ଗାଁ ସ୍ଥିର କରି ନ ପାରି କହେ—ଶ୍ରୀରାମ ଚନ୍ଦ୍ରପୁର, ସମସରପୁର, ନରସିଂହପୁର ଆଦି କେତେଟା ଗାଁ କଥା । ନିଜର ଗାଁ କଥା ସେ ସିନା କହିପାରେ ନାହିଁ, କେଉଁ ଜାତିରେ ଜନ୍ମ ହୋଇଥିଲା ସେ ସିନା ବୁଝାଇ ପାରେ ନାହିଁ, କେଉଁଠି ଜନ୍ମ ହୋଇଥିଲା ସେ ସିନା କହିପାରେ ନାହିଁ; କିନ୍ତୁ ଲକ୍ଷ୍ମଣ ବାବୁଙ୍କ ସେବା ଶୁଶ୍ରୂଷାରେ ହେଳା କରେ ନାହିଁ । ଗୋଡ଼ର ଜୋତା ସଫା କରିବାଠାରୁ ଶୋଇବା ଶେଯ ସଜେଇବା ଯାଏଁ ସବୁ କାମ ସେ ନିପୁଣ ଭାବରେ କରେ । ବେଳ ଜାଣି ଗୁଁ ଦିଏ, ସମୟ ଜାଣି କଥା କହେ; ଅବସର ଜାଣି ହାତ ଗୋଡ଼ରେ ହାତ ବୁଲେଇଦିଏ । ଶ୍ରୀନାଥ ଲକ୍ଷ୍ମଣ ବାବୁଙ୍କ ଘରେ ନିଜକୁ ଚାକର ମନେକରେ ସତ; କିନ୍ତୁ ଲକ୍ଷ୍ମଣ ବାବୁ ମନେ କରନ୍ତି ସେ ତାଙ୍କ ପରିବାର ଭିତରୁ ଜଣେ ।

ପୁଣି କୁକୁର ଭୁକିଲା । ଶ୍ରୀନାଥ ଆଖୁ ଭିତରୁ ମୁହଁ କାଢ଼ି ଦେଖିଲା କୁନ୍ଦ ତାସ ମୁଠା ଧରି ବସିଛି, ବୋଧହୁଏ ପାଞ୍ଚ ମିନଟ୍ ହୋଇନାହିଁ । ସେ ଆଖି ବୁଜିଦେଲା । ଆଖି ବୁଜି ସେ ଶୁଣିଲା,ଦେଖିଲା ଆଗରେ ଲକ୍ଷ୍ମଣ ବାବୁ !

ଲକ୍ଷ୍ମଣବାବୁ ଖୁସ୍ ମିଜାସରେ ଆରାମ ଚୌକିରେ ଶୋଇ 'ନଅାଁ ଖୁଣ୍ଟା' ପଢ଼ୁଛନ୍ତି, ଶ୍ରୀନାଥ ମୁଣ୍ଡ ପଟେ ଠିଆହୋଇ ଡାକିଲା—ବାବୁ ! ଲକ୍ଷ୍ମଣ ବାବୁ ପଢ଼ା ବନ୍ଦ କଲେ । ଜିଜ୍ଞାସୁ ନେତ୍ରରେ ତା ଆଡ଼କୁ ମୁହଁ ବୁଲାଇ ଚାହିଁଲେ । ସେ ଏପରି କେବେ ଡାକେ ନାହିଁ । ତା ମୁହଁରେ ଲଜ୍ଜାର ଚିହ୍ନ ଦେଖାଗଲା । ମୁହଁ ପୋତି ଟିକିଏ ହସିଦେଲା । ଲକ୍ଷ୍ମଣ ବାବୁ ପଚାରିଲେ—କଥା କଣ କହ ।

କିଛି କ୍ଷଣ ନୀରବ ରହି ଶ୍ରୀନାଥ କହିଲା—ମୁଁ ଆପଣଙ୍କର କେବଳ ଚାକର ପର ନୁହେ ।

ଲକ୍ଷ୍ମଣ ବାବୁ ହସିଦେଇ ଉତ୍ତର ଦେଲେ – ନା, ମୁଁ ତ ସେପରି ମନେ କରିନାହିଁ । ତୁମେ କଅଁ ଭାବୁଚ ?

ଶ୍ରୀନାଥ କହିଲା—ଆପଣ ମୋର ଧର୍ମପିତା ।

ଲକ୍ଷ୍ମଣ ବ ବୁ ହସି ହସି କହିଲେ—ମୋର କିଛି ଆପତ୍ତି ନାହିଁ ।

ଶ୍ରୀନାଥ ରୁଦ୍ଧ କଣ୍ଠରେ କହିଲା—ମୁଁ ଠିକ୍ କରିଚି ଗୋଟିଏ··· ।

କଣ ?

ବିବାହ ପାଇଁ... ।

ଓ ହୋ ! ତୁମେ ବିବାହ ପାଇଁ ଗୋଟିଏ କନ୍ୟା ଠିକ୍ କରିସାରିଚ, ଆଉ, ମୁଁ ତୁମର ଧର୍ମପିତା ହିସାବରେ ସେ ଶୁଭକାର୍ଯ୍ୟ ସମ୍ପାଦନ କରିବି । ଏଇୟା ନା ? ବେଶ୍ ବେଶ୍ ! ବୁଝିଗଲି । କେବେ ? କେଉଁଠି ?

ଏତିକିବେଳେ ତାସ୍‌ମୁଠା ତଳେ ପକାଇଦେଇ ବୁଦ୍ଧ କହିଲା—ଯିବା ?

ଶ୍ରୀନାଥର ସୁଖ ସ୍ୱପ୍ନ ଭାଙ୍ଗିଗଲା । ଦେଖିଲା, ଯାହାକୁ ସେ ପାଇବା ପାଇଁ ଏଇ ଅଳ୍ପ ସମୟ ହେଲା ଲକ୍ଷ୍ମଣବାବୁଙ୍କ ପାଖେ ଅଳି କରୁଥିଲା ସେ ଆସି ତା ଆଗରେ ଠିଆ ।

ଶ୍ରୀନାଥର ଚଳାଧାରା ବଦଳିଗଲା । ଭାବିଲା ମୁଁ ଗୋଟାଏ ମଫସଲିଆ । ତାହା ପୁଣି ଏଇ ମଫସଲ ଗାଁରେ ରାତି ନଅଟା ଦଶଟା ବେଳେ ତାହାର ଧର୍ମପତ୍ନୀ କୁନ୍ଦ ଆଗରେ ଏ କଥା ଜଣେ ତାକୁ କହିଲା ! କୁନ୍ଦ ତାହା ଶୁଣି ସହିଲା !! ତା ମନ ଛୁ ହୋଇଗଲା । କୁନ୍ଦ ସାହସର ସହିତ କହିପାରିଲା ନାହିଁ ସେ ତାର ସ୍ୱାମୀ ବୋଲି । ଦୃଢ଼ିଏ ଚାଲିଲେ ଆଗପଛ ହୋଇ; କିନ୍ତୁ ଶ୍ରୀନାଥର ମନ ଫେରିଗଲା ,ସେହି ଲକ୍ଷ୍ମଣବାବୁଙ୍କ ପାଖେ ଥିବା ସମୟର ଘଟଣାବଳି ଆଡ଼କୁ—କୁନ୍ଦର ସେ ପାଣିଗ୍ରହଣ କଲା । ବହେଁ ଅନେକ ଦିନ ଏକାଠି ଘରଦ୍ୱାର କଲେ । କିନ୍ତୁ ହାୟ ! ଧର୍ମପିତା ବଦଳି ହୋଇଗଲେ ଦୂରକୁ । ସେତିକବେଳେ ସେ ମନେକଲା ପିତୃଛଡ଼ା ହୋଇଛୁ ! କୁନ୍ଦକୁ ସୁଖରେ ରଖିବାପାଇଁ, ଆଧୁନିକା ଶିକ୍ଷିତା କରିବାପାଇଁ, ରୋଜଗାରର ପନ୍ଥା ଦେଖିବାପାଇଁ ସେ ଗ୍ରହଣକଲା ଗ୍ରାମ-ସେବକ ଟ୍ରେନିଂକ । ଟ୍ରେନିଂ ପରେ ସେ ଚାଲିଆସିଲା ଏହି ଦୂର ମଫସଲକୁ ।

ଏତିକବେଳେ କୁନ୍ଦ ପଚାରିଲା—କଣ କରୁଛ ଖାଇବ ?

ଶ୍ରୀନାଥ ମୁହଁରୁ କଥା ବାହାରିଲା ନାହିଁ । କୁନ୍ଦର ଦ୍ୱିତୀୟ ଥର ପ୍ରଶ୍ନରେ ସେ ମୁହଁ ଟେକି ଚାହିଁଲା ସତ; କିନ୍ତୁ କେତେବେଳେ ସେ ତାସ ଖେଳିବା ସ୍ଥାନରୁ କୁନ୍ଦ ସହିତ ଚାଲିଆସି ଗୋଟାଏ ଚଉକି ଉପରେ ବସି-ପଡ଼ିଚ ଜାଣିପାରିଲା ନାହିଁ । ଘର ବୋଲି ବଖରାଏ । ଖଣ୍ଡିଏ ଖଟ ଓ ଗୋଟିଏ ଗ୍ଲୋବ ଟେବୁଲ ଘରର ଦଶ ପଣ ଜାଗା ମାଡ଼ିବସିଚି । ଟେବୁଲ୍ ଉପରେ ପଡ଼ିଥିବା ଦୁ'ଚାରି ଖଣ୍ଡ 'ଉତ୍କଳପ୍ରସଙ୍ଗ' ଓ କେତେକ ସରକାରୀ ପ୍ରଚାରପତ୍ରକୁ ଅଜାଣତରେ ଏପାଖ ସେପାଖ ଲେଉଟାଇ ଲେଉଟାଇ ଶ୍ରୀନାଥ କହିଲା—କୁନ୍ଦ ! ଆ, ଚାଲିଯିବା ।

କୁନ୍ଦ ଠୋ ଠୋ ହସି ଉଠିଲା । ସେ ହସରେ ଶ୍ରୀନାଥର ସର୍ବାଙ୍ଗରେ ସତେ ଯେପରି ବିଜୁଳି ଖେଳିଗଲା ! ସେ ଚମକିଲା ପରି ଚାହିଁ କହିଲା—କୁନ୍ଦ, ମୋ ସାଙ୍ଗେ ଯିବୁ ନା ରହିବୁ ?

କୁନ୍ଦ ସେହିପରି ହସି ହସି ଉତ୍ତରଦେଲା—ତୁମେ ବୋଧହୁଏ ଭାବୁଚ ମୁଁ ସେମାନଙ୍କ ସହିତ କାହିଁକି ରାତିରେ ତାସ ଖେଳୁଥିଲି ?

ସରକାରୀ କାମ ଛଡ଼ା ଆଉ ମୁଁ କି କାମ କରିପାରେ ? ଶ୍ରୀନାଥ ମୂହଁ ପୋଛି ନିଜକୁ ନିଜେ ପ୍ରଶ୍ନ କଲାପରି କହିଲା—ଏହା କଣ ସରକାରୀ କାମ ? ସରକାର କଣ ତାସ ଖେଳିବାକୁ ଲୋକଙ୍କୁ ଦରମା ଦେଉଛନ୍ତି ? କୁନ୍ଦ କହିଲା—ଏହା ଯେ କାମ ହେଉନା କାହିଁକି, ଲୋକଙ୍କ ସହିତ ସମ୍ପର୍କ ରଖିବା ଆମର ପ୍ରଥମ କାମ । କାମରେ ହେଳା କଲେ ଚାକିରୀ ଯେ ଚାଲିଯିବ !

ଶ୍ରୀନାଥ ଅତି ଅଧୀର ଭାବରେ କୁନ୍ଦ ଆଡ଼କୁ ଦୁଇ ବାହୁ ବସ୍ତାରିତ କଲାପରି ଠିଆହୋଇ ଡାକିଲା—କୁନ୍ଦ ! ଚାକିରୀ ଚାଲିଯାଉ ଏବଂ ତୁ ଚାଲିଆ; ନ ହେଲେ ମୁଁ ଚାଲିଯିବି । ଶ୍ରୀନାଥର ଏହା ପାଗଳାମି କି ବ୍ୟାକୁଳତା କୁନ୍ଦ କିଛି ବୁଝିପାରିଲା ନାହିଁ । ଶ୍ରୀନାଥ ଯେ ଉଠି ଠିଆ-ହୋଇଥିଲା, ଆଉ, କୁନ୍ଦକୁ କୋଳରେ ନେଇ କୁଆଡ଼େ ଚାଲିଯିବା ପାଇଁ ହାତ ବଢ଼େଇଥିଲା ସେହି ଠିଆହେବା ସ୍ଥାନରେ ବସିଗଲା !

ଏ ଘଟଣାର ପ୍ରାୟ ଚାରି ମାସ ପରେ ଦେଖାଗଲା, କୁନ୍ଦର ବଦଳି ହୋଇଛି ରଣପୁରର ଏକ ନୂଆ କେନ୍ଦ୍ରକୁ; କିନ୍ତୁ ଶ୍ରୀନାଥର ମତି ବଦଳି ନାହିଁ । ସେ ଫେରିଯାଇଛି ବାର ବର୍ଷ ତଳକୁ । ବାର ବର୍ଷ ତଳେ ସେ ପୁରୀ ବଡ଼ଦାଣ୍ଡରେ ବୁଲୁଥିଲା । କାଖରେ ଥିଲା ତାର ଗୋଟିଏ ଲୁଗା ବୁଜୁଲା—ସେଇ ଥିଲା ତାର ଘରସଂସାର । ତାହାର ଭିତରେ ଗୋଟିଏ ଗ୍ଲେଟିଆ ଟିଣ, ଦୁଇ ଖଣ୍ଡ ଚିରାକାମିଜ୍, ଆଉ କିଛି ରେଜା ପଇସା । ସେହିପରି ଅବସ୍ଥାରେ ବୁଲୁଥିଲାବେଳେ ଲକ୍ଷ୍ମଣବାବୁ ତାକୁ ବାଟରୁ ଗୋଟେଇ ନେଲାପରି ନେଇଥିଲେ ।

ଏଇ ଯେ ମଝିରେ ବାର ବର୍ଷ ତଫାତ୍, ଜଣାପଡୁଥିଲା ଶ୍ରୀନାଥ ପାଇଁ ଯେପରି ଏକବାରେ ତାହା ପାଶୋରିଦେଇଛି । ଏକଥା ଜଣାପଡ଼ି-ନଥାନ୍ତା ଯଦି ପୁଣି ସେହି ସେ ଲକ୍ଷ୍ମଣ ବାବୁଙ୍କ ହାବୁଡ଼ରେ ପୁରୀ ବଡ଼ଦାଣ୍ଡରେ ପଡ଼ି ନଥାନ୍ତା । ଅନ୍ୟମନସ୍କ ଭାବରେ ଦିନେ ଶ୍ରୀନାଥ ବଡ଼ ଦେଉଳକୁ ଚାହିଁ

ଚାହିଁ ଯାଉଥିଲା, ହଠାତ୍ ଗୋଟାଏ ମୋଟର ପାଖେ ଅଟକିଗଲା । ସେ କେତେ ମୋଟରକୁ ପାଖ କାଟି ଯାଇଛି, ତାର ସେ ଅଭ୍ୟାସ ଅଛି; କିନ୍ତୁ ସେହି ମୋଟରକୁ ସେ ଆଡ଼େଇହେଲା ନାହିଁ । ମୋଟର ଭିତରୁ ଯେ ବାବୁ ବାହାରିପଡ଼ିଲେ ତାଙ୍କୁ ସେ କେବଳ ଚାହିଁରହିଲା । ତାକୁ ପ୍ରଶ୍ନ ହେଲା — ଶ୍ରୀନାଥ ?

ଶ୍ରୀନାଥ ତହିଁର ଉତ୍ତରଦେଲା—ଲକ୍ଷ୍ମଣ ବାବୁ ?

ଲକ୍ଷ୍ମଣବାବୁ ତାର ଗୋଡ଼ରୁ ମୁଣ୍ଡଯାଏ କିଛି ସମୟ ଚାହିଁ କହିଲେ —ଶ୍ରୀନାଥ, ମୋଟରରେ ବସ, ଚାଲ ଘରକୁ ଯିବା, କୁନ୍ଦର ବଦଳି ହୋଇଯାଇଛି ରଣପୁର ।

ଶ୍ରୀନାଥ ହସି ହସି କହିଲା—ବେଶ୍ ତ, ମୋର ମଧ୍ୟ ବଦଳି ହୋଇସାରିଛି ବଡ଼ଦାଣ୍ଡକୁ । ଆଉ ଯିବିନାହିଁ କି ଆଉ କୁନ୍ଦକୁ ଭେଟି ହେବନାହିଁ; କିନ୍ତୁ ଆପଣଙ୍କୁ ଗୋଟିଏ ପ୍ରଶ୍ନ ପଚାରିବି, ଉତ୍ତର ଦେବେ ?

ଲକ୍ଷ୍ମଣବାବୁ ତା ପିଠିରେ ହାତ ମାରି କହିଲେ—ହଁ ଦେବି, ପଚାର ।

ଶ୍ରୀନାଥ ପଚାରିଲା—ଆପଣ ତ ବିଚାରକ, ସବୁ କଥା ବିଚାର କରି କହନ୍ତି । ନ ବିଚାରିଲେ ଆପଣଙ୍କର କାମ ଚଳେ ନାହିଁ । କହନ୍ତୁ, କାଲି ଯେଉଁଠି ତାସ ଖେଳୁଥିଲା ସେଠି କଣ କେବଳ ଯୁବକ ଲୋକ ଅଛନ୍ତି, ଆଉ ଯେଉଁଠିକି ବଦଳି ହେଲା ସେଠି ନାହାନ୍ତି ?

ଲକ୍ଷ୍ମଣବାବୁ ବୁଝିଲେ ଶ୍ରୀନାଥର କେଉଁଠି କି ଧକ୍କା ବାଜିଛି । ସେ ଦେଉଳ ଆଡ଼କୁ ଚାହିଁରହିଲେ ।

ମୁଁ ତ ଲୋକ ନୁହେଁ, ମୁଁ କାହା ସହିତ ସମ୍ପର୍କ ରଖିବି ? ଏହା କହି ଶ୍ରୀନାଥ ସିଧା ଚାଲିଲା ଆଗକୁ, ଲୋକ ଗହଳରେ କୁଆଡ଼େ ମିଶିଗଲା ।

ଲକ୍ଷ୍ମଣବାବୁ ଶ୍ରୀନାଥର ଭେଟ ଆଉ ପାଇଛନ୍ତି କି ନାହିଁ ଜଣାନାହିଁ; କିନ୍ତୁ କୁନ୍ଦ ଏ ପର୍ଯ୍ୟନ୍ତ ସଚେତାଶ ଲୋକସମ୍ପର୍କ-ବିଭାଗରେ କାମ କରୁଛି ।

# ପ୍ରେମ ଓ ପୋଷାକ

ଚନ୍ଦ୍ରାମଣିବାବୁ ଜେଲ ଗଲାଦିନ ଯେଉଁ ଫୁଲମାନ ପାଇଥିଲେ ଦେଢ଼ ବର୍ଷ ପରେ ଜେଲରୁ ଖଲାସ ହେବାପରେ ସେ ଫୁଲମାନରୁ ଗୋଟିଏ ବି ମିଳିଲା ନାହିଁ । ଅବସ୍ଥା ଏପରି ହେଲା ଯେ କେତେ ଦିନ ପରେ ଆଶ୍ରମ ଘରେ ଦି'ଦିନରେ ଦିନେ ଚୁଲି ଲଗିଲା । କର୍ମୀମାନେ କଏ କୁଆଡ଼େ ଚାଲିଗଲେ । ଯେଉଁମାନେ ଗାଁ ଗାଁ ବୁଲି ପୁଲିସର ଦୃଷ୍ଟି ଏଡ଼ାଇ ମୁଠି ଚାଉଳ ମାଗି ଆଣୁଥିଲେ ସେମାନଙ୍କ ସଂଖ୍ୟା ପତଳା ହୋଇଆସିଲା । ବନପୁର ଆଶ୍ରମଟା କର୍ମୀ ଗହଳରେ ଦିନରେ ରାତିରେ କମ୍ପୁଥିଲା । ଅରଟର ସାଇଁ ସାଇଁ ଶବ୍ଦ ଶୁଣାଯାଉଥିଲା । ସକାଳେ ଓ ସନ୍ଧ୍ୟାରେ ଜାତୀୟ ସଂଗୀତ ବୋଲାଯାଉଥିଲା । ଯେଉଁ କାରଣରୁ ଏ ସବୁ କ୍ରମେ କ୍ରମେ କମିଆସିଲା ସେ କଥା ଏଠାରେ ବର୍ଣ୍ଣନା କରିବାର ଆବଶ୍ୟକତା ନାହିଁ । ଏଠାରେ କେବଳ ଚନ୍ଦ୍ରାମଣି ବାବୁଙ୍କ କଥା ଶୁଣାଯାଉ ।

ଆଶ୍ରମର କର୍ମୀମାନଙ୍କ ଭିତରେ ଚନ୍ଦ୍ରାମଣିବାବୁ ଯେ ବଡ଼ ଥିଲେ ତା' ନୁହେଁ, ତାଙ୍କର କର୍ତ୍ତବ୍ୟନିଷ୍ଠା ତାଙ୍କୁ ବଡ଼ କରିଥିଲା । ଏହି ନିଷ୍ଠାବଳରେ ବହୁ ଲୋକଙ୍କର ହୃଦୟକୁ ସେ ଜୟ କରିଥିଲେ; କିନ୍ତୁ ଶାସନକର୍ତ୍ତାଙ୍କର ଚକ୍ରାନ୍ତରେ ସେଠାରେ ଏପରି ଘଟଣା ଘଟିଲା, ଶେଷରେ ଚନ୍ଦ୍ରାମଣିବାବୁ ମଧ୍ୟ ଆଶ୍ରମ ଛାଡ଼ି ଚାଲିଗଲେ ।

ଚନ୍ଦ୍ରାମଣିବାବୁ ଯେ ଆଶ୍ରମ ଛାଡ଼ି ଗଲେ, ସେ ଆଉ ଗାଁକୁ ଗଲେ-ନାହିଁ । ଗାଁ ଯେ ଛାଡ଼ିଥିଲେ ସ୍ୱରାଜ ଆସିଲେ ଫିରିବ ବୋଲି । ଆଶ୍ରମ

 

ଛାଡ଼ିଲାବେଳକୁ ସ୍ୱରାଜ ଆସି ନ ଥିଲା । ତେଣୁ ସେ ଗାଁକୁ ଯାଆନ୍ତେ କପରି ? ଆଶ୍ରମ ଛାଡ଼ିଲାଦିନ ଗାଁ ଆଡ଼କୁ ମୁହଁ କରି କିଛି ଦୂର ଗଲେ ସତ; କିନ୍ତୁ ପାଦ ଆଗକୁ ବେଶି ବାଟ ଚଳିଲା ନାହିଁ । ମନେପଡ଼ିଲା ତାଙ୍କର ସବୁ ପୂର୍ବ ପ୍ରତିଜ୍ଞା । ବାପା ମନାକରୁଥିଲେ ପଢ଼ା ଛାଡ଼ିବାକୁ, ମାଆ ମନା କରୁଥିଲେ ଘର ଛାଡ଼ିବାକୁ; କିନ୍ତୁ ଭିତରେ କାହାର ଆହ୍ୱାନ ପାଇ ସେ ବାପ ମାଆଙ୍କ କଥାକୁ ଶୁଣି ନ ଥିଲେ । ସେ ଯଦି ବିବାହ ହୋଇଥାନ୍ତେ ଶିକ୍ଷା ବା ଭିନ୍ନ ପ୍ରକାର ହୋଇଥାନ୍ତା । ଯେଉଁ ଦିନ ସେ ଘର ଛାଡ଼ି ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗଦେବାକୁ ଆସିଲେ ସେଇ ଦିନ ହିଁ ସେ ଚିଠି ଲେଖିଦେଇ ଆସିଥିଲେ—ଯାହାଙ୍କ ସହିତ ବାପା ବାକ୍‌ଦାନ କରିଛନ୍ତି ତାଙ୍କ ବିବାହ ଲାଗି, ତାଙ୍କୁ ସେ ବିବାହ ହେବେ ନାହିଁ । ଯଦି ଠିକ୍ ସମୟରେ ସ୍ୱରାଜ ଆସିଯାଏ ତାହାହେଲେ ଅବା ସେ ବାପାଙ୍କ ବାକ୍‌ଦାନକୁ ରକ୍ଷାକରିପାରନ୍ତି ।

ଚନ୍ଦ୍ରାମଣି ଗାଁ ଆଡ଼ୁ ମୁହଁ ଫେରାଇ ଅନ୍ୟ ଦିଗରେ ଚାଲିଲେ; କିନ୍ତୁ କେଉଁ ଦିଗକୁ ସେ ଯିବେ ଠିକ୍ କରିପାରିଲେ ନାହିଁ । ଅଣ୍ଟାରେ ମାତ୍ର ପାଞ୍ଚୋଟି ଟଙ୍କା, କାନ୍ଧରେ ଖଦଡ଼ ମୁଣି, ଭିତରେ ଖଣ୍ଡିଏ ଗୀତା ଓ ଆଉ ଖଣ୍ଡିଏ ଧୋତିଡ଼ିଇହେଲା ଖଦଡ଼ର । ସେ ପର୍ଯ୍ୟନ୍ତ ସେ କାମିଜ ପିନ୍ଧି ନଥିଲେ । ଦେହରେ ଚଦରଟା ପକାଇ, ଡାହାଣ ପାଖ କାନ୍ଧରେ ଝୁଲା ଦଉଡ଼ିକ ରଖି ବାଁ ପାଖ ଅଣ୍ଟା ପାଖକୁ ତାହା ଓହଳାଇଦେଲେ ଚଦରଟା ଯେ ବାନ୍ଧିହେଲାପରି ଦେହରେ ରହିଯାଏ, ସେଇଥିରେ ସେ ଖରା, କାକର, ଶୀତ ମାରିନିଅନ୍ତି । କିନ୍ତୁ ସେତିକି ଥିଲା ତାଙ୍କ ପ୍ରକୃତିର ଚିହ୍ନ । ଏବେ ତ ସେ ଆଉ ପ୍ରକୃତିକୁ ଯାଉନାହାନ୍ତି, କଣ କରିବେ—ଏଇ ବିଗ୍ରହର ବର୍ତ୍ତମାନ ତାଙ୍କର ।

ଚନ୍ଦ୍ରାମଣି ପଢ଼ା ଛାଡ଼ିବା ପର୍ଯ୍ୟନ୍ତ ଯାହା ପଢ଼ିଥିଲେ ଏ ଭିତରେ ତହିଁର ବହୁତ ଉନ୍ନତି କରିଛନ୍ତି । ଅଗେଇ ଭାବରେ ସେ ବହିପଢ଼ା ଛାଡ଼ି ନଥିଲେ । ଆଶ୍ରମରେ ଥିଲାବେଳେ ଶାଇପଡ଼ିଶାର ଛାତ୍ରମାନେ ତାଙ୍କ ପାଖକୁ ଯେ ପଢ଼ା ବୁଝିବାକୁ ଆସି ସେଥିରେ ପରୀକ୍ଷାରେ ସଫଳତା ଲାଭକରି, ବେଳେ ବେଳେ ପାରିଶ୍ରମିକ ଯାଚୁଥିଲେ ସେଟାକୁ ସେ ଗ୍ରହଣ କରୁ

ନଥିଲେ । କହୁଥିଲେ, ମୁଁ ଟିଉସନ୍ କରୁନାହିଁ । ବର୍ତ୍ତମାନ ସେଇ ଟିଉସନ୍‌ହିଁ ତାଙ୍କର ଜୀବନୋପାୟର ଏକମାତ୍ର ପନ୍ଥା ।

ଚନ୍ଦ୍ରାମଣିବାବୁ ଟିଉସନ କରି କଭଳି ଯେ ଅସୁବିଧାରେ ପଡ଼ିଲେ ସେଇ କଥାହିଁ ଏଠାରେ କୁହାଯିବ । ଓଡ଼ିଶାର ଏକ ଶ୍ରେଷ୍ଠ ମଫସଲ ସହର । ତାହାର ଭିତରେ ଗୋଟିଏ ହାଇସ୍କୁଲ୍, କୋର୍ଟ କଚେରି ଆଉ ଜେଲଖାନା । ଗାଁ ଠାରୁ ନିକଟତର ସହର ବୋଲି ଚନ୍ଦ୍ରାମଣି ସେଇଠାରେ ଆସି ପହଞ୍ଚିଲେ । ଟିଉସନ ଖୋଜିଲାବେଳକୁ ତାଙ୍କ ଦେହରେ ଗୃଦର ନ ଥିଲା, ଥିଲା ଖଣ୍ଡିଏ କାମିଜ । ଦୁଇ ଖଣ୍ଡି କାମିଜ ଥିଲେ ତାଙ୍କର ଅସୁବିଧା ହୋଇ ନଥାନ୍ତା । ଖଣ୍ଡିଏ କାମିଜ ଥିବା ଫଳରେ ଅଳ୍ପ ଦିନ ଭିତରେ ତାଙ୍କୁ ଟିଉସନ ଛାଡ଼ିବାକୁ ପଡ଼ିଲା ।

ଗୃହସ୍ୱାମୀ ବଡ଼ ଉଦାର ଲୋକ । ପିଲାମାନଙ୍କୁ, ବିଶେଷରେ ଝିଅମାନଙ୍କୁ ଶିକ୍ଷା ଦେବାରେ ତାଙ୍କର ସଂକୀର୍ଣ୍ଣତା ଆଦୌ ନ ଥିଲା । ଚନ୍ଦ୍ରାମଣିଙ୍କ ପରି ଜଣେ ପ୍ରଗତିଶୀଳ ଯୁବକଙ୍କୁ ପାଇ ସେ ତାଙ୍କର ପରି-କଳ୍ପନା ପଥରେ ଆଉରି ଆଗେଇବାକୁ ଲାଗିଲେ । ପୁରୁଷ ଚଢ଼ିବା ଖଣ୍ଡିଏ ସାଇକେଲ ତାଙ୍କର ଥିଲା । ସେ ଖଣ୍ଡିକ ଦରକାର ପଡ଼ିଲେ ଚନ୍ଦ୍ରାମଣି ବ୍ୟବହାର କରିବେ—ଏହା ଭାବି ଚନ୍ଦ୍ରାମଣି ପଢ଼ାଉଥିବା ଦୁଇ ଝିଅଙ୍କ ପାଇଁ ଆଉ ଦୁଇ ଖଣ୍ଡି ସାଇକେଲ ମଗାଇନେଲେ; ମାତ୍ର ଯେତେବେଳେ ଜାଣିପାରିଲେ ଯେ ଝିଅମାନେ ସାଇକେଲ ଚଢ଼ିଲାବେଳେ ଚନ୍ଦ୍ରାମଣି ସାଇକେଲ ଚଢ଼ି ଜାଣନ୍ତି ନାହିଁ ବୋଲି କହୁଛନ୍ତି ତାଙ୍କର ବିସ୍ମୟର ସୀମା ରହିଲା ନାହିଁ । ସେ ବା କଣ ଚନ୍ଦ୍ରାମଣିଙ୍କୁ କହିଥାନ୍ତେ, ଚନ୍ଦ୍ରାମଣି ଆଗରୁ ତାଙ୍କ ମନ କଥା ଜାଣିଲାପରି ସଙ୍ଗେ ସଙ୍ଗେ ଉତ୍ତରଦେଲେ—ଗୋପବନ୍ଧୁଙ୍କ ଆଦର୍ଶହିଁ ମୁଁ ଗ୍ରହଣ କରିଛି ।

ଗୃହସ୍ୱାମୀ ତାଙ୍କ ମୁହଁକୁ ଅବାକ୍ ହୋଇ ଚାହିଁଲେ । କଥାଟା ପରିଷ୍କାର ହେଲାନାହିଁ ବୋଲି ଜାଣିପାରି ଚିନ୍ତାମଣି କହିଲେ—ଓଡ଼ିଶାର ପ୍ରତି ଗାଁକୁ ଯେତେବେଳେ ରାସ୍ତାଘାଟ ହୋଇନାହିଁ, କର୍ମୀମାନେ ଯଦି ସାଇକେଲରେ ଯିବାଆସିବା କରିବେ ତାହାହେଲେ ସଡ଼କକଡ଼ ଗାଁ ଛଡ଼ା ଅନ୍ୟ ଗାଁକୁ ଆଉ ଯିବେ ନାହିଁ । ଏଥିପାଇଁ ଗୋପବନ୍ଧୁ କର୍ମୀମାନଙ୍କର ସାଇକେଲ ଚଢ଼ିବାଟାକୁ ପସନ୍ଦ କରୁ ନ ଥିଲେ । ଏହା କେତେବେଳେ ହେବ, ନା, ସବୁ ଗାଁକୁ ସଡ଼କ ହେଲେ ।

ଗୃହସ୍ୱାମୀଙ୍କ ମନକୁ କଥାଟା ଖୁବ୍ ପାଇଲା । ସାଇକେଲ ଚଢ଼ି ଜାଣୁ ନଥିବା ଚିନ୍ତାମଣିଙ୍କର ଗୋଟାଏ ଅଯୋଗ୍ୟତା ବୋଲି ସେ ଯାହା ମନେକରିଆସୁଥିଲେ ଆଉ ସେ ତାହା ମନେ କରିପାରିଲେ ନାହିଁ, ବରଂ ତାଙ୍କ ପ୍ରତି ଅନୁରକ୍ତି ଦୁଇ ଗୁଣ ବଢ଼ିଗଲା । ଭାବିଲେ, ବାସ୍ତବିକ୍ ଚିନ୍ତାମଣି ଦେଶ ପାଇଁ ଚିନ୍ତା କରିପାରେ ।

ଚିନ୍ତାମଣି ଗୃହଶିକ୍ଷକ ହୋଇ ରହିବା ପରେ ଦେଖାଗଲା, ଗୃହସ୍ୱାମୀଙ୍କର ଦୁଇ ଝିଅ ସୂଚନା ଓ ବ୍ୟଞ୍ଜନା ପାଠରେ ଖୁବ୍ ଆଗେଇଛନ୍ତି । ସାଇକେଲ ଗଡ଼ି ଚାଲିଲା ପରି ସେମାନଙ୍କର ପଢ଼ା ଆଗେଇ ଚାଲିଛି । ସେମାନଙ୍କର ବେଶବାସ, ଢଙ୍ଗଢାଙ୍ଗରେ ପରିବର୍ତ୍ତନ ଘଟିଛି । ଏ ସବୁ ହୋଇଛି ସତ; କିନ୍ତୁ ଚିନ୍ତାମଣିଙ୍କର କିଛି ହୋଇନାହିଁ । ଛ' ମାସ ପରେ ଦେଖାଗଲା, ଆସିଲା ବେଳେ ସେ ଯେପରି ପ୍ରତି ତିନି ଦିନରେ ଥରେ ସାବୁନ ଦେଇ ଲୁଗା କାମିଜ ସଫା କରୁଥିଲେ ଏବେ ବି ସେପରି କରୁଛନ୍ତି । ପ୍ରଭେଦ ଏତିକି, ସେତେବେଳେ ନୂଆ ଲୁଗା ସଫା କରୁଥିଲେ ଏବେ ପୁରୁଣା ଲୁଗା କରୁଛନ୍ତି । କାରଣ, ସେଇ ଖଣ୍ଡିଏ କାମିଜ ଓ ଖଣ୍ଡିଏ ଲୁହର ଛଡ଼ା ଦେହରେ ଦେବାକୁ ତାଙ୍କର ଆଉ କିଛି ନ ଥିଲା ।

ଯେତେବେଳେ କାମିଜଟି ଚିରି ଚିରି ଆସିଲା ସେ ସିଲେଇକରି କେତେ ଦିନ ଚଳାଇନେଲେ । ସିଲେଇ ଫାଟିଗଲା ପରେ ତହିଁରେ ତାଳି ପକାଇବା ଦରକାର ପଡ଼ିଲା ।

ଦିନେ ସେହି ତାଳପକା କାମିଜ ପ୍ରତି ଗୃହସ୍ୱାମୀଙ୍କର ଦୃଷ୍ଟି ପଡ଼ିଲା । ସେ ଚନ୍ଦ୍ରାମଣିଙ୍କୁ କିଛି କହିଲେ ନାହିଁ—କାଳେ କଣ ସେ ମନେ କରିବେ ବୋଲି; ମାତ୍ର ଝିଅମାନଙ୍କୁ ଡାକି କହିଲେ—ଦେଖୁଚଟିକି ପିଲେ ମାଷ୍ଟ୍ରଙ୍କୁ ? କାମିଜ ତାଙ୍କର ଚିରିଗଲାଣି, ତିନି ଜାଗାରେ ତାଳି ପକାଇ ପିନ୍ଧୁଛନ୍ତି । ଏତେ ତ ସିଲେଇ ଶିଖିଚ ବୋଲି କହିହେଉଚ, ତାଙ୍କ ପାଇଁ ଖଣ୍ଡେ କାମିଜ କରିପାରୁ ନାହିଁ ?

ବାପାଙ୍କ ମୁହଁରୁ ଏ କଥା ଶୁଣି ଝିଅମାନେ ଉତ୍ସାହିତା ହୋଇ-ପଡ଼ିଲେ । ତା ଆର ଦିନ ସକାଳୁ କନା କିଣାହୋଇ ଆସିଲା, ସୂଚନା କନା କାଟିଲା ତ ବ୍ୟଞ୍ଜନା ସିଲେଇକଲା । ସୂଚନା ପକେଟ ତିଆରିକଲା ତ ବ୍ୟଞ୍ଜନା ବୋତାମ ପାଇଁ ଘର ତିଆରିରେ ଲାଗିଗଲା । ସନ୍ଧ୍ୟାବେଳକୁ ଗୋଟାଏ ନୂଆ କାମିଜ ପଢ଼ାଘରେ ମାଷ୍ଟ୍ରଙ୍କ ପାଇଁ ଥୁଆ !

ସନ୍ଧ୍ୟା ହେଲା । ଦୀପ ଲାଗିଲା । ମାଷ୍ଟ୍ରେ ଆସିଲେ ପଢ଼ାଇବା ପାଇଁ । ସେ ଦିନ ଗୃହସ୍ୱାମୀ ମଧ୍ୟ ଆସିଲେ ଝିଅମାନଙ୍କର ବିଶେଷ ନିମନ୍ତ୍ରଣ ଯୋଗେ । ମାଷ୍ଟ୍ରେ ଲଗାଇବେ ନୂଆ କାମିଜ, ତାହା ପୁଣି ଛାତ୍ରୀମାନେ ହାତରେ ସିଲେଇକରିଛନ୍ତି ! ଏ ତ ଗୋଟାଏ ଛୋଟିଆ ଉତ୍ସବ ପରି !

କିନ୍ତୁ ପର ମୁହୂର୍ତ୍ତରେ ଉତ୍ସବଟା କେବଳ ହସ କୌତୁକରେ ପରିଣତ ହେଲା । ବଡ଼ ସଂକୋଚରେ ଚନ୍ଦ୍ରାମଣି ଦେହରୁ ଚିରା କାମିଜଟି କାଢ଼ି ଯେତେବେଳେ ନୂଆ କାମିଜଟିକୁ ଲଗେଇ ଠିଆହେଲେ, ଜଣାପଡ଼ିଲା, ସତେ ଯେପରି ସର୍କସ ଭିତରେ ଜଣେ ବିଦୂଷକ ହଠାତ୍ ଆବିର୍ଭୂତ ହୋଇଛନ୍ତି । କାମିଜଟା ଲମ୍ବରେ ଆଣ୍ଠୁ ଦେଇ ପେଣ୍ଡୁଲା ତଳକୁ ପଡ଼ିଲା, କାମିଜର ହାତ ଲମ୍ବରେ ଦୁଇ ହାତର ମଝି ଆଙ୍ଗୁଠିକି ଲୁଚେଇପକାଇଲା ।

ଗୃହସ୍ୱାମୀ ନ ହସି ରହିପାରିଲେ ନାହିଁ । ଝିଅମାନେ ହସିଲେ, ଚନ୍ଦ୍ରାମଣି ବି ହସିଲେ; କିନ୍ତୁ ଏ ହସିବା ଭିତରେ ବ' ଭଉଣୀ ଟୋକିଏ ସହାନୁଭୂତି ଦେଖାଇବା ପରି ଏକାବେଳକେ କହିପକାଇଲେ—ବେଶି ସମୟ ଲାଗିବ ନାହିଁ, କାଲିକି କାଟି ସିଲେଇକରିଦେବୁ । ଏହା କହି ଦୁହେଁଯାକ ସଲଜ୍ଜ ବଦନରେ ଚନ୍ଦ୍ରାମଣିଙ୍କ ଆଡ଼କୁ ଚାହିଁଲେ । ଚନ୍ଦ୍ରାମଣି ସିଧାସଳଖେ ସେମାନଙ୍କ ମୁହଁକୁ ଚାହିଁ ନ ପାରି କାମିଜ କାଡ଼ି ସେହି ଚିରା କାମିଜକୁ ପୁଣି ଦେହରେ ଗଳାଇ ପଢ଼ାଇବା କାମରେ ଲାଗିଗଲେ; କିନ୍ତୁ ସେଦିନ ପଢ଼ାପଢ଼ିଟା ଆଉ ଭଲ ହେଲା ନାହିଁ । ମାଷ୍ଟ୍ରଙ୍କୁ ଅପମାନ ମିଳିଚି ଭାବି ସେମାନେ ବହିକୁ ମୁହଁ ପୋତି ବସିଲେ, ଚନ୍ଦ୍ରାମଣି ମଧ୍ୟ ଯେପରି ପ୍ରଗଲ୍‌ଭ ଭାବରେ କହିଯାନ୍ତି କହିପାରିଲେ ନାହିଁ ।

ସୂଚନା ଓ ବ୍ୟଞ୍ଜନା ତା' ଆରଦିନ ମକାଳୁ ଛକାଛକି ହୋଇ ରହିଲେ କିଏ ମାଷ୍ଟ୍ରଙ୍କ କାମିଜକୁ ଠିକ୍ କରି ଦେଇ ତାଙ୍କର ପ୍ରିୟ ଛାତ୍ରୀ ହେବ । ଯେତେବେଳେ ସାନ ଭଉଣୀ ଅନ୍ୟ କାର୍ଯ୍ୟରେ ବ୍ୟସ୍ତ, ବଡ଼ ଭଉଣୀ ହଠାତ୍ କାମିଜଟାକୁ ନେଇ ଯାଇ ଅଳ୍ପ ସମୟ ଭିତରେ କେହି ନ ଜାଣିଲା ପରି କାଟି ଠିକ୍ କରି ଯଥା ସ୍ଥାନରେ ଥୋଇଦେଇ ଗଲା । ଏ କଥା ସାନ ଭଉଣୀ ତ ଜାଣେ ନାହିଁ, ସେ ସୁଯୋଗ ଉଣ୍ଡୁଥିଲା କାମିଜଟି ଠିକ୍ କରିବା ପାଇଁ । ବଡ଼ ଭଉଣୀ ଗାଧୁଆ ଘରେ ପଶିଲାବେଳେ ସେ ଅତି ତରତରରେ କାମିଜଟା ନେଇ ଆସି ଆନୁମାନିକ ପାଞ୍ଚ ଇଞ୍ଚ ଲମ୍ବରେ କାଟି ସିଲେଇକରି ପୁଣି ନେଇ ଯଥା ସ୍ଥାନରେ ଥୋଇଦେଲା— ସନ୍ଧ୍ୟା ବେଳକୁ ଯେତେବେଳେ ଚନ୍ଦ୍ରାମଣି ପଢ଼ାଇବାକୁ ଆସିଲେ ସେ ବି ଭାବୁଥିଲେ ସେ କାମିଜଟା ମତେ ନ ହଅନ୍ତା କି ! ତେଣେ ଗୃହସ୍ୱାମୀ ଠିକ୍ ବେଳ ଜାଣି ଅନ୍ୟ ଘରୁ ଝିଅମାନଙ୍କୁ ଡାକି କହିଲେ— କାମିଜଟା ଠିକ୍ କରିଦେଇଚ ତ ? ଦୁଇ ଝିଅ ଦୁଇ ଜାଗାରେ ଥିଲେ, ଏକ ସମୟରେ ଦୁହେଁ ଉତ୍ତରଦେଲେ—ହଁ ଠିକ୍ କରି ଦେଇଛୁ । ଗୃହସ୍ୱାମୀ ତା'ପରେ

ଯେ ଘର ଭିତରକୁ ପଶିଆସି ଚନ୍ଦ୍ରାମଣିଙ୍କୁ ଲକ୍ଷ୍ୟକରି କହିଲେ — ଦେଖ ଚନ୍ଦ୍ରାମଣି ! ପିଲାମାନେ ନୂଆଟିରେ ସିଲେଇ ଶିଖୁଛନ୍ତି ନା, କାଲି ଭୁଲ୍ କରିଦେଇ ସେମାନେ ଦୁଃଖ କରୁଛନ୍ତି । ଆଚ୍ଛା, ଲଗାଅ ତ, ଆଉ କିଛି ଅସୁବିଧା ହେବ ନାହିଁ । ଚନ୍ଦ୍ରାମଣି ପୁରୁଣା କାମିଜକୁ ନ କାଢ଼ି ନୂଆଟିକୁ ହାତରେ ନେଇଯିବା ପାଇଁ ଅଙ୍ଗଭଙ୍ଗୀ ଦେଖାଇଲା ବେଳେ ସେ କହିଲେ—ନା ନା, ଏ କପରି କଥା ? ଆମର ପ୍ରଥା ଅଛି ନୂଆ ଲୁଗା ପିନ୍ଧିଲେ ପୁରସ୍କାର ମିଳେ; ତୁମକୁ ଏଠି ପିନ୍ଧିବାକୁ ହେବ । ଚନ୍ଦ୍ରାମଣି ବାଧ୍ୟହୋଇ ନୂଆ କାମିଜଟାକୁ ଦେହରେ ଗଳାଇ ବଡ଼ ଅପ୍ରସ୍ତୁତ ହୋଇ ପଡ଼ିଲେ । କାଲିର ଠିକ୍ ଓଲଟା ! ହାତ ଦୁ'ଟା କହୁଣୀ ପାଖପାଖି କଟିଯାଇଛି, ଆଉ, ତଳପାଖଟା ଜଂଘ ପର୍ଯ୍ୟନ୍ତ ଉଠିଆସିଛି । ଏ ଦୃଶ୍ୟ ଦେଖି ଗୃହସ୍ୱାମୀଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ତେଣେ ସୂଚନା ଓ ବ୍ୟଞ୍ଜନା ଅଧା ମୁହଁ ପୋଛି ଥରେ ତାଙ୍କୁ ଆଉ ଗୃହିଣୀରେ ମୁହଁ ମୁହଁ ପୋଛିଦେଲେ । ଉଭୟ ମନର କଥା ଉଭୟେ ବୁଝି ପାରିଲେ । ଗୃହସ୍ୱାମୀ ଯେ ବୁଝି ନ ପାରିଲେ ତାହା ନୁହେଁ, ସବୁଠାରୁ ବେଶି ବୁଝିଲେ ଚନ୍ଦ୍ରାମଣି । ସୂଚନା ଓ ବ୍ୟଞ୍ଜନା ଉଭୟଙ୍କର ମନକୁ ଏକା ସୂତ୍ରରେ ବାନ୍ଧିଲା ପରି ସେ କାମିଜଟିକୁ ହାତରେ ଧରି ଯେ ସେଦିନ ଗଲେ ଆଉ ଫେରିଲେ ନାହିଁ ।

ଏଥିରେ କାହା ମନ କେଉଁଠି, ପରେ ଗୃହସ୍ୱାମୀ ମଧ୍ୟ ବୁଝିଲେ, କିନ୍ତୁ ଏ ଜଟିଳ ସମସ୍ୟାର ସମାଧାନ କିଛି କରିପାରିଲେ ନାହିଁ ।

# ବଶି ରଥେ

ଏ ଗଳ୍ପର ବଶି ରଥେ ଦିନେ ହଠାତ୍ ତାଙ୍କ ଗାଁ ଚନ୍ଦନପୁର ଅଞ୍ଚଳରେ ଜଣେ ଖୁବ୍ ଜଣାଶୁଣା ଲୋକ ହୋଇଉଠିଲେ । ଆଗ ଆଗ ପାଇପଡ଼ିଶା ଲୋକେ ତାଙ୍କୁ ଜାଣିଲେ; ତା ପରେ ଗାଁଯାକ ଜାଣିଲେ, ଶେଷରେ ଆଖପାଖ ଦଶ କୋଶ ପୃଥିବୀରେ ନାଁ ଡବ ଡବ ବାଜିଲା—"ଚନପୁରର ବଶି ରଥେ ଏକା ଗୋଟାଏ ମଣିଷ !"

"ଚନପୁରର ବଶି ରଥେ" ଦେଖିବାକୁ ଯେପରି କିଛି ଗୋଟାଏ ମଣିଷ ପରି ମଣିଷ ନୁହନ୍ତି । ତାଙ୍କର ରୂପ ଗୌରବ ଆଦୌ ନ ଥିଲା । ଲମ୍ବରେ ପ୍ରାୟ ଚାରି ଫୁଟ ଓ ଓସାରରେ ପ୍ରାୟ ଦେଢ଼ ଫୁଟ ମାପରେ ତାଙ୍କ ଶରୀରଟା ରହିଯିବା କଥା । ଛୋଟ ଟାଙ୍କଠାରୁ ଆହୁରି ସରୁ ସରୁ ଗୋଡ଼, ବଡ଼ ଗୋଡ଼ ପରି ସରୁ ସରୁ ଦୁର୍ବଳ ହାତ ଦୁଇଟା ଛଡ଼ା ବାକି ଯେ ଗଣ୍ଡି ଖଣ୍ଡିକ ଓ ମୁଣ୍ଡଟା ତାଙ୍କ ଦେହ ସୀମା ଭିତରେ ଥିଲା । ତାହା କପରି ଅତର୍କିତରେ କମ୍ବା ଅସାବଧାନରେ କେଉଁ ବିଧାତା ସଜେଇ ଥିଲାପରି ଜଣାପଡ଼େ । ଭ୍ରୂଲତା ଦୁଇଟା କପାଳଠାରୁ ଟିକିଏ ଉଚ୍ଚ । ଆଖି ଦୁଇଟା ଭ୍ରୂଲତାଠାରୁ ପ୍ରାୟ ଇଞ୍ଚେ ତଳେ ଥିବାରୁ ଗାତ ଭିତରେ ନିଆଁ ଜଳିଲେ ଉପରକୁ ଯେପରି ଦିଶେ ରଥେ ବି ଠିକ ସେପରି ଅନ୍ୟକୁ ଚାହିଁଲାବେଳେ ସେହିପରି ଦେଖାଯାଏ । ରାଜପୁତନା ଦେଶର ସମତଳ ମରୁଭୂମିର ଠାଏ ଠାଏ ଛୋଟ ପାହାଡ଼ ଯେପରି ଅସମାନ ଦେଖାଯାଏ ନାକଟା ଠିକ୍ ସେହି ଅନୁପାତରେ ତାଙ୍କ ମୁହଁ ଉପରେ ଥିଆ । ରୂପବାନ୍ ଲୋକର ସଂସାରରେ ଖ୍ୟାତି ଅଛି; କିନ୍ତୁ ରୂପହୀନ ଲୋକ ଯେ ଖ୍ୟାତି ଅର୍ଜି ପାରେ ଏକଥା ପ୍ରମାଣ କରାଇବା ପାଇଁ କେଉଁ ରୂପ ବିରୋଧୀ ଦେବତା ବୋଧହୁଏ ବଶି ରଥଙ୍କୁ ଗଢ଼ିଥିଲା ।

ତିରିଶି ବର୍ଷ ବୟସ ପର୍ଯ୍ୟନ୍ତ ବଣି ରଥେ ନିଜ ଗାଁ ଛାଡ଼ି ବେଶି ଦୂର ଗାଁକୁ କେବେ ହେଲେ ଯାଇନଥିଲେ । ଏପରି କି ନିଜ ଗାଁ ପଛପଟେ ଥିବା ବେଣୁପଲ୍ଲୀ, ମାଧବପୁର ଆଦି ଗାଁ କଥା ସେ ସବୁ ଦିନ ଦଶ ପାଞ୍ଚ ଥର ଗାଆଁ ଲୋକଙ୍କ ମୁହଁରୁ ଶୁଣିଲେ ମଧ୍ୟ ଥରେ ହେଲେ ଦେଖି ନଥିଲେ । କାରଣ ସେ ସବୁ ଗାଆଁରେ ତାଳଗଛ ନଥିଲା । ତାଳଗଛ ସହିତ ବଣି ରଥଙ୍କର ସମ୍ପର୍କ ରହିବା କଥା ଅତି ଗୁରୁତର, ତାଳପତ୍ରରେ ପୋଥି ଲେଖିବା ତାଙ୍କର ନିତ୍ୟ ବ୍ୟବସାୟ । ବିଷ୍ଣୁ ସହସ୍ର ନାମ ଠାରୁ ଆରମ୍ଭ କରି ସାତ ଖଣ୍ଡ ରାମାୟଣ ପର୍ଯ୍ୟନ୍ତ ଚନ୍ଦନପୁର ଗାଁରେ ଯେତେ ପୋଥି ଅଛି ସେଥିରୁ ବାର ଅଣ ପ୍ରାୟ ବଣି ରଥଙ୍କ ଲେଖା । ଏ ତାଳପତ୍ର ଲେଖା ପ୍ରତି ବଣି ରଥଙ୍କର ଅତିମାତ୍ରାରେ ମମତା ଥିଲା ବୋଲି କହିଲେ ଠିକ୍ ହେବ । ଏଥିର କାରଣ ଅଛି । ବଣି ରଥଙ୍କର ଜନ୍ମ ଯେଉଁ ଯୁଗରେ ସେଇଟା ହେଉଛି ତାଳପତ୍ର ଲେଖାର ଅବସାନ ଓ କାଗଜ ଛାପା ବହିର ଅଭ୍ୟୁଦୟ ଯୁଗ । ତାଳପତ୍ର-ସଭ୍ୟତାର ପରମ ନିଷ୍ଠାବାନ ଉପାସକ ରୂପେ ସେ ଚନ୍ଦନପୁର ଗ୍ରାମରେ ଅବତାର ଗ୍ରହଣ କରିଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । କାଗଜ ଛାପା କଣାଣ, ପୁରାଣ, ଛାନ୍ଦ ଚଉପଦୀ ଦେଖି ସେ ବଡ଼ ବ୍ୟସ୍ତ ହୋଇ ପଡ଼ୁଥିଲେ । କହୁଥିଲେ, ଏଗୁଡ଼ାକ ଦି'ଦିନର କଥା, ଆଜି ଅଛି କାଲି ଯିବ । ଧରି ନ ଜାଣିଲେ ଛିରିଯିବ; କିନ୍ତୁ ତାଳପତ୍ର ଖେଦାର ଏ ରଙ୍ଗ ଚିତା ଆଦୌ ନାହିଁ । ତାଳପତ୍ରର ଗୌରବ ବଢ଼ାଇବା ପାଇଁ ସେ ପ୍ରତିଜ୍ଞା କରିଥିଲେ ଏବଂ ଗାଆଁରେ କାଗଜଛାପା ଯେତେ ପରିମାଣରେ ପଶିଲା ତାକୁ ସେ ନିଜର ଖେଦା ଲେଖାରେ ପରାସ୍ତ କରିବେ ବୋଲି ଲେଖନ ଧରି ବସିଲେ । କେଉଁ କେବେ ଯେବେ ଭବିଷ୍ୟତରେ ଚନ୍ଦନପୁର ଗାଁର ତାଳପତ୍ର ପୋଥିର ପ୍ରଦର୍ଶନୀ ଖୋଲାଯିବ ସେଠାରେ ଶ୍ରୀମାନ ବଣି ରଥଙ୍କ ପାରଦର୍ଶିତା ଜଣାପଡ଼ିବ, ଏବେ ଏ ଜଳ୍ପନାରେ ତାହା ବର୍ଣ୍ଣନା କରିବାକୁ ଏ ଲେଖକର ସାମର୍ଥ୍ୟ ନାହିଁ ।

ସେ ଯାହା ହେଉ, ବଣି ରଥେ ନିଜ ଗାଁ ଛଡ଼ା ଆଉ କେଉଁ ଗାଆଁକୁ କେବେ ଯେବେ ଯାଉଥାଆନ୍ତି ତାହା କେବଳ ତାଳପତ୍ର ପାଇବା ଆଶାରେ ମାତ୍ର, ଅନ୍ୟ କୌଣସି କାରଣରୁ ନୁହେ । ଅବିରତ ଦିନରେ ସାତ ଘଣ୍ଟା କାଳ ପିଣ୍ଡାରେ ସେ ବସିଥାଆନ୍ତି ଏବଂ ଲେଖନ ମୁନକୁ ତାଳପତ୍ର ଉପରେ

ଚଳାଉଥାନ୍ତି । ଦୁଇ ଆଣ୍ଠୁକୁ ଏକାଠି ଯୋଡ଼ିଦେଇ, ତାଳପତ୍ର ଖେଦାକୁ ତା ଉପରେ ରଖି ଯେତେବେଳେ ସେ ସୂକ୍ଷ୍ମାକ୍ଷ୍ ଲେଖନର ମୂନକୁ ଚରଚର କରି କାଗୁଡ଼ କାଟିଲାପରି ଚଳାଇଯାଆନ୍ତି ସେତେବେଳେ ତାଙ୍କ ଓଠ ଦୁଇଟା ଠିକ୍ ଲେଖନର ମୂନ ପରି ଗୋଳଆଡୋଇଯାଏ । ଜାନ୍ନୁ ପାଖେ ଦୁଇ ବାହୁ ଉପରକୁ ଫୁଲିଉଠେ । ପିଣ୍ଡାତଳେ ଦାଣ୍ଡରେ ଯେତେ ଯାହା ଘଟିଲେ ମଧ୍ୟ ସେଥିକି ତାଙ୍କର ଆଖି କାନ ନଥାଏ । କିଏ ଡାକଲେ ପାଞ୍ଚ ଥରରେ ଶୁଣନ୍ତି । ଆଉ ପ୍ରଚକ୍ଷୁକୁ ତାଙ୍କୁ ଉପରକୁ ଟିକିଏ ଟେକିଦେଇ ଚାହାନ୍ତି ।

ଚନ୍ଦନପୁରର ବଣି ରଥେ ଯେ ଦିନେ ଦଶ ପାଞ୍ଚ ଖଣ୍ଡ ଗାଁରେ ଖ୍ୟାତି ଲାଭ କରିବେ, ତାଙ୍କୁ ଦେଖିବାକୁ ବହୁ ଲୋକ ଆସି ଦୁଆରେ ହାଜର ହେବେ ଏ କଥା ବଣି ରଥଙ୍କ ଜଣାଶୁଣା ସମସାମୟିକ ଲୋକେ କଳ୍ପନା ସୁଦ୍ଧା କରି ନଥିଲେ । କିନ୍ତୁ ସଂସାରରେ ଅନେକ ନ ହେବା କଥା ହୋଇ-ଯାଉଛି । ମଣିଷ ଯାହା ଏବେ ଭାବିପାରୁ ନାହିଁ ତାହା ଆଗାମୀ କାଳର କିମ୍ବଦନ୍ତୀ ହୋଇ ଘଟିଯିବ ।

ଠିକ୍ ସେହିପରି ରଥଙ୍କ ଭାଗ୍ୟକୁ ଗୋଟାଏ ଅସମ୍ଭବ ଖ୍ୟାତି ଯୁଟିଲା । ଏଥିପାଇଁ ରଥେ ଲେଶମାତ୍ର ଦାୟୀ ନୁହନ୍ତି । ଦାୟୀ ତାଙ୍କର ସହଧର୍ମିଣୀ କଙ୍କଣବାଳା । ଚନ୍ଦନପୁର ଗାଁରେ ସେ ସମୟରେ ଅନେକ ସ୍ତ୍ରୀ ଲୋକ ଥିଲେ । ବେଶ ବାସ, ବର୍ଣ୍ଣ, ବଚନ, ଚାଲି, ଚଳଣି, ବ୍ୟବହାରରେ ଜଣକ ସହିତ ଅନ୍ୟକୁ ଭୁଲିବାର କ୍ଷେତ୍ର ଥିଲା, କିନ୍ତୁ କଂକଣ ଥିଲେ ତାଙ୍କ ପରି ସେ ଜଣେ ମାତ୍ର । ରଥେ ଯେପରି ସବୁବେଳେ ଦୁଆରେ ବସି ଲେଖୁଥାନ୍ତି, ଶ୍ରୀମତୀ କଙ୍କଣ ସବୁବେଳେ ସେପରି ଶାଗୁପଡ଼ିଶା ଭିତରେ ଗପ କରୁଥାଆନ୍ତି । ଲେଖି ଲେଖି ରଥଙ୍କ ଓଠ ସବୁବେଳେ ଗୋଳଆ ଓ ଶ୍ରୀମତୀ କଂକଣଙ୍କ ଅଧର ହସି ହସି ଓସାର । ରଥେ ମୁହଁ ପୋତି ସବୁବେଳେ ମନରେ ଲେଖୁଥାଆନ୍ତି ତ ଶ୍ରୀମତୀ ମୁହଁ ଟେକି ସବୁବେଳେ କିଛି ନା କିଛି କହୁଥାନ୍ତି । ତେଣୁ ଗାଆଁ ଭିତରେ ଶ୍ରୀମତୀ କଂକଣବାଳାଙ୍କର ନାଁଗମହଲରେ ଫର୍ଚ୍ଚାପଣିଆରେ ଖ୍ୟାତି ବେଶି । ଗାଁରେ ବାଦବିବାଦ ଉପସ୍ଥିତ ହେଲେ, ଶାଶୁ ଓ ବୋହୂ ଭିତରେ ସଂଘର୍ଷ ଲାଗିଲେ, ନଣନ୍ଦ

ଓ ସଜ୍ଜନ ଭିତରେ ଅନେକ ହେଲେ କଂକଣବାଳାଙ୍କର ଆବର୍ଣ୍ଣବ ଭୁରନ୍ତ ହୁଏ । ତାଙ୍କର ପ୍ରୋପାଗଣ୍ଡା ବା ପରପ୍ରଶ୍ନର ନାଜ ପ୍ରଶ୍ନରଠାରୁ ଆହୁତ ପ୍ରଶସ୍ତ । ଯେଉଁ କଥା ଅନ୍ୟଦ୍ୱାରା ମାସକେ ପ୍ରଶ୍ନଚରିତ ହୋଇପାରିବ ନାହିଁ, ଶ୍ରୀମତୀ କଂକଣ ଦିନକେ ତାହା ପାରିଜନ୍ତି । ଯେଉଁ ଘଟଣା ପ୍ରଶ୍ନର-କରିବା ଅନ୍ୟ ପକ୍ଷରେ ନିତାନ୍ତ ଅସମ୍ଭବ, ତାଙ୍କ ପକ୍ଷେ ତାହା ଅତ୍ୟନ୍ତ ସହଜ । ବଢ଼େଇ କାଠକୁ ଯୋଡ଼ି ନୂତନତା ଆଣେ, କମାର ଲୁହାଯୋଡି ନୂତନ ଜିନିଷ ତିଆରିକରେ, ସୁନାରି ସୁନା ପିଟି ଅଳଙ୍କାର ନିର୍ମାଣ କରେ । ଠିକ୍ ସେହିପରି ଶ୍ରୀମତୀ କଂକଣ ଚନ୍ଦନପୁରର ବାରିପଟେ ଅଠିକଣା କଥାକୁ ଠିକଣା କରିପାରନ୍ତି । ଅସମ୍ଭବ କଥାକୁ ନିଜର ସ୍ୱାଭାବିକ ବର୍ଣ୍ଣନାରେ ବିଶ୍ୱାସ କରାଇପାରନ୍ତି । ତେଣୁ ତାଙ୍କର ପ୍ରଶ୍ନର ଫଳରେ ଅଜ୍ଞାତ, ଅଖ୍ୟାତ ବଣି ରଥେ ଯେ ଦଶ ପାଞ୍ଚ କୋଶ ରାଜ୍ୟରେ ଖ୍ୟାତ ହୋଇଉଠିଲେ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି କାରଣ ନାହିଁ ।

ଶ୍ରୀମତୀ କଂକଣବାଳା ନିତାନ୍ତ ନିରୀହ, ଉଦାସ ବଣି ରଥଙ୍କ ନାମରେ ଚନ୍ଦନପୁର ଗାଁର ବାରିପଟେ ଦିନେ କ'ଣ ପ୍ରଶ୍ନରକଲେ କେଜାଣି, ହଠାତ୍ ଗାଁ ମକଦ୍ଦମଙ୍କ ଚାକର ତାଙ୍କ ଦୁଆରେ ଆସି ହାଜର । ଚାକର କହିଲା, ମକଦ୍ଦମେ ଡକେଇଚନ୍ତି, ଏଇକ୍ଷଣି ଆସ, ତମକୁ ସେ କ'ଣ ପଚାରିବେ ।

ରଥେ ଆଣ୍ଠୁରୁ ଖେଦା ଲେଖନକୁ ତଳକୁ ଓହ୍ଲାଇ ଚାକର ମୁହଁକୁ ବାଲୁ ବାଲୁ ଚାହିଁରହିଲେ । ଏପରି ଡାକରା ସେ ଜୀବନରେ କେବେ ପାଇ ନଥିଲେ । ତାଙ୍କୁ ଡାକନ୍ତି କେବଳ କଂକଣବାଳା ଏବଂ ସେ ଡାକରାକୁ ସେ ଅଗ୍ରାହ୍ୟ କରିପାରନ୍ତି ନାହିଁ । ମକଦ୍ଦମଙ୍କ ଡାକରା ଶୁଣି ସେ ମନେ ମନେ ସ୍ଥିର କରିଦେଲେ – ବୋଧହୁଏ ରାମାୟଣ ମହାଭାରତ ଖେଦା ଲେଖିବାକୁ କହିବେ । ଚାକରକୁ କହିଲେ—ମକଦ୍ଦମେ ଡକେଇଚନ୍ତି ? ଆଚ୍ଛା, ଏଇକ୍ଷଣି ଯିବି ।

ରଥେ ଗଲେ ଏବଂ ଆସିଲେ; ମାତ୍ର ଏଇ ଯିବାଆସିବା ଘଣ୍ଟାକ ଭିତରେ ଗୋଟାଏ ଅତି ବଡ଼ କଥା ଘଟିଗଲା । ରଥେ ଘରକୁ ଆସି ଦାଣ୍ଡ

ଘରେ ଆଗ ଆଣ୍ଠୁ ଭାଙ୍ଗି ବସିପଡ଼ିଲେ । ମକଦ୍ଦମେ ଉଠାଇଥିଲେ ଜାଣି କାଂକଣିବାଲା ଗୌରବରେ ମୁଚୁ ମୁଚୁ ହସୁଥିଲେ । ରଥେ କିନ୍ତୁ ସେ ହସ ଦେଖି କିଛି ଉତ୍ତର ଦେଇପାରିଲେ ନାହିଁ, ଭୟ ବିସ୍ମୟ ଆନନ୍ଦରେ ସେ ନିଜକୁ ଏକ ପ୍ରକାର ହରାଇବସିଲେ । ଗୋଟାଏ ଗୋଟାଏ ନିଶ୍ୱାସ ପକାଇ, ଥରେ ଥରେ ଆଖି ମୁଦି କ'ଣ ଭାବୁଥିଲେ । ଶ୍ରୀମନ୍ତ କାଂକଣି ଦୁଆରମୁହଁରେ ଗୋଡ଼ିଲେଇ ହେଲାପରି ଠିଆହୋଇ ଦରହସା ମୁହଁରେ ପଚାରିଲେ—ପାଇଥିଲ ? କ'ଣ ହେଲା ?

ରଥେ ହସିବେ କି ରାଗିବେ ଆଗ କିଛି ବୁଝିପାରିଲେ ନାହିଁ । ରାଗିବାକୁ ସାହସ ନଥିଲା, ହସିବାକୁ ଇଚ୍ଛା ନଥିଲା । କାହା ଉପରେ ରାଗିବେ ? ଶ୍ରୀମନ୍ତଙ୍କ ଉପରେ, ପରାଜୟ ସୁନିଶ୍ଚିତ । ହସିଲେ ଆହୁରି ବିପଦ ଥୁଆ, ଆଉରି ଡାକରା ଆସିବା ସମ୍ଭାବନା । ତେଣୁ ସେ ନିର୍ଦ୍ଦିଷ୍ଟ ଭାବରେ ଶ୍ରୀମନ୍ତ କାଂକଣିବାଲାଙ୍କୁ ଚାହିଁରହିଲେ । କହିଲେ—କ'ଣ ହେଲା ? ଏଥର ସିନା ବର୍ତ୍ତିଗଲା, ଆଉ ଥରେ ଯେବେ ଏପରି ହେବ ମୋର ଇଜ୍ଜତ ଯିବଟି !

ଶ୍ରୀମନ୍ତ ହସି ଦେଇ କହିଲେ—ଜିନିଷ କ'ଣ ମିଳିଲା ?

"ହଁ ମିଳିଲା; ମାତ୍ର ମୁଁ କହିନାହିଁ । ତାଙ୍କ ଗୃହିଣୀ ନାଁ ମୋ ଭାଗ୍ୟକୁ ମଲା ହୋଇଯାଇଥିଲା । ମୁଁ ତ ତାହା ଆଗରୁ ଜାଣି ନାହିଁ । ମକଦ୍ଦମଙ୍କ ବାରମ୍ବାର ପ୍ରଶ୍ନରେ ଯେତେବେଳେ ହତବୁଦ୍ଧି ହୋଇପଡ଼ିଲି ଏତିକି ମାତ୍ର କହିଲି—'ଏବେ କରୁଚ କଣ, ମଲା !' ଏଇଥିରୁ ସବୁ ବାହାରି ପଡ଼ିଲା । ମଲାଠାରୁ ଜିନିଷ ମିଳିଗଲା, ମୋତେ ଏଇ ମିଳିଛି ଦଶ ଟଙ୍କା ବକ୍‌ସିସ ।"

ଏହା କହି ରଥେ ଝଣ କରି ଦଶ ଟଙ୍କା ପକାଇଦେଲେ । କୁଆ ଝାମ୍ପିଲା ପରି ଶ୍ରୀମନ୍ତ କାଂକଣି ବାଲା ତାହା ଧରୁ ଧରୁ ରଥେ କହିଲେ— ଏବେ ପୋକ କାଟୁ କାଟୁ 'ଠ' ହେଲା । ମୁଁ ଜ୍ୟୋତିଷ ଜାଣିବା କଥା ଆଉ ଯେବେ କିଏ ଜାଣେ ମୋର ଆଉ ଗତି ନାହିଁ ।

ପଣ୍ଡିତଙ୍କର ଏ ପ୍ରକାର ମତାମତ ଦେଖି ଶ୍ରୀମତୀ କଂକଣୀଙ୍କର କିନ୍ତୁ ଉତ୍ସାହ କମିଲା ନାହିଁ । କହିଲେ—କାହିଁକି ? ତୁମେ କ'ଣ ଜାଣି-ନାହିଁକି ? ଜାଣୁ ନଥିଲେ ମୁଁ ଅଳଙ୍କାର ପାଇଁ ଲୁଷିତ ବୋଲି କମିତି କହିଦିଅ । ଶ୍ରୀମତୀଙ୍କର ଏ ପ୍ରକାର ସୁଆଗ ବାଣୀରେ ରଥେ ମୃଦୁକି ହସା ଦେଲେ ସତ; କିନ୍ତୁ ମନେ ମନେ ଭାବିଲେ—ବିପଦର ଏ ଶେଷ ନୁହେ, ଆରମ୍ଭ ।

କି ଶୁଭ ମୁହୂର୍ତ୍ତରେ ଶ୍ରୀମତୀ କଂକଣୀବାଲା ରଥଙ୍କ ନାମରେ ପ୍ରଚାର ଆରମ୍ଭ କରିଥିଲେ କେଜାଣି, ଏ ଘଟଣାର ଅଠଚାଳିଶି ଘଣ୍ଟା ମଧ୍ୟରେ ଚନ୍ଦନପୁର ଚାରିପଟେ ଦଶ ଖଣ୍ଡ ଗାଆଁରେ ଖବର ରଟିଗଲା ଯେ ହରି-ରଥେ ଜଣେ ଖାସା ସବଜାଣ ପାଲଟିଛନ୍ତି, ମକଦ୍ଦମଙ୍କ ଘର ଦେଢ଼ ଶହ ଟଙ୍କାର ଚୋରିମାଲ ପଦେ କଥାରେ ବାହାର କରିଦେଇଛନ୍ତି । ଦେଖୁ ଦେଖୁ ରଥଙ୍କର ଘୋର ବିପଦ ମାଡ଼ିଆସିଲା । ଦିନକ ଭିତରେ ସାତ ଜଣ ଲୋକ ଆସି ତାଙ୍କ ଦୁଆରେ ହାଜର ହୋଇଗଲେ । କାହାର ଗାଈ ହଜିଛି ତ କାହାର ଛାଳି ହଜିଛି; କିଏ ଲୁଗା ହଜେଇଚି ତ କିଏ ସୁନା ମୁଣ୍ଡିବସା ନାସଦାମାଟା ହଜାଇଚି; କାହା ଝିଅର ଖଡ଼ୁ ପଟେ କେଉଁଠି ପଡ଼ି-ଯାଇଛି ତ କାହା ବୋହୂର ବଳା ପାହୁଡ଼ ମିଳୁ ନାହିଁ । ରଥେ ଏ ସବୁ ବିପଦ କାହାଣୀ ଶୁଣିବାକୁ ଆଦୌ ପ୍ରସ୍ତୁତ ନ ଥିଲେ । ଦୁଆରମୁହଁରେ ଏତେ ଲୋକଙ୍କ ସମାଗମ ଦେଖି ଓ ଲୋକଙ୍କର ସ୍ୱତନ୍ତ୍ର ଦୁଃଖ କାହାଣୀ ଶୁଣି ଶୁଣି ସେ ଏତେ ବିଚଳିତ ହୋଇପଡ଼ିଲେ ଯେ ଲେଖନ ପତ୍ର ଛାଡ଼ି ଘର ଭିତରକୁ ଯାଇ ଶେଯ ପକାଇ ଶୋଇପଡ଼ିଲେ, ଆଉ ଶ୍ରୀମତୀ କଂକଣୀ-ବାଳାଙ୍କୁ ଲକ୍ଷ୍ୟକରି ଭୁନ ଭୁନ କରି କ'ଣ ଗାଳି ଦେଲେ । କାରଣ ବଡ଼ ପାଟିରେ ତାଙ୍କୁ ଶୁଭିଲା ପରି କହିଲେ ସେ ଯେ ଶେଷରେ ଆହୁରି ବିବ୍ରତ, ଅପଦସ୍ତ ଓ ପରାଜିତ ହେବେ ଏ ଦୃଢ଼ ବିଶ୍ୱାସ ତାଙ୍କର ଥିଲା ।

ଚନ୍ଦନପୁରର ନୂଆ ସବଜାଣ ହରି ରଥଙ୍କର ଦେହ ଖରାପ ଅଛି ବୋଲି ବୃଆଡ଼େ ପ୍ରଚାର ହୋଇଗଲା । ଗାଆଁ ଲୋକେ ହସିଲେ । ଦୁଆରୁ ଲୋକେ ହତାଶ ଭାବରେ ଫେରିଗଲେ । ସୂର୍ଯ୍ୟ ଅସ୍ତ ହେଲେ । ଘୋର

ଅନ୍ଧକାର ମାଡ଼ି ଆସିଲା । ରଥେ ସୁଖମୟୀ ନିଦ୍ରା କୋଳରେ କିଛି ସମୟ ବିଶ୍ରାମ ନେବାକୁ ଚେଷ୍ଟା କଲେ । ତାଙ୍କର ସକଳ ଚେଷ୍ଟା ବିଫଳ ହେଲା । ଆଖି ବୁଜିଲେ, ନିଦ ଆସିଲା ନାହିଁ, ଆଖି ଫିଟାଇଲେ ଆଗରେ ଗୁଡ଼ାଏ ଲୋକ ଦେଖାଗଲେ, ଏକଡ଼ ସେକଡ଼ କେତେ ଲେଉଟାଇହେଲେ, ତଥାପି ମାନସିକ ଅଶାନ୍ତ ଦୂର ହେଲା ନାହିଁ । ଆଖି ମୁଦି ହେଲା ନାହିଁ; ତଥାପି ଏଣୁ ତେଣୁ ଗୁଡ଼ାଏ ସ୍ୱପ୍ନ ଦେଖିଲେ । ତାଙ୍କୁ ଦେଖାଗଲା ଗୋଟିଏ ବଡ଼ ଧଳା ଚୂନ ଘର । ଲୋକେ କହିବାର ସେ ଶୁଣିଥିଲେ, ତାକୁ କହନ୍ତି ଫାଣ୍ଡି ଘର । ଠିକ୍ ତାଙ୍କ ଘର ଠାରୁ ଦୁଇ ମାଇଲ ଦୂରରେ । ସେ ଯାହା ଶୁଣିଥିଲେ ତାହା ଦେଖିଲେ; ଯାହା ନ ଶୁଣିଥିଲେ ସେପରି ଅନେକ କଥା ଖିଅଣ ଭୟାବହ ଛବି ରୂପେ ତାଙ୍କ ଆଖି ଆଗରେ ଉଠିଲା, ଲୁଚିଲା । ଦେଖିଲେ, ସେଇ ଘର ଭିତରେ ବାବୁ ବସିଛନ୍ତି ପୋଷାକ ପିନ୍ଧି । ତାଙ୍କ ଆଗରେ ତାଙ୍କୁ ଧରିନେଇ ଠିଆକରାଇ ଜଣେ ନାଲି ପଗଡ଼ିବାଲା ପଚାରୁଛି—ସତ କହ, ତୁମେ କମିତି ଜାଣିଲ ?

ଏ ଭଳିଆ ଜାଗ୍ରତ ସ୍ୱପ୍ନ ଦେଖି ରଥେ ଚମକିପଡ଼ନ୍ତି । ପୁଣି ସ୍ୱପ୍ନକୁ ଏଡ଼ିବା ପାଇଁ କଡ଼ ଲେଉଟାଇ ପଡ଼ିରହନ୍ତି । ସେଇ ଲୋକ, ସେଇ ନାଲି ପଗଡ଼ି, ସେଇ ଥାନା, ପାଖରେ କାନ୍ଥରେ ଲୁହାର ହାତକଡ଼ା ଦଉଡ଼ି, ପାଖରେ ଠେଙ୍ଗା, ଟେବୁଲ୍ ଉପରେ କାଳି କଲମ କାଗଜ । ତାଙ୍କ ଲେଖନପତ୍ରର ଆଗାମୀ ଉତ୍ତରାଧିକାରୀ ରୂପେ ଯେଉଁ କାଳି କାଗଜକୁ ସେ ଦେଖିଲେ ନାକ ଟେକନ୍ତି, ଶେଯରେ ଶୋଇବା ଅବସ୍ଥାରେ ତାହା ଦେଖି ତାଙ୍କ ବିକାର ଆସିଗଲା । ନିଦ ନାହିଁ, ଅଥଚ ସ୍ୱପ୍ନ ଦେଖୁଛନ୍ତି । ଦେଖୁଛନ୍ତି, ସେ ଏକ ନୂତନ ପଥର ପଥିକ । ତାଙ୍କ ହାତରେ ତାଳପତ୍ର ଖେଦା, ହାତରେ ଲେଖନ, ଲେଖି ଲେଖି ସେ ଚାଲିଛନ୍ତି । ଚାଲିଛନ୍ତି ଯେଉଁଠିକି କାଗଜର ସମ୍ପର୍କ ନାହିଁ; କାଳିର ବିନ୍ଦୁ ଚିହ୍ନ ସୁଦ୍ଧା ନାହିଁ, ଅଛି ଖାଲି ତାଳପତ୍ର, ଦୋମୁନିଆ ଲେଖନ, ପତରୀ ଲେଖନ, ମୁଣ୍ଡା ଲେଖନ ଆଦି ହଜାରେକ ରକମର ଲେଖନ ସେ ଦେଖୁଛନ୍ତି । ସେ ଏପରି ଭାବରେ ନୂତନ ପଥରେ ଗଲାବେଳେ ଥାନାବାଲା ତାଙ୍କୁ ବାଟରୁ ଧରିଆଣି ପୁଣି ଥାନାରେ ଭରତିକରୁଚନ୍ତି; ବାରମ୍ବାର ପଚାରୁଛନ୍ତି—କହ ଦେଖି ସେ ଜିନିଷ କିଏ ନେଇଚି ?

ତାଙ୍କୁ ନ ଜାଣିବା କଥା ପଚରାଯାଉଚି, ଆଉ ସେ ସତ କହିବାକୁ ଯାଇ କେବଳ କାନ୍ଦୁଚନ୍ତି, କାନ୍ଦି କାନ୍ଦି କହୁଚନ୍ତି—ମୁଁ ଏ ବିଦ୍ୟା ଜାଣେ ନାହିଁ ।

ରଥେ ଶେଷରେ ଶେଯରୁ ଉଠି ବସିଲେ । ଦେଖିଲେ ତାଙ୍କ ଅଜାଣତରେ କେତେବେଳେ ଆଖିରୁ ଲୁହ ବୋହିଚି । ଏତିକବେଳେ ଶ୍ରୀମତି କାଂକଣୀବାଳା ପଚାରିଲେ—କଣ ସ୍ୱପ୍ନ ଦେଖିଲ କି ? ରଥେ ଦୁଃସ୍ୱପ୍ନରୁ ରକ୍ଷା ପାଇବା ପାଇଁ ବାଟ ଖୋଜୁଥିଲେ । ହଠାତ୍ କି ବୁଦ୍ଧି ହଟିଲା, କହିଲେ—ହୁଁ, ଅପରାଧ କରିଚି, ଅପରାଧ କରିଚି ।

ଶ୍ରୀମତି କାଂକଣୀବାଳାଙ୍କର ମନରେ ସନ୍ଦେହ ହେଲା ! ପୁଣି ପଚାରିଲେ—ତୁମେ ଅପରାଧ କରିଚ ? କାହା ପାଖେ ?

ରଥେ ଦୀର୍ଘଶ୍ୱାସଟାଏ ପକାଇ କହିଲେ—ମନେଥିବ ତୁମର ଯେଉଁ ବର୍ଷ ଷଠୀଓଷା ଦିନ ବଡ଼ ବଡ଼ିହୋଇଥିଲା ସେଇ ବର୍ଷ ଏଇ ବାଁ ଆଣ୍ଠୁକୁ ବାତ ଧରିଲା । ନୁହେଁ ? କେତେ ଔଷଧ କଲି, ଭଲ ହେଲା ନାହିଁ । ମନେ ନାହିଁ ?

ଶ୍ରୀମତି ଉପରକୁ ଚାହିଁ ମନେପକାଇ କହିଲେ—ହଁ, ମନେ ଅଛି ।

ରଥେ ପୁଣି ଗୋଟାଏ ଦୀର୍ଘନିଶ୍ୱାସ ପକାଇ କହିଲେ—ସେଇ କଥା ଏବେ ସ୍ୱପ୍ନ ଦେଖିଲି ।

କାଂକଣୀବାଳା ବିଚଳିତ ହୋଇପଡ଼ିଲେ । କହିଲେ—ରୋଗ କଥା ? ଏ ମା ଲୋ ! ହେ ପ୍ରଭୁ, ଆଠ'ଣାର ମୂଆଁ କରିବି·········।

ଏତିକବେଳେ ରଥେ ହଠାତ୍ କହିଲେ—ଆଗୋ, ଥରେ ତ ଯାଉଥିଲ ଯେ ଶୁଝିନାଇଁ, ଆଉ ପୁଣି ସଜୁଚ କାହିଁକି ?

କାଂକଣୀବାଳା ବ୍ୟସ୍ତ ହୋଇ ଉତ୍ତରଦେଲେ—ଏ ପୋଡ଼ା ମନରେ କିଛି କଣ ମନେପଡ଼ୁଚି ? କଣ ଯାଉଥିଲି କହିଲ, କହିଲ ?

ରଥେ କହିଲେ—ତୁମେ ନୁହ, ତୁମେ ନୁହ, ମୁଁ । ସେଇ ଯେଉଁ ସ୍ୱମାଯୂଣ ପୋଥି ଲେଖାହୋଇ ଥୁଆହୋଇଚି ସେଥିରୁ ଆଉ ଖଣ୍ଡେ ବାକି ଅଛି । ଶେଷ ଖଣ୍ଡିକ ଯାଚଥିଲି ସେତକ ପୂରଣ କରିଦେଇ ରଘୁନାଥଙ୍କ ପାଖେ ଥୋଇଦେବ । ତାଙ୍କର ଲୀଳା ତ ସବୁ, ଏଇଲେ ସେ ଦେଖାଦେଲେ ପରା !

କଙ୍କଣବାଳା ଖୁସି ହୋଇ କହିଲେ—ସତେ ? ମହାପ୍ରଭୁଙ୍କୁ ଦେଖିଲ ? କେଡ଼େ ଭାଗ୍ୟ !

ରଥେ ତଟସ୍ଥ ହେଲାପରି ଉତ୍ତରଦେଲେ—ଆଗୋ, ମହାପ୍ରଭୁ ନୁହେ, ଲମ୍ବ—ଲମ୍ବ—ଲମ୍ବ ଜନ୍ତୁ । ନାଗ ସାପ ! ! ଠିକ୍ ସେଇ ଦର-ଖଣ୍ଡିଆ ପୋଥି ଉପରେ ଟେକା ବାନ୍ଧ ଫଣା ଟେକିଥିଲା । ମୋତେ ଫଁ-ଫଁ ହେଲା । ସେତକ ପୂରଣ କରିନେଇ ତାଙ୍କ ପାଖେ ନ ଥୋଇଲେ ଆଉ ରକ୍ଷା ନାହିଁ ।

ଶ୍ରୀମନ୍ତ କଙ୍କଣବାଳାଙ୍କ ମୁହଁରୁ ପାଣି ମରିଗଲା । ସେଦିନ ରାତି ତାଙ୍କୁ ଆଉ ଭଲ ନିଦ ହେଲା ନାହିଁ ।

ଏଇ ଘଟଣାର କିଛି ଦିନ ପରେ ନୟାଗଡ଼ର ରଘୁନାଥଙ୍କ ନିକଟ ଏକ ପଲ୍ଲୀଗାଁରେ ବଣି ରଥଙ୍କ ନାମ ଶୁଣାଗଲା; ମାତ୍ର ଜ୍ୟୋତିଷ ଭାବରେ ନୁହେ, ଗୁଣାଗୁଣି, କର୍ମକର୍ମାଣି ଜାଣିଥିବା ଜଣେ ଶୁଦ୍ଧପୂତ ବ୍ରାହ୍ମଣ ଭାବରେ । ଏବେ ଲୋକେ କହନ୍ତି, ବଣି ରଥେ ଚନ୍ଦନପୁରରୁ ଯେ ଖସି-ଆସିଲେ ଆଉ ଥରେ ସେଠାକୁ ଜୀବନରେ ଫେରି ନାହାନ୍ତି । ଶେଷରେ ଶ୍ରୀମନ୍ତ କଙ୍କଣବାଳା ସ୍ୱାମୀ ସେବା କରିବାପାଇଁ ଆସିବାକୁ ବାଧ ହେଲେ । ଜୀବନର ଶେଷ ସମୟରେ ଦିନେ ଶ୍ରୀମନ୍ତ ଯେତେବେଳେ ସ୍ୱାମୀଙ୍କ ଶେଯ ପାଖେ ବସି ପଚାରିଲେ—ଗାଁକୁ ଯିବ ? ରଥେ ବ୍ୟସ୍ତ ହୋଇ କହିଲେ—ଜ୍ୟୋତିଷ ବିଦ୍ୟା ମୁଁ ଜାଣେ ନାହିଁ । ଲେଖି ଜାଣେ ତାଳପତ୍ର ପୋଥି । ମୋତେ ସେ ଅଡ଼ୁଆରେ ଆଉ ପକାନା ଗୋ ପକାନା ।

× × × ×

ରଥେ ଗଲେଣି, କଙ୍କଣ୍ଣବାଳା ମଧ୍ୟ ଗଲେଣି । ମାତ୍ର ଲୋକ ମୁଖରେ କଥା ଅଚ୍ଛି—ଝଣି ରଥେ ବୋଲି ପୂର୍ବେ ଜଣେ କଏ ଚନ୍ଦନପୁରରେ ଥିଲେ । ପଦେ କଥାରେ ମକଦ୍ଦମଙ୍କ ଘରର ଶହ ଶହ ଟଙ୍କାର ଷ୍ଟେସ୍ମାଲ ଧରେଇ ଦେଇଥିଲେ ।

# ଲୋକେ ବୋଲିବେ କଣ ?

ଚନ୍ଦା ମୁଣ୍ଡଟାକୁ ବାଁ ହାତରେ ଆଉଁଷି ଆଉଁଷି ମୁହଁ ତଳକୁ କରି ଗଣିଲା ପରି ପାଦ ପକାଇ ମାଗୁଣିଆ ତା ଅଗଣା ଭିତରେ ବୁଲୁଥିଲା । ସେଥିରୁ ଜଣାପଡୁଥିଲା, ସେ କଣ କରିବ ଠିକ୍ କରିପାରୁ ନଥିଲା । ଅଗଣା ପାଖ ପିଣ୍ଡାରେ କଡ଼ବାଲଗା ହୋଇ ପଡ଼ିଥିବା ପ୍ରଣୟିନୀର ମୁହଁକୁ ବେଳେ ବେଳେ ସେ ଚାହୁଁଥିଲା ସତ; ମାତ୍ର ଚାହିଁବା ସଙ୍ଗେ ସଙ୍ଗେ ସେଆଡ଼ୁ ମୁହଁ ହଠାତ୍ ଅନ୍ୟଆଡ଼କୁ ଫେରାଉଥିଲା । ଯିବ କି ନ ଯିବ, କହିବ କି ନ କହିବ, କରିବ କି ନ କରିବ—ଏଇ ଗୋଟାଏ ଯୁଦ୍ଧ ତା ଭିତରେ ଗତ କେତେ ଘଣ୍ଟା ହେଲା ଚାଲିଥିଲା । ବେଳେ ବେଳେ ଦୀର୍ଘ ନିଶ୍ୱାସଟାଏ ପକାଇ ପଦେ ମାତ୍ର କହୁଥିଲା—'ନା' । ସକାଳ ପହରୁ ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠିବା ଭିତରେ ଏଇ 'ନା' ପଦକ ସେ ଅତି ଊଣା ପଚାଶ ଥର କହିଥିବ । ତଥାପି ସେ ଶେଷ ନିଷ୍ପତ୍ତିରେ ପହଞ୍ଚିପାରିଲା ନାହିଁ । ତା ମନର ଏଇ ଦୋ ଦୋ ଅବସ୍ଥାର ଅବସାନ କେବେ ହେବ, କିପରି ହେବ, ସେ ନିଜେ ବୁଝିପାରୁ ନଥିଲା । ବୁଝିପାରୁ ନଥିଲା ବୋଲି ସେ ବେଳେ ବେଳେ ପ୍ରଣୟିନୀ ମୁହଁକୁ ଚାହୁଁଥିଲା ଉତ୍ତର ପାଇଁ । ଉତ୍ତର ପାଇବା ପୂର୍ବରୁ ତା ମନରେ ପୁଣି କିଛି ଭାବାନ୍ତର ଆସୁଥିଲା, ଆଉ କାହାର ନିଷ୍ପତ୍ତିକୁ ସେ ଗ୍ରହଣ କରିବ ନାହିଁ ବୋଲି ଠିକ୍ କରୁଥିଲା ।

ମାଗୁଣିଆ ଏପରି ଭାବରେ ବିଚଳିତ ହେବାର କାରଣ ସେ ନ ଥିଲା, ତା ନୁହେ । ଏପରି ଭାବିଲାବେଳେ ଦର୍ପଣ ପରି ତା ଜୀବନର ଦୀର୍ଘ ତିରିଶି ବର୍ଷ ତଳର କଥା ଆଗେ ଆଗେ ତାକୁ ଦେଖାଯାଉଥିଲା । ଦେଖୁଥିଲା, ସେତେବେଳେ ତାର ଏ ବେଶବାସ ନଥିଲା । ଧାନ ଦରିଦ୍ର

ପରି ସେ ପର ଦୁଆରୁ ମାଗିଆଣି ଚଳୁ ନଥିଲା ! ଧନୁର୍ଦ୍ଧର ଭେଣ୍ଡା ଥିଲା ସେ । ବାହା ପିଠି ରୋଜଗାର ତ କରୁଥିଲା, ପୈତୃକ ସମ୍ପତ୍ତିକୁ ଦୁଇ ଭାଇ ମିଶି ବରଦାସ୍ତ କରି ଗାଆଁ ଭିତରେ ଖୁବ୍ ପ୍ରତିପତ୍ତି ବଢ଼ାଇପାରିଥିଲେ । ଯୋଡ଼ାକୁ ଘୋଡ଼ା ସରି ନୁହେଁ, ଏହି କଥାକୁ ଦୁଇ ଭାଇ ମିଶି ପ୍ରମାଣ କରୁଥିଲେ । ଦୁଇ ଭାଇଙ୍କର ବାହୁବଳ; କହିବାକୁ ଗଲେ ଭାଗ୍ୟବଳ ଏତେ ଜୋର ଥିଲା ଯେ, ଗାଆଁରେ ତ ସମସ୍ତେ ତାଙ୍କୁ ଖାତିର କରୁଥିଲେ, ବାଦ ବିବାଦ କଳିଗୋଳ ବେଳେ ଡରୁଥିଲେ ମଧ୍ୟ ।

ମାଗୁଣିଆ ତାର ଦଦରା କାନ୍ଥ ବାଡ଼ ଓ ଗୁଳଘର ଭିତରେ ଯେ ବୁଲୁଥିଲା, ସେ କଥା ସେ ଭୁଲିଯାଇଥିଲା । ତାକୁ ଦିଶୁଥିଲା ଗୋଟିଏ ଗୌରବମୟ ଗ୍ରାମ୍ୟ ପରିବାରର ଉଜ୍ଜ୍ୱଳ ଛବି । ପରିବାରର ଅସ୍ପଷ୍ଟଛବି ଯେତେବେଳେ ତା ଆଖିକୁ ଦେଖାଯାଉଥିଲା, ସେତେବେଳେ ସେ ଘୃଣାରେ, ଲଜ୍ଜାରେ, ଅପମାନରେ ମୁଣ୍ଡ ପୋତିଦେଉଥିଲା, ହତାଶ ଭାବରେ ଆକାଶକୁ ଚାହିଁଥିଲା । ସେ ଦେଖୁଥିଲା ଅତୀତ । କେବେ ଅତୀତରେ ଗାଁ ପଧାନଘରର ଭାଇଭାଗବଣ୍ଟାରେ ଯେତେବେଳେ ଭାଇଭାଇ ହଣାହଣି ହେବାର ଆଶଙ୍କା ହେଲା, ଏଇ ଦୁଇ ଭାଇ ମାଗୁଣିଆ ଓ ତାର ବଡ଼ଭାଇ —ମଝିରେ ବେକ ଦେଖାଇ ଠିଆହୋଇପଡ଼ି ସେଥିର ସମାଧାନ କରି-ଦେଇଥିଲେ ।

ମାଗୁଣିଆ ଦେଖିଲା, ତା ମାନସ-ଚକ୍ଷୁରେ ଅତୀତର ଏଇପରି ଅନେକ କଥା । ଗାଁ କୋଠ ପୋଖରୀରୁ ରଥ ସାଆନ୍ତଙ୍କ ବଡ଼ ପୁଅ ପାଣି ହାଣି ବଳରେ ମଡ଼ାଇଲା ବୋଲି ଦାଶ ଘର ଠେଙ୍ଗା ଧରି ଠିଆହେଲେ । ସେତେବେଳେ ଏଇ ମାଗୁଣିଆର ଯୁଆନ୍ ପିଠି ଦାସଘର ଠେଙ୍ଗାକୁ ତିନି ଥର ଥାନ ଦେଇ ଗାଆଁଟାକୁ ମାଲିମକଦ୍ଦମାରୁ ରକ୍ଷାକରିଥିଲା ।

ମାଗୁଣିଆ ଆଖିକୁ ଦେଖାଗଲା ଗାଁର ଜେନାଘର ବଡ଼ବୋହୂର ଦୁର୍ଦ୍ଦଶା କଥା । ଜେନାଙ୍କ ବଡ଼ପୁଅ ଅକାଳରେ ମଲା ପରେ ତା ସ୍ତ୍ରୀକୁ ନାନା ଦୋଷ ଦେଇ ଘରୁ କାଢ଼ିଦିଆଗଲା । ତେତେବେଳେ ଏଇ ମାଗୁଣିଆ

ପୁଣି ଯାଇ ମହାପ୍ରସାଦ କୁଡ଼ୁଆ ଆଣି ଶାଶୂ ବୋହୂଙ୍କ ଭିତରେ ଗୋଟାଏ ପରମ ବିଶ୍ୱାସ ଜନ୍ମାଇ ଗୋଟାଏ ବଂଶକୁ ଦୁର୍ଦ୍ଦଶାରୁ ରକ୍ଷାକରିଥିଲା ।

ଏଇପରି ଅନେକ କଥା । ଅନେକ କଥା ମାଗୁଣିଆର ମନେ-ପଡ଼ିଲା । ମାତ୍ର ଏବେ ମାଗୁଣିଆ ଦେଖିଲା, ତା ଭାଇର ଶବ ପଦାରେ ହେଲି ପଡ଼ିଛି । ତାକୁ ନେବା ପାଇଁ ଗାଆଁର କେହି ହେଲେ ବାହାରୁ ନାହାନ୍ତି ! ଭାଇ ! ମାଗୁଣିଆର ଭାଇ !—ଏ କଥା ବିଚାରିଦେଲା ମାତ୍ରେ ତାର ପ୍ରେମ ଟାଙ୍କୁରିଉଠିଲା । ବିଚାରିଲା, ସେ ପୁଣି ଭାଇ ମୋର ! ମୁଁ ପୁଣି ଭାଇ ତାର ! ଏ ଦରିଦ୍ର ବେଶ, ଏ ନିରନ୍ନ ପରିବାର, ଏ ବୁଭୁକ୍ଷୁ ସଂସାରକୁ ନେଇ ପୁଣି ତାକୁ ଭାଇ ବୋଲି ଡାକିବି ? ଶେଷରେ ମାଗୁଣିଆ କହିଲା 'ନା' ।

ଏଇ ଶେଷ 'ନା' ପଦକ ମାଗୁଣିଆର ମୁହଁରୁ ଏପରି ଜୋରରେ ବାହାରିଲା ଯେ, ବାରଣ୍ଡାରେ ମୁହଁ ମାଡ଼ି ପଡ଼ିଥିବା ତାର ମୁମୂର୍ଷୁ ପତ୍ନୀ ଆଖି ଫିଟାଇ ଚମକିଲା ପରି ଚାହିଁଲା । ମାଗୁଣିଆ ମଧ୍ୟ ନିଜ ପାଟିର କଥା ନିଜେ ଶୁଣି ଚମକିପଡ଼ିଲା ।

ପର ମୁହୂର୍ତ୍ତରେ ମାଗୁଣିଆ ମନରେ ଭାବାନ୍ତର ଆସିଲା । ଭାବିଲା—ଭାଇ ମରିଗଲା ! ତେବେ ଆଉ କାହା ସଙ୍ଗେ ବିବାଦ ? କେତେ ବିବାଦ ଯେ ଭୁଟାଇଥିଲା, କେତେ ବିବାଦ ଯେ କରିଥିଲା, ସେ ତ ଚାଲିଗଲା !! ତେବେ ମୋର ବିବାଦ ଆଉ ରହିଲା କେଉଁଠି ? ଏକଥା ମୁଁ ଭାବି ପାରୁନି ବୋଲି କଣ ଆଉ କିଏ ଭାବୁଛି ? ଭାବୁଛି କଣ ପଧାନ ବୁଢ଼ା ? ଭାବୁଛି କଣ ରଥଘର ପୁଅ ? କାହିଁ, ଏମାନେ ତ ଏ ବିବାଦ ମେଣ୍ଟାଇ ପାରି ନଥିଲେ; ବରଂ ନିଆଁରେ ପତଙ୍ଗ ପରି ଆମକୁ ପକାଇ ପୋଡ଼ି ମାରିପକାଇଲେ ।

ଏତିକିବେଳେ ବାରଣ୍ଡାରେ ଶୋଇଥିବା ରୋଗିଣୀ କ୍ଷୀଣ କଣ୍ଠରେ କହିଲା—'ଶାଣି, ଟୋପେ ପାଣି !'

"ଟୋପେ ପାଣି, ଟୋପେ ପାଣି"—ଦୁ'ଥର କହି ମାଗୁଣିଆ ଏକ ମାଟି ଘଡ଼ରୁ ତା ମୁହଁରେ ପାଣି ଟିକଏ ଦେଇ କହିଲା—"ଏ ପର୍ଯ୍ୟନ୍ତ ମଧ୍ୟ ଶବ କାଢ଼ିବାକୁ କଏ ଆସିଲେ ନାହିଁ !!"

ରୋଗିଣୀ କ୍ଷୀଣ କଣ୍ଠରେ କହିଲା—"କହୁଚ, ତୁମେ ଯାଅ ।"

ମାଗୁଣିଆ ଥକା ହେଲାପରି ଠିଆହେଲା । ମନ ଭିତରେ ଖୁବ୍ ଜୋରରେ ତାର ଶୁଭିଲା—ତୁମେ ଯାଅ । ଭାବିଲା—ଶେଷକୁ ଏ ମଧ୍ୟ କହିଲା ତୁମେ ଯାଅ । ପାଟି କରି କହିଲା—'ଶାରଆ, ତୁ ଜାଣିଚୁ କାହା ଯୋଗ ମୋର ଏ ଅବସ୍ଥା ? ଶେଷରେ ଘଡ଼ଟିକରେ ପାଣି ତୋ ମୁହଁରେ ଦେବାକୁ ପଡ଼ିଲା । ତୁ ମଧ୍ୟ ସେଇ କଥା କହୁଚୁ ?'

ଶାରଆ ଛଟପଟ ହେଲାପରି କଡ଼ ଲେଉଟାଇ ଉତ୍ତର ଦେଲା—'ହଁ, ନ ହେଲେ ଆଉ କଏ ଯିବ ? ତୁମ ବଦାଦ ତ ଏବେ ମେଣ୍ଟିଗଲା । ସେ ତ ଚାଲିଗଲା, ଆଉ କାହାପାଇଁ ଏତେ ରାଗ, ଅଭିମାନ ? ଏତେବେଳେ ଇମିତି ରହିଲେ ଲୋକେ ବୋଲିବେ କଣ ?

ମାଗୁଣିଆ ପଥର ମୂର୍ତ୍ତି ପରି ଠିଆହେଲା । ଶାରଆର ଶେଷ ପଦକ ମନ ଭିତରେ ଧକ୍କା ଦେଲା, ପରି ଲାଗିଲା—'ଲୋକେ ବୋଲିବେ କଣ ?' ଦୁଇ ପାହୁଣ୍ଡ ଆଗକୁ ଗଲା । ଦାଣ୍ଡ ପାଖକୁ ଯାଇ ପଛକୁ ଫେରି ଆସିଲା । କାନ ପାଖେ ବାଜିଲା ସେଇ କଥା—'ଲୋକେ ବୋଲିବେ କଣ ?'

ସେ ନ ଶୁଣିବାକୁ ଚେଷ୍ଟା କଲା । ଶାରଆ ମୁହଁ ବୁଲେଇ କଚରା ଖଣ୍ଡିକରେ ପଡ଼ିଚି । ହଲଚଲ ନାହିଁ । ମୁହଁକୁ ଟିକଏ ତାର ଚାହିଁଲା । ଦେଖିଲା ଓଠରେ ତାର କଥାର ସ୍ପନ୍ଦନ ନାହିଁ । ତଥାପି ସେ କହିଲା ପରି ତାକୁ ଶୁଭିଲା—"ଲୋକେ ବୋଲିବେ କଣ ?" ସେତିକବେଳେ ଘରର ବିରାଡ଼ିଟା ମ୍ୟାଉଁ ମ୍ୟାଉଁ ହୋଇ କୁଆଡ଼ୁ ଚାଲିଆସିଲା । ତାର ସ୍ୱର ଶୁଣି ମାଗୁଣିଆ

ବୁଝିଲା, ସତେ ବା ବଡ଼ପାଟିରେ କହୁଚି—"ଲୋକେ ବୋଲିବେ କଣ ?" ଦାନ୍ତ ଚାଟି ପିଟାଇ ଦାଣ୍ଡକୁ ଚାହିଁଲା । ଗାଈ ଖୋଜୁଥିଲା ତା ଛୁଆକୁ "ହମା" ବୋଲି । ସେହି ଦୀର୍ଘ କର୍କଶ ସ୍ୱରରୁ ସେ ବୁଝିଲା, ଗାଈ ଅବା କହୁଛି—"ଲୋକେ ବୋଲିବେ କଣ ?" ଦେଖିଲା, ସାଇ ପିଣ୍ଡାରେ ଲୋକେ ବସି କଣ କଥାବାର୍ତ୍ତା ହେଉଛନ୍ତି । ତାର ସନ୍ଦେହ ହେଲା, ଲୋକେ କାହିଁକି କଣ ଗୁନ ଗୁନ କଥାବାର୍ତ୍ତା ହେଉଛନ୍ତି—"ଆଚ୍ଛା, ଏ ଶବ ପଡ଼ି ରହିଲେ ଲୋକେ ବୋଲିବେ କଣ ?"

"ଲୋକେ ବୋଲିବେ କଣ"—ଭାବି ଭାବି ମାଗୁଣିଆ କେତେବେଳେ ଯେ ଚାଲି ଚାଲି ଯାଇ ଘର ଦୁଆର ଡେଇଁ ଯାଇ ଶବ ପାଖେ ଠିଆ ହୋଇଚି, ଜାଣି ନାହିଁ । ଯନ୍ତ୍ରଚାଳିତ ପରି ସେ ଚାଲିଗଲା, କାହାକୁ ଅପେକ୍ଷା କଲାନାହିଁ । କାହାକୁ ପ୍ରଶ୍ନ ପଚାରିଲା ନାହିଁ, କାହା କଥା ଶୁଣିଲା ନାହିଁ, କେବଳ ଗୋଟାଏ କଥା ତା କାନପାଖେ ବାଜୁଥିଲା— "ଲୋକେ ବୋଲିବେ କଣ ?" ସଂସାରର ସକଳ ସ୍ୱର ଶବ୍ଦ ସେତେବେଳେ ସେଇ ଗୋଟାଏ ପ୍ରଶ୍ନ ଭିତରେ ତା ଅନ୍ତଃତଳେ ଜମାଟ ବାନ୍ଧି ରହିଥିଲା । 'ଲୋକେ ବୋଲିବେ କଣ' ଡରରେ ସେ ଏକାକୀ ଶବଟାକୁ ଟେକି କାନ୍ଧରେ ଧଇଲା । ଘରେ ସମସ୍ତେ କାନ୍ଦି ଉଠିଲେ । ସେ କହିଲା— "ଚୁପ ହୁଅ, ଲୋକେ ବୋଲିବେ କଣ ?"

ମଶାଣିପଡ଼ିଆରେ ଯେତେବେଳେ ଜନୁଚନ୍ଦ୍ରାଣୀର ସୀମା ପାଳ ହୋଇ ଧୂଆଁ କୁଣ୍ଡଳୀ ଆକାରରେ ଉପରକୁ ଉଠି ନୀଳ ଆକାଶକୁ ଆଚ୍ଛନ୍ନ କରିପକାଇଲା, ମାଗୁଣିଆ ସେତେବେଳେ ଉପରକୁ ଆଁ କରି ଚାହିଁରହି ସେହି ଧୂଆଁ ଭିତରେ ଦେଖିଲା, ତା ଅନ୍ତରର ସକଳ ବାଦ ବିବାଦ କୁଆଡ଼େ ସବୁ ଧୂଆଁ ପରି ମିଳେଇଯାଇଚି ।

ଏ ଘଟଣାର କେତେ ଦିନ ପରେ ମାଗୁଣିଆ ଯେତେବେଳେ ଭାଇଘର ଓ ନିଜ ଘରର ଭାଇ-ଭାଗ ବଣ୍ଟା ବାଡ଼ ଭାଙ୍ଗି ଦୁ'ଘରକୁ ଏକାଠି

କର ଦାଣ୍ଡ ପିଣ୍ଡାରେ ବସିଲା, ଗାଁର ମାମଲତକାର ବଣ୍ଟୁ ପ୍ରଧାନ ମୁଚୁକି ହସା ଦେଇ ପଚାରିଲେ—"କିରେ ମାଗୁଣିଆ, ଏ କଣ ?"

ମାଗୁଣିଆ କହିଲା—ଭାଇ ପର୍ବ ଗୁଳିଗଲା; ଏବେ ଇମିତି ନ ହେଲେ ଲୋକେ ବୋଲିବେ କଣ ?

ପ୍ରଧାନେ କହିଲେ—ମଶାଣି ପଡ଼ିଆରେ କାହା କାହାର ମୁଣ୍ଡ ଇମିତି ବଚିଡ଼ ଯିବାର ଆଗରୁ ଦେଖାଅଛୁ ।

# ପେଟର ବିଦ୍ରୋହ

ବଣ ଭିତରେ ସେହି ପ୍ରଚ୍ଛନ୍ନ ଭୂଇଁ ଖଣ୍ଡିକ ଦେଖିଲେ ମନେହୁଏ ଦିନେ ତାହା ଲୋକ ବସତିରେ ପୂର୍ଣ୍ଣ ଥିଲା । ଅଗଣିତ ମହୁଲ ଗଛର ଗହଳ ଭିତରେ ସେଠାରେ କେବେ ନରକଣ୍ଠର କଳରୋଳ ଶୁଭୁଥିଲା । ସେଠାରେ ବଣପଶୁ ଦିନେ ମନୁଷ୍ୟର ପଦାଘାତରେ ଆକର୍ଷିତ ସେହି ବିରାଟ ଜଙ୍ଗଲ-ମୟ ଦେଶକୁ ନିରାପଦ ମନେ କରୁ ନଥିଲେ । ଏବେ ତାର ଚିହ୍ନ ମାତ୍ର ଅଛି । ଘର ଡିହ ଉପରେ ଅଭ୍ରଭେଦୀ ତରୁ ଶ୍ରେଣୀ ଠିଆହୋଇଛନ୍ତି । ସେଠାର ମହୁଲ ଗଛରୁ ଫୁଲ ଝଡ଼ୁଛି; ମାତ୍ର ତାହା ଗୋଟେଇବାକୁ ଆଉ ମଣିଷ ନାହାନ୍ତି । ମହୁଲ ଗହଳରେ, ଲତାକୁଞ୍ଜ ଭିତରେ ଆଦିମବାସୀଙ୍କର ସେହି ଉତ୍ସବମୟ ଲୀଳାଖେଳା ଆଉ ସେଠାରେ ନାହିଁ । ସେ ବାଟେ ପଥିକର ପାଦ ପଡ଼ିଲେ ଭୂମିକମ୍ପ ହେଉଛି,—ମଣିଷର ଦୋ'-ଦୋ'-ଚିହ୍ନା ପକ୍ଷୀ-ଗୁଡ଼ାକ ଏ ଗଛରୁ ସେ ଗଛକୁ ଉଡ଼ି-ଯାଉଛନ୍ତି । କବି-ବର୍ଣ୍ଣିତ ହରିଣର ଚଞ୍ଚଳ ଚାହାଣୀ ବେଳେବେଳେ ମୁହୂର୍ତ୍ତକ ପାଇଁ ଏ ଲତା ଗହଳରେ ସେ ଗଛ ଆଢ଼ୁଆଳରେ ଦେଖାପଡ଼ୁଛି ।

କିନ୍ତୁ ସେ ଭୂଇଁ ଖଣ୍ଡିକ ଏବେ ମଶାଣି !

ମଶାଣି ଉପରେ ଜୀବନର ଲୀଳା କାହିଁ ? ସେହି ସମାଧି ଖୋଳିଲେ କେବଳ ଇତିହାସ ହିଁ ମିଳିବ; ତାହା କିନ୍ତୁ ମୂକ ! ସେହି ମୂକ, ଜଡ଼ ସମାଧି ପାଖେ କାନ ଡେରି ବସିଲେ ପବନର ସାଇଁ ସାଇଁ ଶବ୍ଦ ହିଁ ଶୁଣାଯିବ । ତାକୁ ଲାଞ୍ଛିତର, ବଞ୍ଚିତର ଦୀର୍ଘଶ୍ୱାସ ବୋଲିଯାଇପାରେ କିମ୍ବା ଜାମୁ-ଡାଳଖୋସା ତରୁଣ ତରୁଣୀଙ୍କର ବିଦାୟ ବେଳର ଅସ୍ପଷ୍ଟ

ବାଣୀ ବୋଲି ଅନୁମାନ କରାଯାଇପାରେ । ସେ ସବୁ ବହୁ ଦିନ ତଳର କଥା ।

ମହାନଦୀ କୂଳରେ ଏହି ମଶାଣି ଖଣ୍ଡିକ ଏକ ସ୍ମୃତିମଣ୍ଡପ ! ସନ୍ଧ୍ୟାବେଳର ଦୂତ ପେଚାକୁ ପଚାର, ପଚାର ବଣର ଶୃଗାଳଦଳକୁ ଏବଂ ସେହି ଜମି ଯେ କାହିଁକି ମଶାଣି ପାଲଟିଲା ତାର କଥା ଗଡ଼ର ପିଆଦାକୁ ପଚାର ! ମହାନଦୀ କୂଳର ଯେ ଉପକୂଳରେ ସୁନା ଫଳେ,- ସେଠାରେ ମଣିଷ ରହିବା ପାଇଁ ଯେ କାହିଁକି ଅସମ୍ଭବ ହେଲା, ସେଥିର ନିରାଟ ସତ୍ୟ କଥା ସେହି ଦୂତମାନେ ହିଁ କହିପାରିବେ । ସେମାନେ କହିପାରିବେ—

ଦିନେ ସେଠାରେ ଏକ ଜନବସତି ଥିଲା । ଅକର୍ଷିତ ବସୁନ୍ଧରାକୁ ଦିନେ ଲୋକ ନିଜ ନିଜ ରକ୍ତ ପାଣି ଫିଟାଇ ଚୃଷ କରିବାକୁ ଅଣ୍ଟା ଭିଡ଼ିଲେ । ସେମାନଙ୍କ ବାହୁ ବଳରେ ବିରାଟ ଚତୁଃଶ୍ରେଣୀ ତିଆରି ହେଲେ । ଦୁର୍ଗମ ବନପଥ ସହଜ ସୁଗମ ହୋଇପଡ଼ିଲା । ପଥର ପାଣି ଫାଟିଗଲା । ମାଟି ଉପରେ କେବଳ ସୁନାର ଫସଲ ଆଦାୟ ହେଲା ! ତାହାରି ଭିତରେ ଶ୍ରେଷ୍ଠ ଶ୍ରେଷ୍ଠ କୁଡ଼ିଆ କୋଡ଼ିଏଟି ଧୀରେ ଧୀରେ ମୁଣ୍ଡ ଟେକିଲେ । ଆନନ୍ଦ କଳରବ-ମୁଖରିତ ସେହି ପଲ୍ଲୀ ଭିତରେ ଜୀବନ୍ତ ଯୌବନ ନାଚିଲା, ହୃଷ୍ଟ ଚିତ୍ତ, ପୁଷ୍ଟ ଦେହ, ଅଭାବ-ଅଭିଯୋଗ-ବିରହିତ ଅଧିବାସୀ ତାହା ଭିତରେ ମଧୁମୟ ଲୀଳା ଆରମ୍ଭ କରିଦେଲେ । ଏହି ହେଲା, ସେଇ ଭୂଇଁର ରାମରାଜ୍ୟ ।

ଦେଖୁ ଦେଖୁ ଦିନେ ତାହାରି ନିକଟରେ ତୋଳାହେଲା ଆଉ ଏକ ଘର । ସଭ୍ୟତାର ନୂତନ ଆମଦାନୀ ଜାକ୍ ଜମକିଆ ପୋଷାକପତ୍ର ପିନ୍ଧି ତା' ଭିତରେ ତହସିଲଦାର ବାବୁ ବସା ବାନ୍ଧିଲେ । କେତେ ଦିନ ପରେ ଦେଖାଗଲା, ଏକ ଦିଗରେ ଆଲୁଅ, ଅନ୍ୟ ଦିଗରେ ଅନ୍ଧାର ସେଠାରେ ଖେଳ ଆରମ୍ଭ କଲେ । ରାତିରେ ଯେତେବେଳେ ଉଚ୍ଚ ଧଳା ଘରଟାରେ ଆଲୁଅ ଜଳିଉଠେ, ପାଖ କୁଡ଼ିଆଗୁଡ଼ିକ ଅନ୍ଧାର ଭିତରେ ବୁଡ଼ିଯାଏ । ହୁହୁଁ ହୁହୁଁ ଏକ ଦିଗରେ ଧନୀ, ଅନ୍ୟ ଦିଗରେ ଗରିବ । ଏକ ଦିଗରେ ବିରାଟ ଉତ୍ସବ, ଅନ୍ୟ ଦିଗରେ ନିରାଟ ଲାଞ୍ଛନା । ଏକ ଦିଗରେ ଝାଳବୁହା

ପରିଶ୍ରମ, ଅନ୍ୟ ହାତରେ ଭୁଲିଗଲୁ ବିହାର ! ଆଲୁଅ ପରେ ଗୀତ ବାଦ୍ୟ ଶୁଭିଲେ ଅନ୍ଧାର ଘର ଭିତରେ ବିସ୍ମୟ ହୁଏ—"ଏ କିଛି ବିପଦର ସୂଚନା !"

କିନ୍ତୁ ବିପଦ ଏକା ଥରକେ ଅଇଲା ନାହିଁ । ତାହା ଧୀରେ ଧୀରେ ଆସ୍ତେ ଆସ୍ତେ ଆସି ପେଟ ଉପରେ ପଡ଼ିଲା । ମଣିଷ ସବୁ ବିପଦ ସହିପାରେ; ମାତ୍ର ପେଟର ବିପଦ ସହିପାରେ ନାହିଁ । ପେଟର ବିପଦ ଯେଉଁଠି ନିତାନ୍ତ ଅସହ୍ୟ ହୁଏ, ସେଠାରେ ହୁଏ ବିଦ୍ରୋହ !

ମହାନଦୀକୂଳର ସେହି ମଶାଣିଭୂଇଁରେ ଏହିପରି ଏକ ବିଦ୍ରୋହ ଦିନେ ଆରମ୍ଭ ହେଲା । ଉଦୟରୁ ଅସ୍ତ ଯାଏ ମାଟି ଖୋଳି ଖୋଳି, ମାଟିକୁ ଜୀବନର ସାଥିକରି ମଧ୍ୟ ଯେତେବେଳେ କୁଡ଼ିଆ ଭିତରର ପେଟ ଶାନ୍ତ ପାଇଲା ନାହିଁ, ବିଦ୍ରୋହ ଧୀରେ ଧୀରେ ତା ଭିତରେ ମୁଣ୍ଡ ଟେକିଲା । ସେହି ଯେଉଁ କୁଡ଼ିଆ ତଳର ଜୀବ, ତାଙ୍କର ଭିତରେ ଦିନେ ଏକ ସଭା ବସିଲା । ଅନ୍ଧାର ଗର୍ଭରେ କାହା ମୁହଁକୁ କେହି ଦେଖି-ପାରିଲେ ନାହିଁ । କେତେଗୁଡ଼ାଏ ମୁଣ୍ଡ କେବଳ ବଣର ଏକ ବୁଢ଼ା ମହୁଲ ଗଛ ତଳେ ଏକାଠି ହୋଇ ବିଶୃଙ୍ଖଳପରି ଜଣାପଡ଼ିଲା । ସେହି ଅନ୍ଧାର ଭିତରେ କିଏ କହିଲା—

"ଆମେ ଯେ ମଣିଷ, ଏକଥା ଆମେ ସମସ୍ତେ ବୁଝିବାକୁ ହେବ ।"

"ବେଶ୍, ଭଲ କଥା । ସମସ୍ତେ ଅନ୍ଧାର ଭିତରେ ସେହି ଆଡ଼କୁ ଚାହିଁରହିଲେ ।

ପୁଣି ସେହି ସ୍ୱର ଶୁଭିଲା—"ଆମେ ଯେବେ ମଣିଷ, ଆମେ ମଣିଷ ପରି ଚଳିବା । ଚାଲ ଯିବା, କହିବା ସେଠି—"ଆମେ ଯେ ଚାଷ କଲୁ, ତାହା ତ ଖଜଣା ପାଇଁ କଲୁ, ପେଟ ପାଇଁ କାହିଁ ?"

ସମସ୍ତେ ଏହି ଅନ୍ଧକାର ଭିତରେ ଭୟରେ ଜଡ଼ସଡ଼ ହୋଇ ଏଣେ ତେଣେ ଚାହିଁଲେ, ପୁଣି ସେହି ସ୍ୱର ଉଠିଲା—

"ବଣ ଜଙ୍ଗଲ ପଡ଼ିଛି । ଆମର ବାପେ ବଡ଼ ବାପେ ଯେବେ ଏତେ ବଣ କାଟିଥିଲେ, ଆମେ କଣ ଆଜ ଠାଏ ଏପରି ବଣ କାଟି ପାରିବା ନାହିଁ ? ଯେଉଁଠି ଏପରି ଉଆସ ଘର ନାହିଁ, ସେଠି ଆମର ଘର ହିଁ ଦରକାର ! ! କଣ କହୁଚ ?"

"ଠିକ୍ ଠିକ୍, ଠିକ୍ ।"

"ତେବେ........"

ତେବେ ଉଠିବାକୁ ହେବ । ମାତ୍ର ଯେଉଁ ରାଜଭାଗ ଦେବାକୁ ରହିଲା, ତାହା କପରି ଛଡ଼ାଯିବ ? ନହେଲେ ଧର୍ମରେ ହାନି ହେବ ଯେ !!"

ଏ ଯେ ବଳ, ଏ ଯେ ପଡ଼ିଆ—ରାଜଭାଗ ଏଥିରେ ଅଛି ! ରାଜଭାଗ ଆମେ ନୋହୁ କି ଆମ ପେଟ ନୁହେ । ଥାଉ ସେ ରାଜଭାଗ !"

"ତେବେ ଏ ଘର·········?"

"ଏ ଘର ଭସ୍ମ ହେଉ ।"

"ହେଉ......"

ସେଇ ରାତି ଭିତରେ ଅନ୍ଧାର ଘର ଆଲୁଅ ହେଲା । ପଥର ଘରୁ ଲୋକ ଆସି ଦେଖିଲେ ଯେ, କୁଡ଼ିଆ ସବୁ ଖାଲି । ତା ଭିତରେ ଖାଲି ହୁ ହୁ ନିଆଁ ଜଳୁଛି !

ସେ ଯେ ନିଆଁ, ସେ ଘରର ନୁହେ, ସେ ଦରିଦ୍ରର ହୃଦୟର ନିଆଁ—କେବଳ ପେଟର ନିଆଁ । ସେଦିନଠୁ ସେ ଜାଗା ମଶାଣି ହେଲା ! ପେଟର ବିଦ୍ରୋହ ସେଇଠାରେ ଶେଷ ହେଲା । ପ୍ରଥମେ ପେଟ ପାଇଁ କୃଷକର ପରେ ଖଜଣା ପାଇଁ କେବଳ କୃଷି କରିବାକୁ ଯେଉଁମାନେ ବାଧ୍ୟ ହେଲେ, ସେହି ହତଭାଗାଙ୍କ କଥା କିଏ କହିବ ?

# ବନ୍ଦୀ

ବନ୍ଦୀ ହସୁଛି; ମାତ୍ର ତା ହସରେ ସରସତା ନାହିଁ ।

ତାର ଅଧର ଶୁଖି ନିତାନ୍ତ କଳା ପଡ଼ିଯାଇଛି; ଆଖିରେ ଜ୍ୟୋତି ନାହିଁ । କଣ୍ଠ ସ୍ୱର କେତେ କାଳୁ ତାଲୁ ଭିତରେ ଲୀନ ହୋଇଯାଇଛି । ତା ଭିତରେ ସେ ହସୁଛି······ହାଃ—ହା—ହା···ଆ·· ·–

ହସୁଛି ସେ—ହସି ହସି ଭାଜିପଡ଼ୁଛି । ତା ବୁକୁର ହାଡ଼ ଗୋଟି ଗୋଟି ହୋଇ ଗଣିହୋଇଯାଉଛି; ଗାଲର ଠୁଙ୍ଗି ବାହାରିପଡ଼ୁଛି, ପାଦର ଗତି ଠିକ୍ ଲକ୍ଷ୍ୟ ବାଟରେ ପଡ଼ୁନାହିଁ । ତଥାପି ସେ ଅବସ୍ଥାରେ ସେ ହସୁଛି—ହାଃ ହା—ହା—ହା – ଆ···

ତାର ହାତରେ ଲୁହା କଡ଼ା, ଅଣ୍ଟାରେ ଦଉଡ଼ି, ମୁଣ୍ଡରେ ଟୋପୀ, ଦେହରେ ଏକମାତ୍ର ଆବରଣୀ ଜଙ୍ଘିଆ, ତେବେବେ ବି ସେ ହସି ହସି ଭାଜିପଡ଼ୁଛି !!

ବନ୍ଦୀର ହସ ବଡ଼ ବିକଟ ହସ । ଗଛରୁ ପକ୍ଷୀ ସେ ସ୍ୱର ଶୁଣି ଉଡ଼ିଯାଉଛନ୍ତି; ବାଟର ବାଟୋଇ ବୁଲି ଗୁହୁଁଛି । ବୁଲାବାଳୀ ତା ବାଟ ବନ୍ଦକରି ରହୁଛି । ଦୋକାନୀ ଦେଖୁଛି, ଗ୍ରାହକ ତାର ତା' ପାଖରୁ ମୁହଁ ବୁଲେଇଦେଉଛି । ଏ ସବୁ କେବଳ ବନ୍ଦୀର ହାସ୍ୟରୋଳ ଶୁଣି । ଅଣ୍ଟାର ଦଉଡ଼ିଟାକୁ ଧରିଥିବା ଚପରାସୀ ଶେଷରେ ଖୁବ୍ ଜୋରରେ ଟାଣିଦେଇ କହୁଛି—"ଜଲ୍‌ଦି ଚଲ, ଜଲ୍‌ଦି ଚଲ ।"

ଗୋଟାଏ ଝିଙ୍କା ଖାଇ ବନ୍ଦୀ ପଛକୁ ବୁଲି ଚାହିଁ କହିଲା—"ବେଶ୍ ତ; ମୁଁ ଯେ କଏଦୀ ! ମୁଁ କି ଏ କଥା ମନେରଖିଛି ବାବୁ ? ଏକ ନମ୍ବର ଦାଗୀର ପୁଣି ଏ କଥା ମନେ ରହୁନାହିଁ ! କଳିକାଳ ତ !!"

ଚପରାସୀ ବିସ୍ମିତ ହୋଇ ପଚାରିଲା—"ଏ କଥା କଣ ତୋର ମନେ ନଥିଲା ?"

"ସେ ଘର ଭିତରେ ମନେ ଥିଲା ବାବୁ ! ମାତ୍ର ଏବେ ଯେ ତୁମେ ମୋତେ ବାହାରକୁ ଆଣିଛ ! ଏ ଖୋଲା ପବନ, ଏ ମିଠା ଆଲୁଅ, ଏ ଗହଳ ଚହଳ—ଏ ସବୁ ଦେଖି କ'ଣ ସେ କଥା ମୋର ମନେ ରହିପାରିବ ?"

"ହେଲା, ମନେ ବା ନ ରହିଲା, ଏଥିରେ ହସିବାର ବା କି କାରଣ ଅଛି ?"

ବନ୍ଦୀ ବେଖାତିର ଭାବରେ କହିଲା—"ହସିବାକୁ କାରଣ ନାହିଁ ? ଏଇ ତ ଦେଖୁଛି, ମୋ ପରି ଅନେକ ଲୋକ ଅଛନ୍ତି । କି ବୋକା ସତେ ସେମାନେ ! ଏ ଜେଲଖାନାକୁ ନ ଆସିଲା ଯାଏ ସେମାନେ ପ୍ରକୃତ ମନୁଷ୍ୟକୁ ଚିହ୍ନିପାରିବେ ନାହିଁ ।"

ଚପରାଶୀ କିଛି ବୁଝିପାରିଲା ନାହିଁ । ପଚାରିଲା—"କିରେ, ପାଗଳ ହେଲୁ କି ?"

"ହଁ ବାବୁ, ପାଗଳ ବୋଲି ଧରାହୋଇଥିଲି, ଆଜି ପାଗଳ ବୋଲି ଦଣ୍ଡ ମଧ୍ୟ ପାଉଛି; ମାତ୍ର ମୁଁ ତ ପାଗଳ ନୁହେ, ମୋ ମଥା ଖୁବ୍ ଠିକ୍ ଅଛି । ଯେଉଁମାନେ ବିଚାର କରି ଦଣ୍ଡ ଦେଉଛନ୍ତି ସେହିମାନେ ହେଉ-ଛନ୍ତି ପାଗଳ ।"

"ଚୁପ୍, ସଇତାନ ! ଚାଲ୍, ଚାଲ, ଜଲଦି ଚାଲ୍ ।"

ବନ୍ଦୀ ଚାଲିଲା । ହାତକଡ଼ା ତାର କି ଗୀତ ଗାଇଲା । ଶୁଭିଲା—ଝନ୍, ଝନ୍, ଝନ୍ । ବନ୍ଦୀ ତା ସଙ୍ଗେ ସଙ୍ଗେ କହିଲା—"ଶୁଣିବ ବାବୁ କଥାଟିଏ ?"

"କି କଥା ?"

"ଯେଉଁ କଥା ଶୁଣିଲେ ଆପଣ ପାଗଳ ହେବେ ।"

"ମୁଁ ହେବି ପାଗଳ ! ଚାଲ୍, ଜଲଦି ଚାଲ୍ ।"

ବନ୍ଦୀ ଚପରାସୀର ମୁହଁକୁ ଟିକିଏ ବୁଲି ଚାହିଁ କହିଲା—"ଚାଲୁଛି । ଶୁଣ, ଦେଖ; ଏଇ ଯେ ଲୋକଟା ଗଛ ମୂଳେ ବସିଛି, ତାକୁ ଦେଖ .."

"ହଁ, ଦେଖୁଛି, ତୁ ଚାଲ୍ ।"

"ଶେଯ ଲୁଗା ଖଣ୍ଡେ ପିନ୍ଧିଛି, ଏ କଥା କହିହେବ ନାହିଁ । ଖାଲି ତା ଅଣ୍ଟାରେ ଗୁଡ଼ାଏ କନାଧଡ଼ି ଗୁଡ଼ାପାଇଛି ।"

"ହଁ, ତା ତ ଦେଖୁଛି ।"

"ତା ପରେ ଦେଖ ତାର ଦେହକୁ । ଉପରେ ଚମ, ଭିତରେ ହାଡ଼—ମାଂସ ନାହିଁ କି ରକ୍ତ ନାହିଁ......"

"ତା ପରେ ? କଣ ତୁ କହୁଛୁ ?"

"କଣ କହୁଛି ? ବୁଝିପାରୁ ନା ? ସେ ଆସିଛି ଭିକ ମାଗି ।"

"ହେଲା କଣ ?"

"ବନ୍ଦୀ ଟିକିଏ ନୀରବ ରହି ତା ପରେ କହିଲା—"ଧର, ତା ଘରେ ଥିବ ଗୋଟିଏ ଶିଶୁ । ମା' ତାକୁ ଜଗି ବସିଥିବ । ତାର ବୋଧହୁଏ

ଉଠିବାକୁ ବଳ ନଥିବ । ଶିଶୁଟି ପେଟ ବକଳରେ ଦୁଧ ପାଇଁ କେବଳ ମାଆର ବୁକୁ ଉପରର ଚମ ଦ'ଟାକୁ ଚୁଚୁମୁଥିବ !"

ତପସ୍ୱୀର ସେ କଥା ଶୁଣିବାକୁ ଧୈର୍ଯ୍ୟ ରହିଲା ନାହିଁ । ପଚାରିଲା —"ଆରେ, କଥା କଣ ?"

ବନ୍ଦୀ କହିଲା—"କଥା କଛି ନୁହେ । ଏ ଆସିଛି ଭିକ ମାଗି ସେହି ଶିଶୁ ଓ ତାର ମା'କୁ ପୋଷିବାକୁ !"

"ହେଲା କଣ ? ଏଥିରେ ବା ହସିବା କଥା କଣ ଅଛି ?"

"ନା, ଆହୁରି କଥା ବାକି ଅଛି । ଦେଖୁଛ ତ, ଏ ରାସ୍ତାରେ କେତେ ଲୋକ ଯିବାଆସିବା କରୁଛନ୍ତି । ହୁଏ ତ ଏ ଭିତରେ ଏ ଲୋକ ଗହଳରେ କେଉଁ ରାଜକୁମାର ଯାଉଥିବ । ତା ହାତରେ ଥିବ ସୁନାର ଖଡ଼୍ଗ । ଅଣ୍ଟାରେ ଥିବ ସୁନାର ସୂତା, ବେକରେ ଥିବା ସୁନାର ମାଳି; ଆଉ ତା ପକେଟରେ ଥିବ ସୁନା ମୋହର !!"

"ଥିଲେ ଯାଉ ର କଣ ହେବ ?"

"ଠିକ୍ ସେହିକଥା କହିଆସୁଛି । ଯାର କଛି ହେବ ନାହିଁ । ହୁଏ ତ ଏ ବଗୁଲବ, ଯାହାର ଏତେ ଏତେ ସମ୍ପଦ ଅଛି, ସମ୍ପତ୍ତିରୁ ଗୋଟିଏ ତାହା କଣ କାଢ଼ିନେଲେ କଛି ଆପତ୍ତି ଅଛି ? ସେ ଏକଥା ବଗୁର ଗ୍ରେପ୍ତକରିବ ନାହିଁ—ଲୁଚି ଲୁଚି ଯାଇ ପଛପଟୁ ବେକରୁ କାଢ଼ିନେବ ଗୋଟିଏ ହାର !"

"ବେଶ୍ ତ, ଏ କଣ ଚୋରି ନୁହେଁ ?"

ବନ୍ଦୀ ଉତ୍ତେଜିତ ହେଲାପରି କହିଲା—"ହଁ, ହାକମ କହିବେ ଚୋରି ବୋଲି; ଆଉ ତୁମେ କହିପାର ଚୋର ବୋଲି । ମାତ୍ର ସେ କପରି କହିବ ଯାକୁ ଚୋରି ? ଯେ ଧୂଳି ପରି ତଳେ ପଡ଼ିଛି, ସେ ଯେବେ ପର୍ବତ ଦେହର ଧୂଳି ଟିକିଏ ନେଇ ଆପଣାର ବଳ ବଢାଇବାକୁ ଚେଷ୍ଟା କଲା, ତାହା କଣ ହେଲା ଚୋରି ? ହଉ ଚୋରି ହେଲା, ତା ପରେ ସେ ଧରାଗଲା —ଶେଷରେ ହେଲା ତାର ବଗୁର···"

ବନ୍ଦୀ ନୀରବ ରହିଲା । ମୁହଁପୋତି କେତେ ସମୟ ଠିଆହେଲା । ପଛ ପଟୁ ଶବ୍ଦ ଶୁଭିଲା—"ଚାଲ୍, ଜଲଦି ଚାଲ୍ ।"

ବନ୍ଦୀ ନିଦରୁ ଉଠିଲା ପରି ଚମକି କହିଲା—"ହଁ," ଚାଲୁଛି । କଣ କହୁଥିଲି ବାବୁ ? ଆଖିର ପାଣିକି ଲୁହ କାହିଁକି କହୁଛନ୍ତି ? ଏଗୁଡ଼ାକ ଯେ ରକ୍ତର ଲହୁ !" କହୁ କହୁ ସେ ଆଖିରୁ ଦୁଇଧାର ଲୁହ ଢାଳି ଦେଲା ।

ଚପରାସି ହାତରେ ଧରିଥିବା, ଦଉଡ଼ିଟାକୁ ଟିକିଏ ଟାଣିଦେଇ କହିଲା—"ଆରେ ପାଗଳ, ପାଗଳାମି ଦେଖାଇବାକୁ ବେଳ କଣ ଏତିକିବେଳେ ?"

"ନା ଆଦୌ ପାଗଳାମି ନୁହେଁ, ବାବୁ ! ସେ ମକଦ୍ଦମା ବିଚାର ବେଳେ ତାର ସ୍ତ୍ରୀ ଆସିବ । ଠିକ୍ ମଶାଣିରୁ ଉଠିଆସିଲା ପରି ଆସି ସେ କଚେରୀ ପିଣ୍ଡାରେ ଠିଆହେବ । ତା ହାତରେ ଥିବ ଗୋଟିଏ ସ୍କେଟ ମଣିଷ ଦେହର ହାଡ଼—ଗୁଞ୍ଜ—ଉଃ—ସେ କହିବ—ଏହାରି ପାଇଁ—ଏହାରି ପାଇଁ ......"

ବନ୍ଦୀର କଣ୍ଠରୋଧ ହୋଇଆସିଲା । ମୁହଁକୁ ବିକୃତ କରି ସେ କହିଲା—"କଚେରୀ ଘରେ ହାକିମ ଆଗରେ ବିଚାର ବେଳେ ସେହି ହାଡ଼ ଗୁଞ୍ଜଟି—ସେହି ଶିଶୁଟି, ଥରେ ମାତ୍ର ପବନ ଲୋକ ଆଖି ତରାଟି ଦେବ । ସେ ମଲାବେଳେ ହାକିମ ତା ବାପାକୁ ଦଣ୍ଡ ଦେବେ ଦୁଇ ବରଷ ! !···ପାଗଳ କିଏ ବାବୁ··· ??

ଏହିପରି ସମୟରେ ପଛପଟୁ ଏକ ଧକ୍କା ବାଜିବା ସଙ୍ଗେ ସଙ୍ଗେ ଶବ୍ଦ ଶୁଭିଲା—"ପାଗଳ ତୁ ! !"

"ବାପ ରେ"—କହି ବନ୍ଦୀ ମୁହଁ ପୋତି ବସିପଡ଼ିଲା ।

ତାର ଚେତା ହେଲା ବନ୍ଦୀଶାଳା ଭିତରେ । ସେ ଏକ ମାତ୍ର ସ୍କେଚକର ଜେଲ ପାଇଥିଲା ଦେଢ଼ ବରଷ ତଳେ । ତାରି କୋଳର ସଂଖାଳି ଶିଶୁଟି ତାହାରି ବିଚାର ବେଳେ କଚେରୀ ଭିତରେ ମାଆ କୋଳରେ ଆଖି ବୁଜିଥିଲା;—ସେ ଦିନକୁ ତାର ସାତ ଦିନ ଉପାସ । ପରେ ଜଣାଗଲା, ବନ୍ଦୀ ବାହାରକୁ ଗଲାବେଳେ କୌଣସି ଭିକାରୀ ଦେଖିଲେ ତାର ଏପରି ପାଗଳାମି ବାହାରେ ।

# ଆଖିର ସେ ପାଖେ

ଶତାବ୍ଦୀର ଆୟୁଷ ଯେବେ ବରଗଛଟା ସେଇଠି ଥିଲା । ତାହାର ପାଖେ ପାଞ୍ଚ ବର୍ଷ ହେଲା ଯେଉଁ ଡାକ୍ତରଖାନାଟି ପ୍ରାୟ ପନ୍ଦର ଫୁଟ ଉଚ୍ଚକୁ ମୁଣ୍ଡ ଟେକିଛି ତାହାର ଫଳରେ ଲୋକେ ସେଇ ବରଗଛକୁ ଭୁଲି-ଯାଇଛନ୍ତି । କହୁଛନ୍ତି କ'ଣ ନା—ଡାକ୍ତରଖାନା ହତାରେ ବରଗଛଟା ଅଛି ! କିନ୍ତୁ ଶୁନ୍ଦୁ ଜାଣି କହେ—ବରଗଛ ପାଖେ ଡାକ୍ତରଖାନାଟା ଅଛି । ସେ କାହିଁକି କହେ ନା ବରଗଛକୁ ସେ ଜାଣେ, ତା ବାପା ଜାଣେ, ଆଉ ବଡ଼ ଗୋସେଇଁ ବାପା ଜାଣେ ବୋଲି ବାପାଙ୍କଠାରୁ ସେ ଶୁଣିଛି । ଏତେ ବଡ଼ ବରଗଛ ଇତିହାସ ସୃଷ୍ଟି କରି ନପାରି ପଞ୍ଚବାର୍ଷିକ ଯୋଜନାର ପନ୍ଦର ଫୁଟ ଉଚ୍ଚର ପକ୍କା ଘରଟା ବର୍ତ୍ତମାନ ସେଠାରେ ଇତିହାସ ସୃଷ୍ଟି କରୁଛି ।

ଆଗେ ସେ ବରଗଛ ପାଖକୁ ବଣର ସବୁ ଜୀବଜନ୍ତୁ ଆସୁଥିଲେ । କୁଆ, ବଣି, ପାରା ତା କୋଳରେ ତ ଆଶ୍ରୟ ନେଉଥିଲେ, ହାତୀ ଆସୁ-ଥିଲା ଡାଳ ଖାଇବାକୁ, ବାଘ ଆସୁଥିଲା ଶୀକାର ଖୋଜିବାକୁ, ଖରା କାଳରେ ଥଣ୍ଡା ପାଇବା ପାଇଁ ହରିଣ ସମ୍ବର ମଧ୍ୟ ଆସୁଥିଲେ । ସମସ୍ତେ ଏବେ ଦୂରେଇଗଲେ ସେଇ ପକ୍କା ଘର ଯୋଗୁ । ସେମାନେ ଆଉ ପାଦ ପକାଇଲେ ନାହିଁ ଉପଭୋଗ କରିବାପାଇଁ ସେହି ବରଗଛ ପାଖକୁ; କିନ୍ତୁ ଏବେ ଯେଉଁମାନେ ସେଇ ବରଗଛ ପାଖରେ ଆସି ବସୁଛନ୍ତି ସେମାନେ ହେଉଛନ୍ତି ପ୍ରାୟ ସମସ୍ତ ରୋଗୀ, ଯନ୍ତ୍ରଣାରେ ଛଟପଟ ହେଉଛନ୍ତି ।

ଶୁକୁ ଜାନ ଏଣ୍ବପର ଗୋଟିଏ ଜୀବ । ଜୀବନର ସ୍ୱାଦ ଅନୁଭବ କରିବା ପାଇଁ ହାତରେ ଧନୁଶର ଧରି କେତେ ଥର ସେ ସେହି ବରଗଛ ମୂଳେ ବସିଛି, ଜାଲ ପକାଇ କେତେ ଥର ସେ ଅପେକ୍ଷା କରିଛି; କିନ୍ତୁ ଏଥର ଯେ ସେ ଆସିଲା, ତା ହାତରେ ଧନୁଶର ନଥିଲା କି ଜାଲ ନଥିଲା । ସେ ଥରେ ଆସିଥିଲା ପୁଅକୁ କୋଳରେ ଧରି ଔଷଧ ପାଇଁ । ତା ଜୀବନରେ ସେ କାମ ନୂଆ । ଆଗେ ବଣ ଜନ୍ତୁଙ୍କ ଭିତରେ ସେ ନିଜକୁ ଜଣେ ବୋଲି ମନେ କରୁଥିଲା । ବଣ୍ଡର ପେଟ ଖରାପ ହେଲେ ସେ ଘାସ ଖାଇ ବାନ୍ତି କରେ । ବଣ ମଇଁଷି, ଜିଆଦ, ହରିଣଙ୍କ ଦେହରେ ଘା ହେଲେ ସେମାନେ ଡାଳପତ୍ରରେ ଘଷିହୋଇଯାଆନ୍ତି । ବେମାର ହେଲେ କେତେ ଜନ୍ତୁ ଲୁଣି ଉକୁଠା ମାଟି ଖାଇ ଆରୋଗ୍ୟ ହୁଅନ୍ତି । ଶୁକୁ ଜାନ ଏଣ୍ବପର ପ୍ରକୃତିର ଜଣେ ଜୀବ ଥିଲା । କେଉଁ ଗଛର ପତ୍ର, କେଉଁ ଝରଣା କୂଳର ମାଟି, କେଉଁ ଲତାର ଚେର ନେଇ ସେ ଓ ତାର ଜାତିର ଲୋକେ ରୋଗମୁକ୍ତ ହେଉଥିଲେ; କିନ୍ତୁ ଯେଉଁ ଦିନ ସଭ୍ୟତାର ଆଲୋକ ସେହି ଘନ ବନାଞ୍ଚଳ ଭିତରେ ପଡ଼ିଲା ସେମାନେ ଦେଖିଲେ ସବୁ ରୋଗ ପାଇଁ ଗୋଟାଏ ଘରେ ଔଷଧ ଜମା, ଜଣେ ଲୋକ ତାକୁ ଦେଉଛି; ସେହି କେବଳ ଔଷଧ ଜାଣେ, ଆଉ, ସେହି କେବଳ ରୋଗ ଚିହ୍ନେ । ନିଜର ରୋଗ ନିଜେ ଚିହ୍ନିବା ନମେ ଲୋକଙ୍କ ପକ୍ଷେ ଅସମ୍ଭବ ହୋଇପଡ଼ିଲା । ତେଣୁ ଶୁକୁ ଜାନର ସାତର ବର୍ଷର ପୁଅ ଯେତେବେଳେ ଶେଯରେ ପଡ଼ି ରହିଲା, ଶୁକୁ ଜାନକୁ ଦେଖାଯାଇଥିଲା କେବଳ ସେହି ଘରଟା । ଶତାବ୍ଦୀର ଆୟୁଷ ନେଇ ଯେଉଁ ବିରାଟ ବରଗଛ ଅଗଣିତ ଜୀବଜନ୍ତୁଙ୍କୁ ଆଶୀର୍ବାଦ ଦେଇ ପତ୍ର ଡାଳପତ୍ର ବାହା ମେଲେଇ ଠିଆହୋଇଛି, ତାହାରି ତଳେ ସେ ଆସି ପୁଅକୁ ଲୁଗା ଖଟିଆରେ ଶୁଆଇ ଥରେ କହିଥିଲା—"ପୁଅ ରେ, ତତେ ଭଲ କଲେ ମୁଁ ଏଠାରୁ ଯିବି ।" କିନ୍ତୁ ଦିନ ପନ୍ଦରଟା ପରେ ସେ ଏକାକୀ ଘରକୁ ଫେରିଲା, ପୁଅ ଆଉ ଯାଇପାରିଲା ନାହିଁ । ମଲା ପୁଅର ମୁହଁରେ କେତେକ ଗଛର ଚେର, କେତେ ଲତାର ପତ୍ର ଆଣି ଦେଲା; କିନ୍ତୁ ପୁଅ ଯେତେବେଳେ ଉଠିଲା ନାହିଁ; କହିଲା—ଏଇ ଜାଗାଟା ଖରାପ ହୋଇଗଲା !!

ଶୁନ୍ୟ ଜାନ ତାର ସେଇ ପଣ କୁଆଡ଼କୁ ଫେରବାର ତନ ବର୍ଷ ପରେ ପୁଣି ସେଇ ବରଗଛ ମୂଳକୁ ଆସିବା ଦରକାର ପଡ଼ଲା । ସେଇ ବରଗଛଠାରୁ ପ୍ରାୟ ପାଞ୍ଚ କୋଶ ଦୂରରେ ଏକ ପର୍ବତ ତଳେ ତାର ଘର । ଘରେ ତାର ଏକମାତ୍ର ସାଥି ଗୋଟିଏ କୁକୁର । ସେ ଘରେ ଶୋଇଲେ କୁକୁର ବାହାରେ ଶୁଏ । ସେ ବାହାରକୁ ଗଲେ କୁକୁରଟି ପଛରେ ରହେ । ସେ ପାଣିକି ପଶିଲେ କୁକୁର ପାଣିକୁ ଲାଗି କୂଳରେ ଠିଆହୋଇ ରହେ । ସେ ମନେ ମନେ ପୁଅକୁ ଖୋଜିଲେ କୁକୁର ଜାଣିଲା ପରି ପାଞ୍ଚକୋଶ ଦୂରରେ ଥିବା ସେହି ବରାଟ ବରଗଛ ଆଡ଼କୁ ମୁହଁ ବୁଲାଇ ଠିଆହୁଏ । ଖଣ୍ଡେ ଦୂର ଧାଇଁ ଆସି ପୁଣି ଫେରିଯାଏ । ସତେ ଯେପରି ସେ ତାର ମାଲିକକୁ କହେ – ଚାଲ ଯିବା, ଯେଉଁଠି ମୁଁ ବନ୍ଧୁବାର ଶୀକାର କରିଥିଲି ସେଠି ସେ ଥିବ । ଶୁନ୍ୟ ଜାନ କୁକୁରର ମନ କଥା ବୁଝିଲା ପରି ତାକୁ ଜାକିଧରି ମୁହଁକୁ ମୁହଁ ଲଗାଇ କହେ – ସେଠାକୁ ଯାଇ ପାରିବନି ରେ, ଯାଇ ପାରିବନି ! ସେଠାରେ ଏତେ ଆଲୁଅ ଯେ ମୋ ଆଖି ଝଲସିଯିବ । ତାକୁ ଦେଖିବ କିମିତି ? ଏହା କହି ସେ ଅନେକ ସମୟ ଭାବେ, ଆଖି ବୁଜି ବସେ ।

ଅନ୍ଧାରରେ ଲୋକ ଦେଖିପାରେ ନାହିଁ; କିନ୍ତୁ ଆଖି ବୁଜିଲେ ଯେ ଅନ୍ଧାର, ଶୁନ୍ୟ ଜାନ ସେହି ଅନ୍ଧାର ଭିତରେ ଅନେକ କଥା ଦେଖିପାରେ । ତାକୁ ଦେଖାଯାଏ ତରୁ-ପଲ୍ଲବଶୋଭିତ ଏକ ନିଘଞ୍ଚ ବନ ପ୍ରଦେଶରେ ଜଣେ କିଏ ହସିଲା, ଖେଳିଲା, ବୁଲିଲା । ମହୁଲ ଫୁଲର ରସ ପ୍ରାଣରେ ପରିତୃପ୍ତି ଆଣିଲା । ସେ ମତୁଆଲା ହୋଇ ଜଣକୁ ପାଇଲା । ଯାହାକୁ ପାଇଲା ସେ ମହୁଲ ଫୁଲ ପରି ଫୁଟି ମହୁଲ ମହକରେ ତାକୁ ଆସକ୍ତ କରି ଅଳ୍ପ ଦିନରେ ଚାଲିଗଲା । କିନ୍ତୁ ଦେଇଗଲା କୋଳରେ ଏକ ଅମୂଲ୍ୟ ନିଧି, ଯାହାକୁ ଧରି ସେ ବଣରାଜ୍ୟରେ ନିଜକୁ ଭାଗ୍ୟବାନ୍ ମନେକଲା । ସେ ହାତକୁ ହାତ ପକାଇ, କାନ୍ଧକୁ କାନ୍ଧ ପକାଇ ତାହାଠାରୁ ଆହୁରି ଧୈର୍ଯ୍ୟ, ଆହୁରି ସାହସ ଦେଖାଇଲା । ବଣର ବାଘ ଭାଲୁ ତାକୁ ଡରିଲେ । ଖରା, ବର୍ଷା, ଶୀତ ତାକୁ ବାଧିଲା ନାହିଁ; କିନ୍ତୁ ତାକୁ ବାଧିଲା ଆଚାନକ । ସେହି ବୁଢ଼ା ବରଗଛ ମୂଳେ ବଣ-ରାଜ୍ୟର ସବୁ ମମତାକୁ ହରାଇ ପାହାଡ଼ର ଫୁଟିଆ ଘରେ ଥିବା ଜଣଙ୍କ ହାତରୁ ସେ ଖାଇଲା ଔଷଧ ।

ଆଇଲା ବେଳେ ପବନ ବହୁଥିଲା, ଗଛପତ୍ର ହଲୁଥିଲେ, ବଣର ପଶୁ ପକ୍ଷୀର ଶବ୍ଦ ଶୁଣାଯାଉଥିଲା । ସେ କହିଲା—ବାପା ! ମୁଁ ସେମାନଙ୍କ ପାଖକୁ ଫେରିଯିବି । ସେମାନେ ମନା କରୁଛନ୍ତି ଏଠାକୁ ଆସିବାକୁ ।

ପ୍ରାକୃତିକ ମଣିଷ ଅପ୍ରାକୃତିକ ବସ୍ତୁକୁ ଦେହରେ ଚଳାଇ ନ ପାରିଲେ ସେ ହେଲା ଅସଭ୍ୟ ! କୁହାଯିବ—ତାହାର ଶିକ୍ଷା ନାହିଁ । ଶୁକ୍ରୁ ଜାନିର ପୁଅର ଅବସ୍ଥା ସେଯୁା ହେଲା । ତାହାର ରୋଗ ଗ୍ରହଣ-କଲା ନାହିଁ ସଭ୍ୟତାର ଔଷଧ । ସେ ଲୋଡ଼ୁଥିଲା ଚେରମୂଳ ଗଛପତ୍ର, ଆଖିବୁଜି ସେ ମାଟି ସାଙ୍ଗରେ ମିଶିଗଲା ।

ଶୁକ୍ରୁ ଜାନି ଆଖି ବୁଜି ଅନ୍ଧାର ଭିତରେ ଏଇ କଥା ଦେଖୁଥାଏ, ଆଉ, ଏଇ କଥା ଦେଖିବାକୁ ତାକୁ ଭଲ ଲାଗେ । ତେଣୁ ସେ ବେଶି ସମୟ ଆଖି ଫିଟାଏ ନାହିଁ । କୁକୁର ଡାକିଲେ ଶୁଣେ, ବେଳେ ବେଳେ ଶୀକାରକୁ ଯାଏ । ଯେଉଁ ଦିନ ଶୁକ୍ରୁ ଜାନିକୁ ତା ଜାତିର ଦୁଇ ଚାରିଟା ଲୋକ ବନବୃକ୍ଷ ସେହି ବରଗଛ ମୂଳେ ଖଟିଆରେ ଆଣି ଶୁଆଇଦେଲେ, କୁକୁରଟି ବି ସାଥିରେ ଥିଲା । ସବୁବେଳେ ଆଖି ବୁଜି ସ୍ୱପ୍ନ ଦେଖିବାରେ ଆଖିରେ ତାର ପରଳ ପଡ଼ିଯାଇଥିଲା । ଖଟିଆରେ ଶୋଇ ସେହିପରି ସେ ଆଖି ବୁଜି କୁକୁରଟିକୁ ଆଉଁଷି ଆଉଁଷି କହିବାର ଶୁଣାଗଲା—ଆଖିର ଏ ପାଖରେ ମୁଁ ଆଉ ରହିବି ନାହିଁ । ମତେ ନେଇଯାଅ ସେ ପାଖକୁ । ଆଖିର ସେପାଖେ ଅନେକ କଥା ଅଛି । ବିରାଟ ଜଙ୍ଗଲ ଅଛି, ଦୁର୍ଭେଦ୍ୟ ପର୍ବତ ଅଛି, ଅଗଣିତ ଜୀବ ଜନ୍ତୁ ଅଛନ୍ତି, ମୋ ପୁଅ ଶୀକାର କରୁଛି । ମୁଁ ତାକୁ ଦେଖି ସାବାସ୍ ଦେଉଛି; ମତେ ଏଠା ଭଲ ଲାଗୁନାହିଁ ।

ଠିକ୍ ସେତିକି ବେଳେ ଦମକାଏ ପବନ ବରଗଛର ସବୁଡାଳ, ସବୁପତ୍ରକୁ ହଲାଇଦେଲା, ସୁ ସୁ ଶବ୍ଦ ଶୁଭିଲା, କୁକୁର ଭୁକିଉଠିଲା । ସେତିକିବେଳେ ଡାକ୍ତରଖାନାର ଦୁଇଟା ଲୋକ ଶୁକ୍ରୁ ଜାନିକୁ ଘର ଭିତରକୁ ନେଲେ ତାର ଆଖି ଅପରେସନ୍ ପାଇଁ ।

ଶୁକ୍ରୁ ଜାନି ଆଉ ଆଖି ଫିଟାଇଛି କି ନାହିଁ ଜଣା ନାହିଁ; କିନ୍ତୁ ତାର କୁକୁରଟି ଏବେ କଳାହାଣ୍ଡି ଜଙ୍ଗଲର ଦୂରଦୂର ଘର ବସ୍ତି କନ୍ଧ ପଲ୍ଲୀରେ ବୁଲୁଥିବା ଦେଖାଯାଏ ।

# ଚୌର କିଏ ?

ଜେଲଖାନାର ସେଇ କୋଠରୀଟାରେ କେତେ କାଳରୁ ଚୂନ ଧଉଳା ହୋଇନାହିଁ । କଡ଼ିକ କଡ଼ି ଧରି ଗୋଟିଏ ବୁଢ଼ିଆଣୀ ତାହାରି ଉପରେ ଘର ବାନ୍ଧିଛି । ସେ କେତେ ଦିନୁ ସେଠାରେ ତାର ସଂସାର ପାତିଛି ସୁକୁର ଜାଣେ ନାହିଁ । ସେହି ବୁଢ଼ୀଆଣୀ ଘର ସୁକୁରର ସେଇ କୋଠରୀ ଭିତରେ ଏଇ କେତେ ଦିନ ହେଲା ତା ପକ୍ଷରେ ଏକ ଦର୍ଶନୀୟ ଜିନିଷ ହୋଇପଡ଼ିଛି । ଆଖିକି ନିଦ ନ ଆସିଲେ ସେ ଛଟପଟ ହୋଇ ଚିତ୍ ହୋଇ ପଡ଼ିଯାଏ । ଉପରକୁ ମୁହଁ ଉଠେଇଲେ ସେଇ ବୁଢ଼ିଆଣୀ ଘରଟାହିଁ ତା ଆଖିରେ ପଡ଼େ । ଦେଖେ, ଅତି ଶାନ୍ତ, ସାଧୁ ପରି ବୁଢ଼ିଆଣୀଟା କେତେବେଳେ ଜାଲର ମଝିରେ, କେତେବେଳେ ବା ଜାଲର ପରିଧିରେ ଯାଇ ସ୍ଥିର-ହୋଇ ରହିଛି । କୁଆଡ଼ୁ ଉଡ଼ି ଉଡ଼ି ଆସି ଗୋଟାଏ ମାଛି ସେଇ ଜାଲ ଦେହରେ ଲାଗିଗଲେ ସତେ ଯେପରି ତାର ନିଦ ଭାଙ୍ଗେ ! ସେ ଅତି ଧୀରେ ଧୀରେ ନିଦରୁ ଉଠିଲା ପରି ଟିକିଏ ହଲଚଲ ହୁଏ । ତା ପରେ ଚୌରଙ୍କ ପରି ସେଇ ଆଡ଼କୁ ଗତି କରେ । ଏପରି ଭାବରେ ଯାଇ ତାକୁ ଆକ୍ରମଣ କରେ ଯେ ମାଛିଟା ଆଉ ତା ହାବୁଡ଼ରୁ ଖସିଯିବାର ବାଟ ପାଏ ନାହିଁ । ତରତର ହୋଇ ନିଜ ଦେହରୁ ସୂତା କାଢ଼ି ତାକୁ ଗୁଡ଼ାଇ ବାନ୍ଧିପକାଏ । ଶିକାରଟା କିଛି ସମୟ ଛଟପଟ ହୋଇ ତା ପରେ ମଲାପରି ରହିଯାଏ ।

ଏଇ ଦୃଶ୍ୟ ଦେଖିବାକୁ ସୁକୁରକୁ ଏଇ କେତେ ଦିନ ହେଲା ଖୁବ୍ ଭଲ ଲାଗୁଚି । ଏ ଦୃଶ୍ୟ ଦେଖିଲାବେଳେ କସ୍ୱପୃଷ୍ଠର ଘୋର ଜଙ୍ଗଲ ଭଥା

ତା'ର ମନେପଡ଼ୁଛି । ସେ ସିନା ଏଇ ଦେଢ଼ ବର୍ଷ ହେଲା ପଥରବନ୍ଦର ଜେଲଟା ଭିତରେ ଆବଦ୍ଧ ଅଛି, ତା ଆଗରୁ ଘରଟା ଥିଲା ତାର ସେଇ ଜଙ୍ଗଲରେ ! ସୁକୁରର ଜଙ୍ଗଲ ଅତି ଭୀଷଣ ଜଙ୍ଗଲ । ସେଠି ପଡ଼ନ୍ତଟାଏ ପଡ଼ିଲେ ପଥରଟାଏ, କାଠିଟାଏ ପଡ଼ିଲେ ଡିଙ୍କିଟାଏ ! ଉପରକୁ ଚାହିଁଲେ ଆଖି ପାଇବ ନାହିଁ । କେତେ ଉଚ୍ଚକୁ ଡାଳପତ୍ର ଗୁଡ଼ାକ ଉଠିଛନ୍ତି ! ସେହି ଡାଳପତ୍ର ଉପରେ ଆକାଶ । ତଳେ ଠିଆହେଲେ ଆକାଶର ଚନ୍ଦ୍ର, ସୂର୍ଯ୍ୟ, ତାରା ଦେଖାଯାନ୍ତି ନାହିଁ । ଖୁବ୍ ମଧ୍ୟ ଆକାଶରେ ସେମାନେ ଥିଲାବେଳେ ତଳେ ଚନ୍ଦ୍ରକିରଣ ବା ସୂର୍ଯ୍ୟକିରଣ ପଡ଼େ ।

ସୁକୁରର ବାପ ମା କରମ୍ପୁଟର ସେହି ଘନ ଜଙ୍ଗଲ ଭିତରେ କେବଠାରୁ ଥିଲେ ସୁକୁର ବ ଜାଣେ ନାହିଁ । ସେମାନେ ତା ପାଇଁ ସେପରି କିଛି ଘର ଦୁଆର ତିଆରିକରି ଯାଇ ନଥିଲେ । ଦି' ଚାରିଟା ବଡ଼ ବଡ଼ ଖୁଣ୍ଟ ଉପରେ ବଣର ଡାଳପତ୍ରକୁ ବଛେଇ ସେମାନେ ଯେଉଁ ଘର କରିଥିଲେ ସୁକୁରର ବୁଦ୍ଧି ହେଲାବେଳକୁ ସେ ସବୁ କୁଆଡ଼େ ମାଟିରେ ମିଶିଯାଇଥିଲା । ସୁକୁରା ତେଣୁ ସେ ଘର ଛାଡ଼ି ଯାଇ ଆଉ ଠାଏ ନୂଆ ଘର କଲା ।

ସୁକୁରା ନିଜ ପାଇଁ ଗୋଟାଏ ନୂଆ ଘର କରିବା ହଠାତ୍ ଜରୁରି ଦରକାର ପଡ଼ିଲା । ବୟସ ହେଲା କୋଡ଼ିଏ ବାଇଶି । ବାପ ମା ଚାଲିଗଲା ପରେ ତାର ନିଜର ହୋଇ କେହି ନଥିଲେ । ହଠାତ୍ ଦିନେ ନିଜର ଲୋକ ଜଣେ ତାକୁ ମିଳିଲା । ଉଭୟେ ଯାଇଥିଲେ ଚେରେଙ୍ଗା ଖୋଳି, ଉଭୟେ ଚେରେଙ୍ଗା ଖୋଳୁ ଖୋଳୁ ଗୀତ ବୋଇଲେ । ସେଇ ଗୀତରୁ ଅର୍ଥ ବାହାରିଲା ଯେ ଦିହେଁ ଏକାଠି କୁଡ଼ିଆ କରି ରହିବେ, ଅର୍ଥାତ୍, ବାହା ହେବେ । ତେଣୁ ସୁକୁର କରମ୍ପୁଟର ସେହି ଜଙ୍ଗଲ ଭିତରେ ଗୋଟିଏ ଘର ତିଆରିକଲା । ତାର ଘର ପାଖକୁ ଲାଗି ତା ଜାତିଭାଇଙ୍କର ଆଉ ଦି'ଚାରିଟା ଘର । ସେ ସବୁକୁ ମିଶେଇ ସେମାନେ ତାର ନାଁ ଦେଇଥିଲେ 'ଡୋଙ୍ଗରପେଟା' । ଆମେ ଯାହାକୁ ଉପକୂଳ ଅଞ୍ଚଳରେ ଗାଁ ବୋଲି ବୁଝେ—ଦୁଇ ସାଇ, ମଝିରେ ଦାଣ୍ଡ, ଗାଁ ମୁଣ୍ଡେ କୂଅ ବା ପୋଖରୀ, ସେ ସବୁ ସେଠାରେ କିଛି ନ ଥିଲା । ଯୁଗ ଯୁଗାନ୍ତର ଧରି ଧାନରତ ଦୁଇ

ଗୁଡ଼ାଏ ପର୍ବତର ସନ୍ଧି ଭିତରେ ତାଙ୍କର ସେଇ ଗାଁ । କେଉଁ ଘରକୁ କେଉଁ ଘରର ସମ୍ପର୍କ ନାହିଁ; ମାତ୍ର ସବୁ ଘରୁ ମଣିଷ ଗୁଡ଼ିକର ଗୋଟାଏ ବାଟ ଚାଲିଛି ଏକ ଝରଣା କୂଳକୁ । ତାହା ସେମାନଙ୍କର କୂଅ ପୋଖରୀ ସବୁ । ତାହାର ନିକଟରୁ ଗୋଟାଏ ରାସ୍ତା ଯାଇଛି । କେତେ ବାଟ ସେ ରାସ୍ତା ଯାଇଛି, କେଉଁଠୁ ଆସି ସେ ରାସ୍ତା କେଉଁଠି କାହାକୁ ଭେଟିଛି ସୁକୁଟ କିଛି ଜାଣେନା । ଫଳ ଦିନେ ଫଳ, ଶୀତଦିନେ ଝରଣା କୂଳର ଟିକିଏ ସମ-ତଳିଆ ଜାଗାରୁ ସୁଆଁ, କାଙ୍ଗୁ ସଂଗ୍ରହ କରି ସେମାନେ ଚଳନ୍ତି । ପରିଧାନ ଭିତରେ ଗୋଟାଏ କଉପୁନି, ଆଉ ତା ସ୍ତ୍ରୀର ଅଣ୍ଟାଠାରୁ ଆଣ୍ଠୁ ଯାଏଁ ଆବରଣ କଲାପରି ଖଣ୍ଡେ ଖଦି । ବର୍ଷକରେ ସେହି ଖଣ୍ଡେ ଦୁଇ ଖଣ୍ଡ ପରିଧାନ ଭିତରେ ସେମାନଙ୍କର ସବୁ ଅଭାବ ମେଣ୍ଟି ଯାଉଥାଏ । ଶୀତ-ଦିନେ ଶୀତରୁ ରକ୍ଷା ପାଇବା ପାଇଁ ବଡ଼ ବଡ଼ କାଠର ଗଣ୍ଡି ଦୁଆର ମୁହଁରେ ନିଆଁ ଲାଗି ରହିଥାଏ । ଏଇ ହେଲା ସେମାନଙ୍କର ସଂସାର ।

ଦିନେ ସେଇ ରାସ୍ତା ଦେଇ ଦଳେ ଲୋକ ଆସି ପହଞ୍ଚିଲେ । ସେମାନଙ୍କର ପରିଚୟ ନେଲେ, ସେମାନେ ଦୁଃଖରେ ଅଛନ୍ତି ବୋଲି ବୁଝେଇଲେ । ସେମାନେ ଯେଉଁଠି ଅଛନ୍ତି ସେଠାରୁ ଆଉରି ଦୂରରେ ଶହ ଶହ କୋଶ ଦୂରରେ ସେମାନଙ୍କପାଇଁ ଲୋକେ ଚିନ୍ତା କରୁଛନ୍ତି ବୋଲି ଆଶ୍ୱାସନା ଦେଲେ । କହିଲେ—ତୁମେ ଏ ଯେତେ ଜାଗା ଆଗରେ ଦେଖୁଛ ସବୁ ତୁମର । ଜଙ୍ଗଲ କାଟି ତୁମେ ଫସଲ ଫଳାଅ, କାଠ ଆଣି ଘର କର, ଲୁଗାପଟା ଦେଉଛୁ ପିନ୍ଧ, ବଣର ପଶୁଙ୍କଠାରୁ ତୁମେ ଯେ ଅଲଗା, ତୁମେ ଯେ ମଣିଷ, ଏ କଥା ଶିଖ ।

ଏହି ଲୋକ ଦଳକ ଥରେ ନୁହେଁ ଦୁଇ ଥର ନୁହେଁ, ମାସକେ ପାଞ୍ଚ ଦଶ ଥର ସୁକୁଟର ସେଇ ଝରଣାକୂଳିଆ ଗାଁକୁ ଆସିଲେ । ସେମାନେ ଆସିବା ବାଟ ରାସ୍ତା ଆହୁରି ଓସାର ହୋଇଗଲା । ସେମାନେ କହିବାହାରୁ ପୋଡ଼ା ମାଟିରେ ସୁଆଁ, କାଙ୍ଗୁ, ମାଣ୍ଡିଆ ଫଳିଲା । ଦେଖୁ ଦେଖୁ ସେଇମାନଙ୍କ ଘର ପାଖରେ ଆଉ ଗୋଟାଏ ଘର ତିଆରି ହେଲା ଯେଉଁଠିକି ସେଇମାନେ ଆସି ରହିବେ । ସେମାନଙ୍କ ସାଙ୍ଗରେ ଆସିଲେ ଗାଈ ବଳଦ, ଛେଳି କୁକୁଡ଼ା । ସେମାନେ ପ୍ରଚାର କଲେ ସାମ୍ୟବାଦ, କହିଲେ—ଆମେ ଯିଏ ତମେ ସିଏ । କିନ୍ତୁ ଦେଖୁ ଦେଖୁ ସୁକୁଟର ସେହି କୁଡ଼ିଆ ଘର

ସଙ୍କୁଚିତ ହୋଇଆସିଲା । ସେମାନେ ମୁଣ୍ଡଖାଳ ଭୁଣ୍ଡରେ ଦେଇ, ଖରା ବର୍ଷା କାକର ସହି ଜଙ୍ଗଲ ସଫାକରି ଯାହା ଆଦାୟ କଲେ ତାହା ଜମା ହେଲା ସେଇ ନୂଆ ଘରେ । ସେମାନେ ଜଙ୍ଗଲରେ ପଶି ହାତୀର ଦାନ୍ତ, ମିରିଗର ଶିଂଘ ଆଣି ସେଇଠି ମଜୁଦ୍ର ଦେଲେ । କରାପୁଟର ସେଇ ଅନୁର୍ବା-ମାନ ଅଞ୍ଚଳରେ ମା ବସୁନ୍ଧରା ଯେତେ ଫଳ ଫଳେଇଲା ତାହା ଗଲା ସେଇ ଘରକୁ । ସୁକୁରା ଓ ତାର ଜାତି ଭାଇମାନେ ହନେ ଦେଖିଲେ ସେମାନଙ୍କ ସ୍ୱାଧୀନତାରେ ବାଧା ପଡ଼ୁଛି । ସେମାନେ ଯାହା ଆଣୁଛନ୍ତି ସବୁ ଦେଉଚନ୍ତି ସେଇଠି । ସୁକୁରାର ମନ ବିଦ୍ରୋହୀ ହୋଇ ଉଠିଲା । ନବାଗତ ସେଇ ବଣର ଅତିଥିମାନଙ୍କୁ ସେ ସନ୍ଦେହ ଦୃଷ୍ଟିରେ ଦେଖିଲା । ଭାବିଲା, ମୁଁ ଆଗେ କାମ ନକରି ଯିମିତି ଚଳୁଥିଲି ଏବେ କାମ କରି ସିମିତି ଚଳୁଚି । ଏତିକି ଅଧିକା ହୋଇଚି ଯେ ନୂଆ ଲୋକଙ୍କୁ ଦେଖୁଚି, ଆଉ ବେଶି ଆଦାୟ କରି ସେହିମାନଙ୍କୁ ଦେଇପାରୁଚି । ଆଉ ଅଧିକା ଶୁଣୁଚି କଥା—ସେ କୌଣସି ଜିନିଷ ନିଜର ବୋଲି ନିଜର କୁଡ଼ିଆ ଭିତରକୁ ନେଇପାରିବ ନାହିଁ । ସାରା ଜୀବନ ସେ ଦେଖି ଆସିଚି, ବଣ କେବେ ତାକୁ ମନାକରି ନାହିଁ ସଂଗ୍ରହ କରିଥିବା କୌଣସି ଜିନିଷ ଘରକୁ ନେବା ପାଇଁ । ତାର ଏ ବିଦ୍ରୋହ ମନ ହନେ ଅଥୟ ହେଲା । ତାହାର ଫଳରେ ତାକୁ ନେଇ ସେଠୁ ବିଶ କୋଶ ଦୂରରେ ଥିବା ଏକ ପୁଲିସି ଥାନାରେ ଠିଆକରେଇଦିଆଗଲା । ତାର ବିଚାର ହେଲା—ସେ ଚୋରି କରିଚି, ଖାଇ ଖାଇବା ଜିନିଷ ଚୋରି କରିଛି । ବିଚାରରେ ଦେଉ ବର୍ଷ ଜେଲ ।

ଜେଲଖାନାର ସେଇ କୋଠରୀଟା ଭିତରେ ଛଟପଟ ହୋଇ ସୁକୁରା ଯେତେବେଳେ ବୁଢ଼ୀଆଣୀଟାକୁ ଚାହୁଁଥିଲା ତାର ଏଇ କଥା ମନେ ପଡୁଥାଏ, ଏପରି ସମୟରେ ତାର ସଙ୍ଗୀ ମାଗା କହିଲା — କରେ, ଏକ ଲୟରେ ଉପରକୁ କାହିଁକି ଚାହିଁଚୁ ? ସୁକୁରା କହିଲା—ଭାବୁଚି, ମୁଁ ଚୋର ନା, ଏ ବୁଢ଼ୀଆଣୀଟା ଚୋର ? ଏ ବୁଢ଼ୀଆଣୀଟା ଆପଣାର ଜାଲ ପାତି ବସିଚି, ଆଉ, ମାଛି ଉଡ଼ି ଆସି ତା ବାଟରେ ଗଲାବେଳେ ତାକୁ ଧରି ମାରିଦେଉଚି ଠିକ୍ ଯେପରି କରାପୁଟ ଜଙ୍ଗଲ ଭିତରେ ସେମାନେ କରୁଥିଲେ ।

ସେମାନେ କିଏ ରେ ?

ସେମାନେ ବାବୁ !

କସ୍ତୁରି ଜଙ୍ଗଲ ଭିତରେ ବାବୁ ଆସିଲେ କୁଆଡ଼ୁ ?

ଆସିଲେ ରେ ଆସିଲେ । ବର୍ଷେ ହେଲା ଆସିଲେ । ଆମ ଗାଁ ପାଖକୁ ଆସିଲେ । ଆମର ଝରଣା କୂଳକୁ ଆସିଲେ । ଗୋଟିଏ ଜାଲ ପାତିଲେ ଠିକ୍ ଯେମିତି ବୁଢ଼ୀଆଣୀ ଜାଲ ପାତେ । ଠିକ୍ ଏଇ ମାଛିପରି ମୋ ବାଟରେ ମୁଁ ଯାଉଥିଲି, ସେଇଠାରେ ଛନ୍ଦିହୋଇ ଏଠାକୁ ଆସିଛି ।

ମ ଗା କହିଲା—ତା ହେଲେ ତୁ ସେଇଠି ଚୋରି କରିଥିଲୁ ?

ମୁଁ କାହିଁ ଚୋରି କରିବି ? ଆମ୍ବ ଗଛରୁ ଆମ୍ବ ଆଣିଲେ, କାଙ୍କଡ଼ ଗଛରୁ କାଙ୍କଡ଼ ତୋଳିଲେ, ଝରଣାରୁ ପାଣି ନେଲେ ଆମକୁ ତ କିଏ ମନା କରୁ ନ ଥିଲା ? ଯେଉଁଠି ଜିନିଷ ଥିଲା ସେଇଠୁ ମୁଁ ଆଣିଲି । ମୁଁ ଫଳେଇଥିଲି, ମୁଁ ବୋହିଥିଲି, ଆମ ଜିନିଷ ଆମେ ନେଲୁ । ସେଥିପାଇଁ ମୁଁ ଏ ଭିତରକୁ କିଆଁ ଆସନ୍ତି ?

ଏତିକି ବେଳେ ଠଣ ଠଣ ହୋଇ ଘଣ୍ଟା ବାଜିଲା । ମାଗା କହିଲା—ଗୁଣ୍ଡେ ତୋର ସେଇ ବଣୁଆ କଥା । ମୁଁ ବି ମଣିଷଟାଏ ମାରିଥିଲି ଏଇଥି ପାଇଁ । ମାରିଥିଲି ମୋତେ କିଛି ମିଳିଲା ନାହିଁ ବୋଲି । ତାକୁ କିନ୍ତୁ ମାରିବା ପାଇଁ ମାରି ନଥିଲି । ମୁଁ ମାଗିଲି, ଦେଲା ନାହିଁ । ପେଟ କହିଲା ତୁ ନ ଆଣିଲେ ମରିଯିବୁ । ତେଣୁ ଆଣିବାକୁ ଭିଡ଼ିଲି, ସେ ମୋତେ ଭିଡ଼ିଲା, ମୋ ତୋଣ୍ଟିରେ ହାତ ପକାଇଦେଲା, କହିଲା—ଡକେଇତ, ଡକେଇତ ! ଅଣ୍ଟାରେ ଛୁରୀ ଖୋସିଥିଲି । ସେ ଛୁରୀଟାକୁ ମୁଠାରେ ଧରି ତା ଗଳାରେ ଲଗାଇଦେଲି । ତା ପରେ ମୁଁ ଏଠାକୁ ଆସିଛି । ହଉ ଚା, ବେଳ ହେଲାଣି । ମୁଁ ଧରୁଛି ତେଲ ଟିଣକ, ତୁ ଧରେ ଏଇ ପନପରିବାତକ ।

ସୁକୁରା କହିଲା—ହଇ, ଚୋରି କିଏ ସେଇ କଥା ମୁଁ ଭାବୁଛି । କାହାକୁ କିଏ ମାରୁଛି ସେଇ କଥା ମୁଁ ବିଚାରୁଛି । କାଲି ଜେଲ ବଗିଚାର ବଡ଼ ସାହେବଙ୍କ ଝିଅର ବାହାଘର । ଗୁରୁ ଦିନ ତଳୁ ଆମେ ଜିନିଷ ବୋହି ଗଲିଚେ । ଆମେ ଚୋରି ନା ଏ ଚୋରି ?

# ଶୋକସଭା

ଗାଁ ଠାରୁ ଅଳ୍ପ ଦୂରରେ ଏକ ତୋଟା । ତୋଟା ଭିତରେ ଏକ ବିରାଟ ବରଗଛ । ଦେଖିବାକୁ ଗଲେ ବରଗଛଟା ତୋଟାର ବାରପଣ ସ୍ଥାନ ଅଧିକାର କରିଛି । ଗାଁ ଆଗ ବସିଛି କି ବରଗଛ ଆଗ ଉଠିଛି ସେ କଥା କହିବାକୁ ସେ ଗାଁରେ କେହି ନାହାନ୍ତି ।

ଗାଁ ? ସେ ଗାଁର ନାଁ ଜାଣିବା କିଛି ଦରକାର ନାହିଁ । ଓଡ଼ିଶାର ଇତିହାସ ପୃଷ୍ଠାରେ ସେ ଗାଁର ନାଁ ନାହିଁ, ନାଁ ସେ କେବେ ସ୍ଥାନ ପାଇବ ସେ କଥା ଭବିଷ୍ୟତ ଗର୍ଭରେ । ଚିଲିକାର କୂଳେ କୂଳେ ଯାଇଥିବା ମାନ୍ଦ୍ରାଜ-ସଡ଼କ ଠାରୁ ପଶ୍ଚିମକୁ ତିରିଶି ମାଇଲ ଦୂର ଗଲେ ଏଇ ଗଳ୍ପବର୍ଣ୍ଣିତ ଗାଁ ।

ଗାଁଟି ଶ୍ରେଷ୍ଠ । ଗାଁ ସିନା ଶ୍ରେଷ୍ଠ; ମାତ୍ର ଏଇ ଗାଁର ଶ୍ରେଷ୍ଠ ଲୋକଙ୍କ ହାତ ଟାଟା, କଲିକତା, ରେଙ୍ଗୁନର କେତେ ପକାଘର ଛାଆତରେ ଲାଗିଛି ତାର ଠିକଣା ନାହିଁ । ଏଇ ଶ୍ରେଷ୍ଠ ଲୋକଙ୍କ ହାତରେ ତିଆରି ଖଟ, ପଲଙ୍କ, ମେଜ, ଚଉକିରେ କେତେ ବଡ଼ ଲୋକଙ୍କ କାରବାର ହୁଏ ତାର ହିସାବ ନାହିଁ । କୁଲି ରୂପେ, ମଜୁରିଆ ରୂପେ ଓଡ଼ିଶାର ଏଇ ଶ୍ରେଷ୍ଠ ଗାଁଟିର ଲୋକେ ଭାରତର ବଡ଼ ବଡ଼ ସହରରେ ପରିଚିତ ।

ଛାଡ଼ ସେ କଥା । କେବଳ ସେଇ ଶ୍ରେଷ୍ଠ ଗାଁ, ଗାଁର ସେଇ ତୋଟା, ତୋଟା ଭିତରେ ବରଗଛ ତଳେ ମଶାଣି ସହିତ ଏ ଗଳ୍ପର ସମ୍ପର୍କ । ଗାଁ ଓ ମଶାଣିର ବ୍ୟବଧାନ ଭିତରେ ବେଶି କିଛି ତଫାତ୍ ନାହିଁ । ଗାଁ

ବସ୍ତୁ ବସ୍ତୁ ମଶାଣି ସୃଷ୍ଟି ହୋଇଥିବ । ହୁଏ ତ ବସିଲା ବନ ହୋଇ ଥାଇପାରେ । ତେଣୁ ଏଠାରେ ଗାଁ କଥା ନ କହି ମଶାଣି କଥା କହିଲେ ଗାଁ କଥାଟା ବି ବେଶ୍ ବୁଝିହେବ ।

ମଶାଣି—ଆଗେ ସେ ମଶାଣିରେ ଲୋକେ ପୋଡ଼ାଯାଉଥିଲେ । ନିଆଁ ଜଳୁଥିଲା, ଦରପୋଡ଼ା ହାଡ଼, ମୁଣ୍ଡ ଗୁଡ଼ପଟେ ବିଛେଇହୋଇ ପଡ଼ିଥିଲା । ରଇ ଲିଭିଗଲେ ପାଉଁଶ ଅଙ୍ଗାର ଜମା ହେଉଥିଲା । ମାତ୍ର ଏବେ ଏଇ ଗଳ୍ପବର୍ଣ୍ଣିତ ଘଟଣା ସମୟରେ ମଶାଣିର ନିଆଁ ଲିଭି-ଯାଇଛି । ନିଆଁ ଲିଭିଛି ସତ; ମାତ୍ର ମଶାଣିଟା ମଶାଣିଠାରୁ ଭୟଙ୍କର ହୋଇଛି । ଆଗେ ଶବବାହୀ ମଣିଷର ସ୍ୱର ସେ ଭୂଇଁ ପାଖରେ ବେଳେ ବେଳେ ଶୁଣାଯାଉଥିଲା, ଏବେ ଶୁଣାଯାଉଛି ଶାଗୁଣା, ଶୃଗାଳ, କୁକୁରର ସ୍ୱର । ଏ ସ୍ୱର ଦିନରେ ତ ଶୁଭୁଛି, ରାତିରେ ମଧ୍ୟ ଶୁଭୁଛି । ନିଆଁ ଜଳୁ ନାହିଁ ସତ; ମାତ୍ର ଯେଉଁଥିପାଇଁ ନିଆଁ ଜଳେ ତାହା ଆସି ସେଠାରେ ପଡ଼ୁଛି । ଗୋଟା ଗୋଟା ନୁହେ, ଗଣ୍ଡା ଗଣ୍ଡା ଶବ ଗୁଡ଼ଆଡ଼େ ଫିଙ୍ଗା ଯାଉଚନ୍ତି । କି ବିକଟ ବିକଳାଙ୍ଗ ଦୃଶ୍ୟ ! ନିଆଁ ଜାଳି ଯେଉଁ ବିଭୀଷିକାକୁ ମୁହୂର୍ତ୍ତେ ଲୁଚାଇଦେଉଥିଲା ତାହା ଏବେ ନିଆଁ ଅଭାବରେ ଶତଗୁଣିତ ହୋଇ ପଡ଼ିଛି । ଗୋଟା ଗୋଟା ନରମୁଣ୍ଡ ନାନା ସ୍ଥାନରେ ଗଡ଼ୁଚି, ଖଣ୍ଡ ଖଣ୍ଡ ଅସ୍ଥି ଠା' ଠା' ପଡ଼ିଛି । ତାକୁ ନ ଦେଖିବାକୁ ଗତି ନାହିଁ, ଗୁହିଁବାକୁ ଧୈର୍ଯ୍ୟ ନାହିଁ ।

ଗାଁରେ ମୃତ୍ୟୁର ଏଇ ଜୟଯାତ୍ରା ସମୟରେ ଭଗୀ ବେହେରା ବରାବର ସେଇ ତୋଟା ଭିତରେ ଗାଈଗୋଠ ଜମାକରେ । ସେ ସମୟଟା ଗ୍ରୀଷ୍ମକାଳ । ତୋଟା ବାହାରେ ଦୂର ଦିଗ୍‌ବଳୟ ସୀମା ଧରି ବୈଶାଖ ମାସର ଖରା ଉପରୁ କେବଳ ନିଆଁ ବର୍ଷୁଥାଏ । ଗାଈ ଗୋରୁ ଗଛ ଛାଇ ତଳେ ଘୁମାଉଥାନ୍ତି । ନିଦାଘ-କାତର କପୋତ ବେଳେ ବେଳେ ଗୁମୁରି ଉଠି ଆଖ ପାଖ ପୃଥିବୀକୁ କମ୍ପାଇ ଡାକ ଦିଏ—"ଉଠୁରେ ପୁତା ଉଠୁ, ମାଣକ ପୂରିଲା ଉଠୁ ।" ତାର ଏଇ ଡାକରେ ଅନାଦିକାଳରୁ ତାର ପୁତା ତ ଉଠି ନାହିଁ, ବରଗଛ ତଳ ମଶାଣି ପଡ଼ିଆରୁ କାହାର ପୁତା ମଧ୍ୟ ଉଠି ନାହାନ୍ତି । ତଳେ ଗାଈ ଗୋଠ ଭିତରେ ଶୋଇଥାଏ ଭଗୀ

ବୈଦେହୀ; ସେଇ କେବଳ ଉଠେ, ଉଠି ବୁଲିଆଡ଼କୁ ଚାହେଁ ତାର ଗାଈ-ଗୋରୁ ଠିକ୍ ସ୍ଥାନରେ ଅଛନ୍ତି କି ନାହିଁ ।

ଭଗିଆ ଶୋଇଥାଏ ତାର ବଡ଼ ବଡ଼ ଦୁଇଟା ଖଡ଼ମକୁ ତକିଆ-କରି ତଳେ ଖାଲି ଦେହଟାରେ । ତାର ଆଗରେ ଦିନକୁ ଗୋଟେ ଦି' ଟା ଶବ ମଶାଣି ଭୂଇଁରେ ଶୁଅନ୍ତି; ତାର ମୁଣ୍ଡ ଉପରେ କୁଆ ଶାଗୁଣା ଉଡ଼ିବୁଲନ୍ତି । ତାର ଏ ପାଖେ ସେପାଖେ ବିଲୁଆ କୁକୁର ଖଣ୍ଡେ ଅଧେ ଦରଶୁଖିଲା ହାଡ଼ ଧରି କଳି କଜିଆ ଲଗାଇଥାନ୍ତି । ସେତିକିବେଳେ ଯେବେ ଗାଈ ଗୋରୁଗୁଡ଼ାକ ଚମକି ଉଠି ଠିଆହୁଅନ୍ତି ତାହା ହେଲେ ଭଗିଆ ସେମିତି ଶୋଇ ରହି ପାଟିକରି କହେ—ହେ କପିଳା, ହେ କଇଁଫୁଲୀ, ଫେରିଆ ଲୋ ପାଟ, ଶୋଇପଡ଼ ଲୋ ଲଣ୍ଡି—ସତେ ଯେପରି ମୂକ ଗାଈ ଗୋରୁଗୁଡ଼ାକ ସହିତ ସେ କଥାବାର୍ତ୍ତା ହେଉଛି ! ତା ପାଟି ଶୁଣି ଗାଈଗୋରୁ ବି ହଲଚଲ ହୁଅନ୍ତି ନାହିଁ । ଗୋଠରେ ଶାନ୍ତି ବିରାଜିତ କରେ ।

ଭଗୀ ବୈଦେହୀର ଗତ ପଇଁତିରିଶି ବର୍ଷର ଇତିହାସ କେବଳ ସେଇ ଗାଈଗୋଠ ଭିତରେ । ତାର ବାପ ଗୋସେଇଁ ବାପ ଏଇ କାମ କରିଯାଇଛନ୍ତି; ସେମାନଙ୍କର ଉପଯୁକ୍ତ ବଂଶଧର ରୂପେ ସେଇ ଶ୍ରେଷ୍ଠ ଗାଁଟିରେ ସେ ମଧ୍ୟ ପରିଚିତ ହୋଇପଡ଼ିଛି । ଗାଈଗୋଠ ତାର ସଂସାର କହିଲେ ଚଳେ । ସେ ଭିତରେ ସେଇ ବହୁତ ହସିଛି, ବହୁତ ଖେଳିଛି । ତାର ସାକ୍ଷୀ ଗୋଟିଏ ମୂକ ଜଗତ । ସେ ମୂକ ଭାଷା ଜାଣେ, ମୂକଙ୍କ ଚାହାଣୀରୁ ଭାଷା ବୁଝିପାରେ । ମୂକ ପଶୁ ଜଗତ ସହିତ ଚଳି ଭଗୀ ବୈଦେହୀ ହସିଥିଲା, ଖେଳିଥିଲା ସତ; ମାତ୍ର କେବେ କାନ୍ଦି ନଥିଲା । ହଠାତ୍ ଦିନେ ତାର କାନ୍ଦିବାବେଳ ଆସି ପହଞ୍ଚିଗଲା । ସେ କାନ୍ଦିଲା, ତାର ସାଙ୍ଗ ସାଥି କାନ୍ଦିଲେ, ସାରା ସଂସାର ବି କାନ୍ଦିଲା ।

୧୯୪୩ ସାଲ ଘଟଣା । ଗୃହିଣୀ ଶରଧା ଯେତେବେଳେ ଯୋଟଣା ଧରି ଗୋଠକୁ ଆସେ ଭଗୀ ବେହେରା ଆଗ ତା'ଠାରୁ ବୁଝିନିଏ କେଉଁ ସାଉକାର କେଉଁ ଦିନ ତା ଗୋଠରୁ କେଉଁ ଗାଈ ବଳଦକୁ ବିକିବା କଥା ଠିକ୍ କରିଛି । ଶରଧା କହିଯାଏ, ଆଉ, ସେ ଖାଲି ମରିବରେ ଶୁଣି ଗୋଟାଏ ଦୀର୍ଘଶ୍ୱାସ ଛାଡ଼ିଦିଏ । ଶୁଣେ – ରଘେ କହୁଥିଲେ ଆଠ ଦିନ ଭିତରେ କଇଁଫୁଲିଟିକି ନ ବିକିଲେ ଦି' ମାସ ପରେ ପାଣ ହାତେ ଦେବେ ବୋଲି ବହଣା ରଖିଛନ୍ତି । ଦି'ଫଳ କାଳୀ ଗାଈଟିକୁ ଦାସଘର ଧାନ ପନ୍ଦର ଗୌଣୀକୁ ଦେବେ ବୋଲି ଆଗଭୁରା ପାଞ୍ଚ ଗୌଣୀ ଧାନ ମକଦ୍ଦମ ଘରୁ ନେଇ ଆସିଲେଣି । କାଲି ସନ୍ଧ୍ୟାରେ ମୁଖୁରୀ ପଠାଣ ଆସି ଗାଁଯାକ ବୁଲି ସାତ ଆଠଟା ହଡ଼ାକୁ ବହଣା ଦେଇ ଯାଇଛି ବୋଲି ପରିଡ଼େ କହୁଥିଲେ – ଇତ୍ୟାଦି ନାନା ଖବର । ଭଗୀଆ ଏ ସବୁ କଥା ଶୁଣେ, ମୁଣ୍ଡରେ ହାତ ଦେଇ ଥକା ହୋଇ ବସିରହେ । କେତେ କଣ ଭାବେ । ଖାଇବା କଥା ସେ ଏକାବେଳକେ ପାଶୋରି ପକାଏ । ଶରଧା ତା ପିଠିକି ହାତ ମାରି କହେ—ଭାବୁଚ କଣ ? ଖାଇଲେ ଯିବ ପରା ଧାନ ପାଇଁ ? କାଲି ତ ତିନଖଣ୍ଡ ଗାଁ ବୁଲି ବୁଲି ଫେରିଲ । ଶୁଣୁଚ ଭାତ ଅଧ ଦେଖି-ନାହାକ ଘର ପାଞ୍ଚ ଅଡ଼ାଦରରେ ବିକୁଚନ୍ତି । ସେଠୁ ହେଲେ ଟଙ୍କାକର ଆଣିଲେ ଚଳିବ । ଭାତ ଅଧ, ଦି' କୋଶ ବାଟ, ଯିବ ଆସିବ, ମୁଁ କରିବି କଣ ? ଓହୋ, କ କାଳ ହୋଇଗଲା !

ଶରଧା ସ୍ୱାମୀକୁ ଜାଗ୍ରତ କରିବାକୁ ଯାଇ ନିଜେ ସେଇପରି ଗୋଟାଏ ଚିନ୍ତାରେ ମୁଣ୍ଡ ପୋତି ବସେ । ତା ମୁହଁରେ ବିଷାଦର ଛାୟା ଦେଖି ଭଗୀଆ କହେ—ତମେ ଏପରି ହେଲେ ଚଳିବ ? ମୁଁ କାଲି ଯିବି, ଗାଁ ଲୋକଙ୍କୁ ବୁଝେଇବି ଗାଈଗୋରୁ ନ ବିକିବାକୁ । ଶରଧାର ଏ କଥା ଶୁଣି ସେ କହେ—ତୁମେ କଣ ଏ ଗାଈଗୋରୁଙ୍କ ଛଡ଼ା ଆଉ କିଛି ଭାବିବ ନାହିଁ ? ମୁଁ ତ କହୁଚି ଧାନ କେମିତି ପାଇବ, ତୁମେ କହୁଚ ଗାଈ ଗୋରୁ କିଣା ବିକା କଥା । ଶରଧାର ମୁହଁରୁ ଏପରି ଶୁଣି ଭଗୀଆ କିଛି ଉତ୍ତର ଦିଏ ନାହିଁ । ଗୁହାଳେ ଶୋଇଥିବା, ଠିଆ ହୋଇଥିବା ଗାଈଗୋରୁଙ୍କୁ ଟିକିଏ ଚାହିଁଦେଇ କଂସାରୁ ଛାଣି ଭାତ ଗୁଣ୍ଡା ତୁଣ୍ଡରେ ପୂରେଇଦିଏ, ତୋରାଣିତକ ଢକ ଢକ କରି ଏକା ନିଶ୍ୱାସକେ ପିଇ ଶେଷ କରିଦେଇ କହେ—ପ୍ରଭୁ ହେ !

ଶରଧା ଅଇଁଠା ବାସନ୍‌କୁ ପାଖ ଗାଡ଼ିଆରେ ଧୋଇଦେଇ ଧୀରେ ଧୀରେ ଗାଁ ଅଭିମୁଖରେ ଚାଲେ, ଆଉ ଭଗୀଆ ତାର ତିନ ସେରିଆ ଓଜନର ଖଡ଼ମ ଦୁଇଟାକୁ ଟାଙ୍ଗର ଭୂଇଁରେ ଠକ୍ ଠକ୍ ପିଟିଲା ପରି କରି ବାଡ଼ିଟାକୁ ଧରି ଗୋଠ ଭିତରେ ପଶେ । ସେତେବେଳେ ଭଗୀଆକୁ ଯେବେ ବାହାର ଲୋକ କିଏ ଦେଖନ୍ତା ତେବେ ଭାବନ୍ତା ସେ ଗୋଟାଏ ପାଗଳ । ସେ କଇଁଫୁଲୀର ବେକକୁ ଧରି ତା ମୁହଁ ଉପରକୁ ଝୁଲପଡ଼ି ପଚାରେ—ସତେ ତୁ ଚାଲିଯିବୁ ? ମତେ ଭୁଲିଯିବୁ ? ତୋ ସାଉକୁ ଖାଇବାକୁ ମିଳିଲା ନାଇଁ ବୋଲି ତତେ ବିକିଦେବେ ? ତତେ କାହିଁକି ବିକିବେ, ତାଙ୍କ ପୁଅକୁ କାହିଁକି ବିକିବେ ନାହିଁ ? କଇଁଫୁଲୀ ଭଗୀଆର କଥାକୁ ସତେ ଅବା ନିବିଷ୍ଟଭାବରେ ଶୁଣେ ! କାନଟାକୁ ସୁଦ୍ଧା ହଲାଇଦିଏ ନାହିଁ । ଭଗୀଆ ତା' ମୁହଁ ପାଖରୁ ମୁହଁ ଉଠାଇ ଆଣି ନିଜ ଆଖିରୁ ଲୁହ ପୋଛୁ ଆଖିରୁ ମଧ୍ୟ ଲୁହ ପୋଛିଦିଏ ।

ଖାଇ ସାରିଲା ପରେ ଗାଈଗୋଠ ଗାଁକୁ ଫେରିଲା ଯାଏଁ ଭଗୀଆ ବରାବର ଏହିପରି କରେ । ଏପରିଭାବରେ ସେ ମୂକ ପଶୁଗୁଡ଼ାକ ସହିତ କଥାବାର୍ତ୍ତା କରେ ଯେ ମନ ହୁଏ ସତେ ଯେପରି ସେ ତାର ପ୍ରଶ୍ନର ଉତ୍ତର ପାଉଛି । ଗୋଟାଏ ହଡ଼ାକୁ କୁଣ୍ଢାଇ କାନ୍ଦି କହେ – ବର୍ଷକୁ ମାଣ ମାଣ କରି କୋଡ଼ିଏ ମାଣର ମାଟି କୋଡ଼ିଏ ବର୍ଷ ଚାଷିଲୁ; ଏବେ ତତେ ମୁଖୁଆ, କଂସେଇ ନେବେ ରେ ଲଛମନ୍ ! ହଡ଼ା ଲଛମନ୍ ଭଗୀଆର ଟଣାଓଟରାରେ ହେଉ ବା ତାର ଭାଷା ବୁଝିକରି ହେଉ ମୁଣ୍ଡକୁ ଲାଉଁଦିଏ । ଭଗୀଆ ସେତିକରେ କାନ୍ଦିପକାଏ । କାହାକୁ ସେ ଆଉଁସିଦିଏ, କାହାକୁ କିଛି କହିପାରେ ନାହିଁ । କାହା ପାଖେ କେବଳ ଠିଆହୋଇ ଥୋଡ଼ି ତଳେ ଠେଙ୍ଗାଟାକୁ ଡିରିଦେଇ ଚାହିଁରହେ । ସେପରି ଠିଆହେଲାବେଳେ ଦୂରରୁ ଦିଶେ ସତେ ଯେପରି ତାହା ଏକ ସୁଦକ୍ଷ ଶିଳ୍ପୀ ହାତର ମୂର୍ତ୍ତି ! କାହାକୁ ସେ କୁଣ୍ଢାଇ ଧରି କହେ – ଆଉ କାଲିଠୁ ଆସିବୁ ନାଇଁ ଲୋ ଆସିବୁ ନାଇଁ । ଯିବୁ କଂସେଇଖାନାକୁ । କହିଲା ବେଳେ ତାର କଣ୍ଠ ରୋଧ ହୋଇଯାଏ । ଦିନେ ସେ ଗୋଟିଏ ବାଛୁରୀକ କୋଳରେ ଧରି ପିଲାକୁ କହିଲା ପରି କହୁଥିଲା । ଶୁଣିଥିଲା ତା ମାଆକୁ ସାଉକାର ବିକି ଦେଇଚି । କହିଲା—କାନ୍ଦ ନା ଲୋ ଗୁନ୍ଦି, କାନ୍ଦ ନା । ତୋର ମା ତତେ

ପାଳଚ, ଆଉ, ଏଇ ଗାଁର ଅନେକ ପିଲାଙ୍କୁ ପାଳଚ । ମଣିଷଗୁଡ଼ାକର କଣ ଭଲ ବୁଦ୍ଧି ଅଛି ?

ଭଗୀଆର ଏ କଥା ବେଳେ ବେଳେ ଗନ୍ତାଡୁଣୀ ଶରଧା ଜାଣେ, ଆଉ, ଜାଣନ୍ତି ଅବା ହାଙ୍କ ଖଣ୍ଡକ ପାଇଁ ମାଡ଼ଗୋଳ ଲଗୁଥିବା ଆକାଶଗୃଧ୍ର କୂଆ ଶାଗୁଣା, କମ୍ବା ଭୂମିଗୃଧ୍ର ବାଲୁଆ କୁକୁର — ଆଉ କିଏ ନୁହନ୍ତି ।

ଏଇ ଘଟଣାର ଦୁଇ ମାସ ପରେ ଖବରକାଗଜରେ ଦେଖାଗଲା ଓଡ଼ିଶା ସରକାରଙ୍କ ଇସ୍ତାହାର—ବିନା ଲାଇସେନ୍‌ସରେ କେହି ଗାଈଗୋରୁ ବାହାରକୁ ରପ୍ତାନି କରିପାରିବେ ନାହିଁ ଏବଂ ଓଡ଼ିଶାର ଏଇ କ୍ଷୁଦ୍ର ମଫସଲ ଗାଁର ଗାଈଗୋଠରେ ଦେଖାଗଲା—ଗୋଠ ନିତାନ୍ତ ପତଳା ହୋଇ ଦୁଇ ଶହରୁ ପଞ୍ଚସ୍ତରି ସଂଖ୍ୟାକୁ କମି ଆସିଚି ! ଏହା ସଙ୍ଗେ ସଙ୍ଗେ ଦେଖାଗଲା ସୁସ୍ଥ ସବଳ ଭଗୀ ବେହେରା ନରକଙ୍କାଳ ବେଶ ଧରି ଗୋଠ ଭିତରେ କେତେବେଳେ ବସି କରି ଲୁହ ପୋଛୁଚି, କେତେବେଳେ ବା ବୁଲି ବୁଲି ଗୁଣୁ ଗୁଣୁ ହୋଇ କାହା ଉଦ୍ଦେଶ୍ୟରେ କଣ କହୁଚି । ଖଡ଼ିମକୁ ସେ ଆଉ ଗୋଡ଼ରେ ବୋହିପାରୁ ନାହିଁ କି ବାଡ଼ିଟାକୁ ନିର୍ଦ୍ଦିଷ୍ଟରେ ବୁଲାଇପାରୁ ନାହିଁ । ଦେହଟାକୁ ବି ଚରି କନାରେ ଘୋଡ଼ାଇପାରୁ ନାହିଁ । ଶରଧା ପ୍ରତିଦିନ ପରି ମୁଣ୍ଡରେ ଘୋଟଣା ଧରି ଆସୁଚି ସତ; ମାତ୍ର ତାର ସମସ୍ତ ଠିକ୍ ରହୁନାହିଁ । ଯାହା ଅବା ସେ ଘୋଟଣା ବୋଲି ଆଣୁଚି ଭଗୀଆ ତାହା ଛୁଉଁନାହିଁ । ତାର କଂସା ତାଟିଆ ଭିତରେ କେତେବେଳେ ବା ଖାଲି ଅନାମନା ଶାଗ ସିଝା ମେଞ୍ଚାଏ ଥାଏ । କେଉଁ ଦିନ ବା କୁଣ୍ଡା, କଆକନ୍ଦା, ବରଫଳ, କଇଁନାଡ଼ ସିଝା ଥାଏ । ଶରଧା ଆଣେ, ଭଗୀଆ ଖାଇବସିଲେ ସେ କାନ୍ଦପକାଏ । ଯୌବନର ଯେଉଁ ମାଂସଳ ଦେହଟାକୁ ସେ ଆଉଁସିଥିଲା ତାହାର ଏକ ବିକୃତ ଛବିକୁ ସେ ଆଉଁସି ପକାଇ କାନ୍ଦି କାନ୍ଦି ହୋଇ କହେ—ପେଟ ପୋଡ଼ିଯିବାରୁ ତ ସମସ୍ତେ ଗାଈ ବଳଦ ବିକିଦେଲେ, ଆମେ କମିତି ଚଳିବା ?

ଭଗୀଆ ଏକଥା ଶୁଣି କେବଳ ଗାଈ ଗୋଠକୁ ବୁଲି ଚାହିଁ । ତାର କୋହ ଉଠେ । ଶରଧା ବି ତଳେ ହାତ ଭରା ଦେଇ, ଆଣ୍ଠୁ ଉପରେ ମୁଣ୍ଡଟା ରଖି ବସିରହେ । ଗଛ ସେପଟେ ଚିତ୍କାର ଶୁଣି ଭଗୀଆ ମୁହଁ ବୁଲାଇ ଦେଖେ କାହାର ଖଣ୍ଡେ ଛୋଟ ହାଡ଼ରେ ଲେଗିଥିବା ମାଂସ ପାଇଁ ଦୁଇ ଗୁଣ୍ଡା ଶାଗୁଣା ଶିଲୁଆ ବିବାଦ ଲଗାଇଛନ୍ତି ! ସେ ଶରଧା ଦେହରେ ହାତମାରି, ତାକୁ ମୋହ ନିଦ୍ରାରୁ ଉଠାଇ କହେ—ଯା, ମୁଁ ଗାଈ ନେଇ ଯାଉଚି ।

ଏଇପରି ଭାବରେ କେତେ ଦିନ ଚାଲିଲା ।

ଏହା ଭଗୀଆର ପୂର୍ବ ଜୀବନୀ ନୁହେ, ଲୋକଚକ୍ଷୁରେ ତାର ତୁଛ ଅବହେଳିତ ଜୀବନର କେତୋଟି ଘଟଣା ମାତ୍ର । ଏଠାରେ ଯାହା କୁହା-ଗଲା ତା ଠାରୁ ବେଶି ଅକୁହା ରହିଲା । ଭଗୀଆ ଧାଉଡ଼ ଭାବରେ ଆସି ଗଉଡ଼ ଭାବରେ ଚାଲିଗଲା । ସେ ବେକାର ଭାବରେ ଆସି ହାକିମ ଭାବରେ ସଂସାର ଛାଡ଼ ନାହିଁ କି ଦରିଦ୍ର ଭାବରେ ଆସି ବେପାରୀ ଭାବରେ ଯାଇ-ନାହିଁ । ସେ ଆସିଲାବେଳେ ତା ବାପ ମା, ତା ଗାଁ ଲୋକେ, ତା ବନ୍ଧୁ-ବାନ୍ଧବ ସମସ୍ତେ ଭାବିଥିଲେ ସେ ଗଉଡ଼ ହୋଇ ଆସିଚି, ଗଲାବେଳେ ବି ସାରା ସଂସାର ଦେଖିଲା ସେ ନିତାନ୍ତ ନିଷ୍ଠାପର ଗଉଡ଼ ରୂପରେ ଚାଲିଯାଇଚି ।

ଗାଈ ଗୋଠରେ ରହି, ଗାଁ ଗହଳରେ ଅନେକ ଗାଉଁଲି ଗୀତ ଭଗୀଆ ଯୋଡ଼ି ଶିଖିଥିଲା, କେତେ ଲୋକଙ୍କୁ ଶୁଣାଇଥିଲା; ମାତ୍ର ତାର ଏଇ କବିପଣିଆ ପାଇଁ ଓଡ଼ିଶାର ସାହିତ୍ୟ ସମାଜରେ ତା ଲାଗି ଶୋକସଭା ହେଲାନାହିଁ । ସେ ବୀର ପରି ବାଘ ସଙ୍ଗେ ଲଢ଼େଇକରି କେତେ ଗାଈ ଗୋରୁଙ୍କୁ ରକ୍ଷା କରିଥିଲା, ମାତ୍ର ସେହି ବୀରତ୍ୱ କାହାଣୀ କେହି ଟିପି ରଖିପାରିଲେ ନାହିଁ । ସମୟ ଅସମୟରେ କେତେ ରୋଗରେ କେତେ ଲୋକଙ୍କୁ ସେ କେତେ ଠୁଣୁଠୁଣୁକିଆ ଚେରମୂଳି ଦେଇ ଭଲ କରିଥିଲା, ଲୋକ ସେବା କରିଥିଲା, ମାତ୍ର ସେବକ ସମାଜରେ ତାର ନାଁ ରହିଲା ନାହିଁ । ଦେଖାଗଲା ଯେଉଁ ମଶାଣି ପାଖେ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଗାଈଗୋଠକୁ ଖରା ବର୍ଷାରେ ବିଶ୍ରାମ ଦେଉଥିଲା ସେଇ ମଶାଣି ପଡ଼ିଆରେ ଶେଷରେ ସେ ନିଜେ ଶେଷ-ବିଶ୍ରାମ ନେଲା । ତା ପାଇଁ ନିଆଁ ଜଳିଲା ନାହିଁ, ତା ପାଇଁ

କାଠ ବୁହାଗଲା ନାହିଁ, ତାକୁ କୋକେଇରେ ବି ଅଣାଗଲା ନାହିଁ । ତାର ଜୀବନ ସାଥୀ ଶରଧା ତାକୁ କାନ୍ଧରେ ଟେକିଆଣି ସେଇ ନିତି ପରିଚିତ ବରିଷ୍ଠ ବରଗଛ ଛାଇ ତଳେ ଶୁଆଇଦେଲା । ସେ ଅଧିକାର ସେ ଆଉ କାହାକୁ ଦେଲା ନାହିଁ ।

ଏଇ ଘଟଣାର ପର ଦିନ ଦେଖାଗଲା ସେଇ କ୍ଷୁଦ୍ର ମଫସଲର କ୍ଷୁଦ୍ରତମ ଗାଈଗୋଠ ଗୋଟାଏ ଶବର ଗୃହପଟେ ଘେରି ରହି ଠିଆ-ହୋଇଚନ୍ତି । ତାହା ଦେଖି ମନେହେଲା ସତେ ଯେପରି ସେଇ ମୂକ ପଶୁ-ସମାଜ ଉଗୀଆର ମୃତ୍ୟୁରେ ପରିଚିତ ତୋଟା, ପରିଚିତ ମଶାଣି ପଡ଼ିଆରେ ଶୋକସଭା କରୁଥିଲେ !!

# ମୋବାଇଲ ଫୋନ୍

ଗ୍ରାମଧର ପାଣଙ୍କୁ ପାଇରେ ସମସ୍ତେ ଡାକନ୍ତି ଗ୍ରାମଧର ବାବୁ ବୋଲି । କାରଣ ସେ କିରାଣୀ କାମ କରନ୍ତି । ଗ୍ରାମଧରଙ୍କୁ 'ବାବୁ' ବୋଲି ଡାକିବାରେ ତାଙ୍କ ସ୍ତ୍ରୀ ଭାରି ଖୁସି । କାରଣ ଯାହାଙ୍କ ପଡ଼ିଶାରେ ସେ ଘର ଭଡ଼ା କରିଥାନ୍ତି ସରକାରଙ୍କର ସେ ଜଣେ ବଡ଼ କର୍ମଚାରୀ । ମାସକୁ ସାତଶହ, ଆଠଶହ ଦରମା ପାନ୍ତି । ତାଙ୍କୁ ମଧ୍ୟ ଲୋକେ 'ବାବୁ' ବୋଲି ଡାକନ୍ତି । ଏତେ ବେଶି ଦରମା ପାଉଥିବା ଲୋକଙ୍କୁ ଯେଉଁ ଲୋକେ 'ବାବୁ' ବୋଲି ଡାକନ୍ତି କଚେରୀରେ ପଞ୍ଚସ୍ତରୀ ଟଙ୍କା ଦରମା ପାଉଥିବା କିରାଣୀଙ୍କୁ ସେମାନେ ମଧ୍ୟ ବାବୁ ବୋଲି ଡାକିଲେ ସ୍ତ୍ରୀ ଗୌରବ ବୋଧ ନ କରିବେ କିପରି ?

କିନ୍ତୁ ଗ୍ରାମଧରଙ୍କୁ 'ବାବୁ' ବୋଲି ଡାକିବାରେ ଗ୍ରାମଧରଙ୍କର ପେଟ ପୂରେ ନାହିଁ । ସେ ସବୁବେଳେ ଅଭାବରେ ଥାନ୍ତି । ପହିଲି ବା ଦୁଇ ତାରିଖରେ ଯାହା ଦରମା ଗଣ୍ଡାକ ପାନ୍ତି କୌଣସିମତେ ପନ୍ଦର ତାରିଖ ପର୍ଯ୍ୟନ୍ତ ଘରେ ସ୍ତ୍ରୀଙ୍କ ସହିତ ଗୋଳମାଳ ନଥାଇ ଚଳିଯାନ୍ତି । ପନ୍ଦର ତାରିଖ ପରେ ଘରେ ଲାଗେ ଟଣା ଓଟରା । ଟଣା ଓଟରାର ଏକମାତ୍ର କାରଣ ଅଭାବ । ଆଜି ଲୁଣ ନାହିଁ, କାଲି ତେଲ ନାହିଁ, ଆଠ ଦିନ ପରେ ଲୁଗା ଖଣ୍ଡେ ନାହିଁ, ଗାଁ ଆଡ଼ୁ କିଏ ବନ୍ଧୁ ବାନ୍ଧବ ଆସିଲେ ସୁବିଧାରେ ତାଙ୍କର ଚର୍ଚ୍ଚା ହୁଏ ନାହିଁ । ଏଥିପାଇଁ ସ୍ତ୍ରୀ ତାଙ୍କୁ ପୁରୁଷ ବୋଲି ଗଣନ୍ତି ନାହିଁ । ତଥାପି ଗ୍ରାମଧର ପାଣଙ୍କୁ ଜାଣିଥିବା ଲୋକେ 'ଗ୍ରାମଧର ବାବୁ' ବୋଲି ଡାକନ୍ତି ।

ଗ୍ରାମଧର ବାବୁ କିରାଣୀ ଚାକିରୀ କରିବାର ଚାରି ବର୍ଷ ପର୍ଯ୍ୟନ୍ତ ବସାଠାରୁ ଅଫିସ ଯାଏଁ ପ୍ରାୟ ଅଢ଼େଇ ମାଇଲ ବାଟ ଚାଲି ଚାଲି ଯାନ୍ତି ।

ଅଫିସ ସାଢ଼େ ଦଶଟାରେ ଆରମ୍ଭ ହେଲେ ସେ ଘରୁ ସାଢ଼େ ଆଠରେ ବାହାରିପଡ଼ନ୍ତି । ସକାଳ ଓଳିଆ ଅଫିସ ହେଲେ ଛ'ଟାରେ ବାହାରିବାକୁ ପଡ଼େ । ଆଠଟା ଭିତରେ ରୋଷେଇ ନ ହୋଇଥିଲେ କଞ୍ଚା, ଦରସିଝା ଯାହା ପାରନ୍ତି ନାକରେ କାନରେ ଗୁଞ୍ଜିଦେଇ ଛିଣ୍ଡା ଚଟି ହଳଟା ଗୋଡ଼ରେ ଲଗାଇ ତାକୁ ଘୋଷାରିଲା ପରି ଚାଲିଯାନ୍ତି । ସେତେବେଳକୁ ପଡ଼ିଶା ଘରର ଅଫିସରଙ୍କର ଅଫିସକୁ ଯିବା ପାଇଁ ମୋଟର ଧୂଆଁ ହେଉଥାଏ । ତଥାପି ରାମହରି ପାତ୍ରଙ୍କୁ ଲୋକେ 'ରାମହରି ବାବୁ' ବୋଲି ଡାକନ୍ତି । ସେ ଯେତେବେଳେ ସକାଳ ଛ'ଟାରେ ଅଫିସିକୁ ବାହାରନ୍ତି ଅଫିସରଙ୍କ ଚାକର ରୋଷେଇ ଘରେ ଜଳଖିଆ ତିଆରି କରୁଥିବାର ଗନ୍ଧ ତାଙ୍କ ନାକରେ ବାଜେ । ସେ ଆଡ଼କୁ ସେ ଦୃଷ୍ଟି ଦିଅନ୍ତି ନାହିଁ । ଅଫିସିକି ବାହାରିଲା ବେଳେ ଲୋକେ କହନ୍ତି—ରାମହରି ବାବୁ ଠିକ୍ ସମୟରେ ଅଫିସିକୁ ଯାଉଛନ୍ତି । ଏସବୁ ଭିତରେ ଦିନେ ଯେବେ ରାମହରି ବାବୁଙ୍କ ସ୍ତ୍ରୀଙ୍କ କାନରେ 'ରାମହରି ବାବୁ' ବୋଲି ଶବ୍ଦ ନ ବାଜିଲା ସେ ବଡ଼ ଦୁଃଖିତା ହୁଅନ୍ତି । ରାମହରି ବାବୁଙ୍କର କିନ୍ତୁ ସେଥିପ୍ରତି ନଜର ନଥାଏ । ତାଙ୍କର ନଜର ଥାଏ—କେବଳ ଠିକ୍ ସମୟରେ ଅଫିସକୁ ଯିବେ, ମାସ ପହିଲରେ ଦରମା ଗଣ୍ଡାକ ଆଣି ପନ୍ଦର ଦିନ ସୁବିଧାରେ ଚଳିବେ, ବାକି ପନ୍ଦର ଦିନଟା ବାହାରେ ଧାର ଉଧାର କରି ଏବଂ ଘର ଭିତରେ ସ୍ତ୍ରୀଙ୍କର ମୁହଁଫୁଲା, ଭର୍ତ୍ସନା, ବେଖାତିର ପଣିଆ ସହ୍ୟକରି କାମ ଚଳାଇବେ ।

ଚାରି ବର୍ଷ ପରେ ରାମହରି ବାବୁଙ୍କର ଭାଗ୍ୟ ଟିକିଏ ବଦଳିଲା ବୋଲି ଅନେକ ଲୋକ ମନେକଲେ । ମନେ କରିବାର କାରଣ ହେଲା ସେ ଖଣ୍ଡିଏ ସାଇକେଲରେ ଯିବା ଆସିବା କଲେ । ସମୟର ସୁବିଧାପାଇଁ ସେ ସାଇକେଲ ଖଣ୍ଡିଏ କଲେ ସତ; କିନ୍ତୁ ସାଇକେଲରେ ଯିବାବେଳେ ତାଙ୍କୁ କି ଅସୁବିଧା ଭୋଗିବାକୁ ପଡ଼େ ସେକଥା ଘରେ ନଜର ପ୍ରଣୟିନୀ କିମ୍ବା ବାହାରେ ତାଙ୍କୁ 'ବାବୁ' ବୋଲି ଡାକୁଥିବା ଲୋକେ ବୁଝିପାରନ୍ତି ନାହିଁ । ଦୁଆର ମୁହଁରେ ସାଇକେଲରେ ଉଠିବା ବସିବାଠାରୁ କଚେରି ପାଖେ ପହଞ୍ଚିବା ପର୍ଯ୍ୟନ୍ତ ତାଙ୍କୁ ପଚାଶ ଥର ସାଇକେଲରୁ ଓହ୍ଲାଇ ପୁଣି ଡିଙ୍କି କୁଟିଲା ପରି ଥରକୁ ଥର ସାଇକେଲ ଚଢ଼ିବାକୁ ହୁଏ । କାରଣ, ସାଇକେଲରେ ବ୍ରେକ ବା ବେଲ୍ ନ ଥାଏ । ରାସ୍ତା ଉପରେ ପାଦଟିକରିବା

ସଙ୍ଗେ ଲୋକେ ଆଡ଼େଇ ନ ହେବାରୁ ସେ ତ ସାଇକେଲରୁ ଓହ୍ଲାଇପଡ଼ନ୍ତି, ବ୍ରେକ ନ ଥିବା ଫଳରେ ଗାଡ଼ି ଘୋଡ଼ା, ମୋଟର, ଲୋକଗହଳି ଦେଖି ଓହ୍ଲେଇବାକୁ ବାଧ୍ୟ ହୁଅନ୍ତି ମଧ୍ୟ । ଏତେ ଥର ଓହ୍ଲେଇବାର ମଧ୍ୟ କମ ଅସୁବିଧା ଆଉ ଅପମାନ ସହିବାକୁ ହୁଏନାହିଁ । ଓହ୍ଲାଉ ଓହ୍ଲାଉ କାହା ଦେହରେ ବାଜିଲେ କିମ୍ବା ତାଙ୍କ ଦେହରେ ଆଉ କିଏ ବାଜିଲେ ସବୁଯାକ ଦୋଷ ତାଙ୍କର ହୁଏ । ଜାଣିବା ଲୋକ ଦେହରେ ବାଜିଲେ ଟିକିଏ ରକ୍ଷା ମିଳେ; କାରଣ ତାଙ୍କୁ ସେମାନେ 'ବାବୁ' ଭାବରେ ଜାଣିଥାନ୍ତି; କିନ୍ତୁ ନ ଜାଣିଥିବା ଲୋକେ କହିବାର ଶୁଣାଯାଏ—ସାଇକେଲ ନୂଆ କରି ଶିଖିବାକୁ ଥିଲେ ମେନ୍ ରୋଡ଼ରେ କାହିଁ ? କଲ୍ଲାକୁ ଚାଲି ଯାଉନାହଁ ? ଲୋକେ ଏକଥା କହିଲାବେଳେ ରାମହରି ବାବୁଙ୍କର ପ୍ରକୃତ ଅବସ୍ଥା ବୁଝନ୍ତି ନାହିଁ । ସେ ଯେ ପ୍ରଣୟିନୀଙ୍କ ଦି' ଚାରିଖଣ୍ଡି ହାତର ନାକର ଅଳଙ୍କାର ବିକି ପୁରୁଣା ସାଇକେଲ ଦୋକାନରୁ ଚକଟାଏ, ଚେନଟାଏ, ହାଣ୍ଡେଲଟାଏ, ସିଟ୍‌ଟାଏ ଯାଏ ଛ'ମାସ ଭିତରେ ସଂଗ୍ରହ କରି କରି ଶେଷରେ ଦୋକାନରେ ଯୋଡ଼ାଯାଡ଼ି ତାକୁ ସାଇକେଲ କରି ଚଢ଼ୁଛନ୍ତି ସେମାନେ ସେକଥା କାହିଁକି ବୁଝିବେ ? ସମସ୍ତେ ବୁଝନ୍ତି ଲୋକଟା ନୂଆ କରି ସାଇକେଲ ଶିଖୁଛି ।

ରାମହରି ବାବୁଙ୍କର ଚାକିରୀରେ ଜୀବନଯାତ୍ରା ଏହିପରି ଚାଲିଥିଲାବେଳେ ଭିତରେ ସରକାରଙ୍କର ବିଭିନ୍ନ ଯୋଜନାକୁ ଟଙ୍କା ଯୋଗାଇବା ପାଇଁ ଏବଂ ବାହାରେ ଲୋକଙ୍କର ନାଗରିକ ଜୀବନରେ ଶୃଙ୍ଖଳା ଆଣିବା ଲାଗି କଟକରେ ମୋବାଇଲ କୋର୍ଟ ବସିଲା । ପ୍ରଥମେ ପ୍ରଥମେ ମୋବାଇଲ କୋର୍ଟର କାର୍ଯ୍ୟରୁ ରାମହରି ବାବୁ ବୁଝିଥିଲେ ଯେ ରସଗୋଲା ଶିରାରେ ଜହ୍ନା ପଡ଼ିଲେ, ସକାଳର ସିଙ୍ଗଡ଼ା ଉପରଓଳି ବିକିଲେ କିମ୍ବା ଦୋକାନ ଦୁଆରର ପଟା ଦୁଇ ଚାରି ଇଞ୍ଚ ମୁନିସିପାଲିଟି ଜାଗାକୁ ମାଡ଼ି ଆସିଲେ ମୋବାଇଲ କୋର୍ଟ ଧରୁଛି ଏବଂ ଜୋରିମାନା କରୁଛି ।

ରାମହରି ବାବୁଙ୍କର 'ମୋବାଇଲ କୋର୍ଟ' ବିଷୟରେ ଏପରି ଦୃଢ଼ ଧାରଣା ଥିବାରୁ ଏବଂ ଘରେ ସଉଦାପତ୍ର ଅଭାବରେ ସ୍ତ୍ରୀଙ୍କ ମୁହଁରୁ ଦୃଢ଼ ଭର୍ତ୍ସନା ଶୁଣିବାରୁ ଦିନେ ସେ ବାହାରି ପଡ଼ିଲେ ସାଇକେଲ ଚଢ଼ି ସଉଦା କରିବାକୁ । ଦେଢ଼ ମାଇଲ ବାଟ ସାଇକେଲରେ ଗଲେ ଜଣେ ଅନ୍ତରଙ୍ଗ ବନ୍ଧୁଙ୍କଠାରୁ କିଛି ଧାର ଆଣି ବଜାରକୁ ଯିବେ ସଉଦା କରି, ଏହା ଥିଲା

ତାଙ୍କର ଲକ୍ଷ୍ୟ । ଏହି ମିଛା ପଥରେ ମୋବାଇଲ କୋର୍ଟ ଯେ ବସିଛି ତାଙ୍କୁ ମାଲୁମ ନାହିଁ । ମାଲୁମ ଥିଲେ ବି ସେ ଭୟ କରି ନ ଥାନ୍ତେ । କାରଣ, ସାଇକେଲ ସହିତ ମୋବାଇଲ କୋର୍ଟର କିଛି ସମ୍ପର୍କ ନାହିଁ ବୋଲି ସେ କପରି ବୁଝିଯାଇଥିଲେ । ସେଦିନ ତାଙ୍କ ସାଇକେଲଟା ସିଧା ବନ୍ଧୁଙ୍କ ଘରକୁ ନ ଯାଇ ମୋବାଇଲ କୋର୍ଟ ପାଖରେ ଜମା ହୋଇଥିବା ଲୋକଙ୍କ ଭିତରେ ଯାଇ ପଶିଗଲା । ଅର୍ଥାତ, ସାଇକେଲରେ ବ୍ରେକ କି ବେଲ୍ ନ ଥିବାରୁ ସେ ଯେତେ ପାଟିକଲେ ମଧ୍ୟ ଲୋକେ ଉଠିଲେ ନାହିଁ, ତେଣୁ ସେ ଓହ୍ଲାଉ ଓହ୍ଲାଉ ହାକିମଙ୍କ ଆଗରେ ଲୋକଙ୍କ ଉପରେ ପଡ଼ିଗଲେ । ଏହିଠାରେହିଁ ଗୁରୁତର ପରିସ୍ଥିତି ପହଞ୍ଚିଲା ।

ପରିସ୍ଥିତିଟା ତାଙ୍କର ନୁହେଁ, ସାଇକେଲର । ସଙ୍ଗେ ସଙ୍ଗେ ସାଇକେଲଟି ଜବତ କରାଯାଇ ପରୀକ୍ଷା କରାଗଲା; ସେଥିରେ ବେଲ୍ ନାହିଁ କି ବ୍ରେକ୍ ନାହିଁ । ସେହିଠାରେ ସାଇକେଲ ସହିତ ତାଙ୍କୁ ଅଟକିବାକୁ ହେଲା ଏବଂ ଅଟକିବାର ଅଧ ଘଣ୍ଟେ ଭିତରେ ବିଚାର । ବିଚାର ବି ଶେଷ ହୋଇ ଶୁଣେଇଦିଆଗଲା—ଜରିମାନା ଚାଳିଶି, ସଙ୍ଗେ ସଙ୍ଗେ ନ ଦେଲେ ସାତ ଦିନ ଜେଲ । ଅଫିସିକି ଯିବାକୁ ଆଉ ଦେଢ଼ ଘଣ୍ଟା ସମୟ ଅଛି, ରାମହରି ବାବୁ ଦେଖିଲେ ସାତ ଦିନ ଜେଲ ଯିବାକୁ ତାଙ୍କୁ ଆଦୌ ବେଳ ନାହିଁ । ସେପରି ପରିସ୍ଥିତିରେ ସାଇକେଲଟି ନିଲାମ ହୋଇ ଘୋଷଣା କରାଗଲା—ପଚାଶ ଟଙ୍କା । ଏହିସବୁ ଘଟଣା ଏତେ ଚଞ୍ଚଳ ଘଟିଲା ଯେ ରାମହରି ବାବୁଙ୍କୁ ତାହା ସ୍ୱପ୍ନ ଦେଖିଲା ପରି ଲାଗିଲା । ସାଇକେଲର ନିଲାମ ମୂଲ୍ୟ ପଚାଶରୁ ଜରିମାନା ବାବଦକୁ ଚାଳିଶି ଯାଇ ବାକି ଦଶଟା ଟଙ୍କା ତାଙ୍କୁ ଯେତେବେଳେ ଫେରାଇଦିଆଗଲା ତାଙ୍କର ମନ ଯାଇ ପହଞ୍ଚିଲା ଘରେ । ମନେ କଲେ ଏଟା ଯଥା ଲାଭ । ଜେଲ ଯିବାଠୁ ତ ଭଲ । ଟଙ୍କା ଧରି ସିଧା ଚାଲିଲେ ବଜାରକୁ ।

ଘଣ୍ଟାକ ପରେ ରାମହରି ବାବୁଙ୍କ ଘରେ ଗୋଟାଏ ଚହଳ ପଡ଼ିଗଲା । ସ୍ୱାମୀଙ୍କ ହାତରେ ବିରାଟ ବୁଜୁଲାଏ ଜିନିଷପତ୍ର ଦେଖି ସ୍ତ୍ରୀ ଏତେ ଖୁସି ହୋଇଗଲେ ଯେ ପ୍ରଥମେ କଥା କହି ନ ପାରି କେବଳ ତାଙ୍କ ମୁହଁକୁ ଚାହିଁରହିଲେ । ଗୋଟି ଗୋଟି ଜିନିଷ ବାଛିପକାଇ କଣ ସେଓଲି ରାନ୍ଧିବେ, କାହାକୁ ସାଇତି ରଖିବେ ଠିକ୍ କରୁ କରୁ ମୁହଁ ଟେକି

ପଗ୍ଭରିଲେ—କାହିଁ, ସାଇକେଲଟା ତ ଘରକୁ ଆଣି ନାହିଁ ? ବ୍ରହ୍ମହରି ବାବୁ ସେତିକିବେଳେ ଠୋ ଠୋ ହସି ପକାଇଲେ, କହିଲେ—ତୁମେ ବୋଧହୁଏ ଭାବିଚ ମୋର ଭାଗ୍ୟ ହଠାତ୍ ବଦଳିଗଲା ? ସାଇକେଲ ଧରି ଯେବେ ଫେରିଥାନ୍ତି ତାହାହେଲେ ଏତେ ଜିନିଷ ଘରକୁ ଆସିଥାନ୍ତା କେଉଁଆଡ଼ୁ ? ସାଇକେଲର ପଚ୍ଚିଶ ଟଙ୍କା ମୂଲ୍ୟରୁ ପନ୍ଦର ଟଙ୍କା ଜରିମାନା ବାବଦକୁ ଯାଇ ବାକି ଏ ହେଉଚି ଦଶ ଟଙ୍କାର ଜିନିଷ ।

ସ୍ତ୍ରୀ ପଗ୍ଭରିଲେ—ତାହାହେଲେ······

ସ୍ୱାମୀ କହିଲେ—ଆଉ ତାହାହେଲେ ଫାହାହେଲେ କିଛି ନାହିଁ । ଆଜି 'ମୋବାଇଲ କୋର୍ଟ' ଫଳରେ ଆମ ଘରେ ଶାନ୍ତି ଶୃଙ୍ଖଳା ଆସିଛି । ତୁମେ ଜିନିଷ ଦେଖି ହସୁଛ ସତ; କିନ୍ତୁ ମୁଁ ଅଫିସିକି ଗଲାବେଳେ କିଣ ହେବ ତୁମେ କିଛି ବୁଝିପାରିବ ନାହିଁ, ଯେପରି କି ତୁମେ ଏ ପର୍ଯ୍ୟନ୍ତ କିଛି ବୁଝି ପାରି ନ ଥିଲ ଏ ଘର ସଂସାରର 'ହାଲଚାଲ । ଏ ପର୍ଯ୍ୟନ୍ତ ପାରିବାରିକ ଅସୁବିଧା ପାଇଁ ମୋବାଇଲ କୋର୍ଟ ବସିନାହିଁ, ବସିଥିଲେ ଭଙ୍ଗା ସାଇକେଲ ପରି ତୁମକୁ ବି ହରାଇବାର ସମ୍ଭାବନା ଥିଲା !!

# ସେକ୍ରେଟେରୀଏଟ ଷ୍ଟୋରୀ

ପିନ୍ଧିବାରେ ଗେରୁଆ ବସନ, ହାତରେ ଖଣ୍ଡିଏ ଲମ୍ବା ବାଡ଼ି—ଏ ଗାଁକୁ ସେ ଗାଁ ବୁଲିଗଲାବେଳେ ଧନେଶ୍ୱର ଦାସଙ୍କୁ ଲୋକେ ଦେଖି ଆଶ୍ଚର୍ଯ୍ୟ ହୁଅନ୍ତି । ଧନେଶ୍ୱର ଦାସ କେବେ ବା କ'ଣ ବେଶି କଥା କହୁ-ଥିବେ; ଏବେ କିନ୍ତୁ ଅତି କମ୍ କହୁଛନ୍ତି, ଆଉ, ଯାହା କହୁଛନ୍ତି ତାହା ଅତି ମୂଲ୍ୟବାନ । ସେ କହନ୍ତି—ବାବୁ ! ତୁମେ ଭଲ ହୁଅ । ଗାଁକୁ ଭଲ କର, ସତ କହ, ଲୋକଙ୍କର ଉପକାର କର । ଗାଁର ଯେଉଁମାନେ ଧନେଶ୍ୱର ଦାସଙ୍କ ବୟସର ଏକ ଚତୁର୍ଥାଂଶ ବା ଏକ ପଞ୍ଚମାଂଶ ହେବେ ସେମାନେ ଆଁ କରି ଚାହିଁରହନ୍ତି, କଣ ବୁଝନ୍ତି ନ ବୁଝନ୍ତି, ଚାଲି ଯାଆନ୍ତି । କିନ୍ତୁ ତାହାଁରୁ ବେଶି ବୟସର ଲୋକେ ପରସ୍ପର ମୁହଁ ଚାହାଁଚାହିଁ ହୋଇ ମୁରୁକି ହସା ଦିଅନ୍ତି । ଧନେଶ୍ୱର ଚାଲିଗଲା ପରେ ପଛରେ କୁହାକୁହି ହୁଅନ୍ତି—ଆମେ ଆଉ ରାମାୟଣ ପଢ଼ିବା ଦରକାର ନାହିଁ । ସେଥିରେ ଅତି ପୁରୁଣା କଥା ଲେଖାହୋଇଛି । ରତ୍ନାକର ଯେଉଁ ଋଷିଙ୍କ ଉପଦେଶ ମାନି ବାଲ୍ମୀକି ହୋଇଥିଲେ, ଏବେ ତ ଆମେ ସାକ୍ଷାତ ଦେଖିଲେ, ଆଉ ରାମାୟଣ ପଢ଼ିବା କି ଦରକାର ?

ଧନେଶ୍ୱରଙ୍କୁ ଯେଉଁମାନେ ଜାଣନ୍ତି, ସେମାନଙ୍କୁ ପଚାରିଲେ ସେମାନେ ଧନେଶ୍ୱରଙ୍କ ବିଷୟରେ ଅତି ଅଦ୍ଭୁତ କଥା ସବୁ କହିବେ । ଭୁବନେଶ୍ୱର ଥାନାର ତିରିଶି ଚାଳିଶି ବର୍ଷ ତଳର କାଗଜପତ୍ର ଘାଣ୍ଟିଲେ ଅନେକ ଷ୍ଟେସନ ଡାଏରୀ, ଏତାଲ୍, ପରୱାନା ମିଳିବ; ଯାହା ସହିତ ଧନେଶ୍ୱର ଘନିଷ୍ଠ ଭାବରେ ସଂପୃକ୍ତ, କିନ୍ତୁ ତାହା ବୁଝିବା ପାଇଁ ସମସ୍ତଙ୍କ ପକ୍ଷରେ ସହଜ ନୁହେ । ସେତେବେଳେ ଧନେଶ୍ୱରଙ୍କ ନାଁ ଚାରି ଅକ୍ଷରରେ ନଥିଲା, ତାହା ଥିଲା, ଦୁଇଟା ଅକ୍ଷରରେ—କେବଳ 'ଧନୁ' ।

ଏହି 'ଧନୁ'ରୁ 'ଧନେଶ୍ୱର' କପରି ହେଲା, ତାହା ସେ ସମୟର ବୁଢ଼ା ବୁଢ଼ା ଲୋକେ କହି ପାରିବେ । ଭୁବନେଶ୍ୱର ସହର ଲଗାଏତ ପଚିଶ ତିରିଶ ଖଣ୍ଡ ଗାଁର ଲୋକେ କେତେବେଳେ ଏଇ ଧନୁ ଦାସ ନାଁ ଭଲ ଭାବେ ଜାଣିଥିଲେ । ଧନୁ ଦାସ ସେପରି ଧନୀ ଲୋକ ନଥିଲା । ତା ଦେହରେ ସେପରି ବଳ ନଥିଲା କିମ୍ବା ତା'ର ସେ ଅଞ୍ଚଳରେ ସେପରି କିଛି ପ୍ରତିପତ୍ତି ନଥିଲା । ତଥାପି ତା' ନାଁ ଲୋକେ ସକାଳେ, ସନ୍ଧ୍ୟାରେ, ରାତିରେ ଶୋଇଲା ବେଳେ, ବାଟରେ ଚାଲିଲାବେଳେ,ଏପରିକି ଗାଁରୁ ଯାଇ ବିଦେଶରେ ଥିବାବେଳେ ମଧ୍ୟ ସ୍ମରଣ କରୁଥିଲେ ।

ଲୋକ ଦୁର୍ନାମର ଶେଷ ପର୍ଯ୍ୟାୟରେ ପହଞ୍ଚିଲେ ଲୋକ ଚକ୍ଷୁରେ ବେଳେ ବେଳେ 'ବୀର' ପର୍ଯ୍ୟାୟରେ ପହଞ୍ଚିଯାଏ । ବିହାରୀ ନାଏକ ଓଡ଼ିଶାର ବିଖ୍ୟାତ ଚୋର ଥିଲା । ଚୋରକୁ କେହି ପ୍ରଶଂସା କରନ୍ତି ନାହିଁ; କିନ୍ତୁ ବିହାରୀ ନାଏକ ଯେତେବେଳେ ଚୋରି ବୃତ୍ତିର ଶେଷ ପର୍ଯ୍ୟାୟରେ ପହଞ୍ଚିଲା, ସେଥିରୁ ତା'ର ଗୁଣ ବାହାରିଲା । ତା'ର ସାହସ, ତା'ର କୌଶଳ, ତାର ଧୈର୍ଯ୍ୟ ବିଷୟରେ ସମାଜର ଜଣାଶୁଣା ଲୋକେ ଓ ରାଜନୀତିର ବିଶିଷ୍ଟ ନେତାମାନେ ଆଲୋଚନା କଲେ । ଏପରିକି ଶେଷରେ ତା' ଚୋରିର କୌଶଳ ଦେଖିବା ପାଇଁ କେତେକ ସ୍ଥାନରେ ପ୍ରଦର୍ଶନୀ ଖୋଲାଗଲା । ସେ କିପରି ଚୋରି କରିବା ପାଇଁ ଦୋମହଲା, ତିନିମହଲା କୋଠା ଉପରକୁ ଉଠିପାରେ, ସେ ଉପରୁ ଡେଇଁ ଚାଲି ଆସିପାରେ, ତାହା ଦେଖାଇ ସେ ଗୌରବ ପାଇଲା । ସେ ଯେତେବେଳେ ବୁଢ଼ା ହୋଇଗଲା ତାକୁ କର୍ମ ଯୋଗାଇ ଦେବା ପାଇଁ ସେ ସମୟର ଲାଟ ବା ରାଜ୍ୟପାଳ, ଅର୍ଥ ସାହାଯ୍ୟ କରିଥିଲେ । ସେତେବେଳେ ଗୋଟିଏ 'ବିହାରୀ ପାର୍ଟି' ମଧ୍ୟ ଖୋଲା ଯାଇଥିଲା ।

ଏ ସବୁ କଥା କହିବାର କାରଣ ହେଉଛି ଧନୁ ଓରଫ ଧନେଶ୍ୱର ତା' ବୃତ୍ତିର ଶେଷ ପର୍ଯ୍ୟାୟରେ ପହଞ୍ଚିଲା । ଧନୁ ଦାସର ନିଜ ଗାଁ ଲୋକେ ଦେଖିଲେ —ସେ ଗାଁରେ ଆଜି ଯେତେ ଯିଏ ଭଲ କାମ କରୁ ପଛକେ କେବଳ ଧନୁଦାସର ନାଁ ଟା ସେହି ଗାଁ ସହିତ ଯୋଡ଼ି ହୋଇଗଲା । ଲୋକେ କହିଲେ—'ଧନୁ ଗାଁ' ବା

'ଗ୍ରେର ଗା । ଏପରି ହେଲା ଯେ ସେ ଗାଁର କଏ ଯଦି ଦୂର ବନ୍ଧୁ-ବାନ୍ଧବ ଗାଁକୁ ଗଲା ସେଠି ତାକୁ ପରିଚୟ ଦେବାକୁ ପଡ଼ିଲା—ଯେଉଁ ଗାଁରେ ଧନୁ ଦାସ ଅଛି ସେ ତା'ରି ଗାଁ । ଦୂରର ଅପରିଚିତ ବାଟୋଇ ସେ ଗାଁର ନାଁ ପଚ୍ଚରିଲେ ପାଖ ଗାଁର ଲୋକେ 'ଗ୍ରେରଗାଁ' ବୋଲି ତାକୁ ବାଟ ବତେଇ ଦିଅନ୍ତି । ସେ ନାଁ ଶୁଣି କେଉଁ ବାଟୋଇ ଭୟ କରେ ରାତିରେ ସେଇ ଗାଁକୁ ଯିବା ପାଇଁ; କଏ ବା ଅଛା ପରିହାସ ମନେ କରି ଆଉ କାହାକୁ ପଚ୍ଚରି ବୁଝେ । ସେଠାରୁ ବି ସେ ସେଇ ଉତ୍ତର ପାଏ ।

ଧନୁ ଦାସ ଗାଁର ଏଇ ଦୁର୍ଗତି ବେଳେ ଦଳେ ପାଠୁଆ ଯୁବକ ବାହାରିଲେ ଗାଁର ସୁନାମକୁ ଉଦ୍ଧାର କରିବା ପାଇଁ । ଦିନେ ଗାଁର ଭାଗବତ ଘରେ ସଭା ବସିଲା । ଧନୁ ଦାସ ବି ସେ ସଭାରେ ଉପସ୍ଥିତ ଥିଲା । କଥା ହେଲା—ଧନୁ ଦାସଙ୍କୁ ଆଉ ସେପରି ଭାବରେ ଛାଡ଼ି ଦେବାକୁ ହେବ ନାହିଁ । ଦେଖୁ ଦେଖୁ ଗାଁର ତ ନାଁ ବୁଡ଼ିଗଲା, ଧନୁ ଦାସ ପଛେ ପଛେ ଆଉ ଗ୍ରରି ପାଞ୍ଚୋଟି ଧନୁ ଦାସ ତା'ଘରୁ ଉଚ୍ଛୁରିଲେଣି । ଏପରି ଚାଲିଲେ ସେ ଗାଁ ସୀମା ଡେଇଁ ଅନ୍ୟ ଗାଁରେ ମଧ୍ୟ ଏ ଦଶା ପହଞ୍ଚିବ । ଧନୁ ଦାସ ଘରେ ଯେଉଁ ପିଲାର ମୁଣ୍ଡକୁ ହାତ ପାଇଲାଣି, ଗାଁ ଭିତରେ ଗ୍ରେଟ ଗ୍ରେଟ ଗ୍ରେରି ଆରମ୍ଭ କଲାଣି । ଧନୁ ଦାସର କୌଶଳ ତା' ବଡ଼ ପୁଅ ପ୍ରାୟ ଶିଖିଗଲାଣି । ଧନୁଦାସ ଅଭାବରେ କେବେ ପଡ଼େ ନାହିଁ । ଦୂରକୁ ଯାଇ ନ ପାରିଲେ ଗାଁ ଭିତରେ ତାର ବ୍ୟବସାୟ ଆରମ୍ଭ କରିଦିଏ । ତା'ର ବୁଦ୍ଧି ଓ କୌଶଳରେ ଲୋକେ ହସିବେ କି ରାଗିବେ, ବେଳେ ବେଳେ ବୁଝିପାରନ୍ତି ନାହିଁ । ତା କୌଶଳର ଗୋଟିଏ ଗ୍ରେଟିଆ ଉଦାହରଣ ଏଠାରେ ଦେଲେ ଚଳିବ । ଏଇ କୌଶଳ ସେ ପ୍ରୟୋଗ କରିଥିଲା ପଡ଼ିଶା ଘରେ ।

ପଡ଼ିଶା ଘରେ ଘରର ସାନ ଝିଅ ଥରେ ବାଡ଼ିରେ ଲେଉଟିଆ ଶାଗ କାଟୁଥିଲା । ତା' ମୁଣ୍ଡରୁ ଲୁଗା ଖସି ଯାଇଥିଲା । ସେ ଜାଣେ ନା ଯେ ଧନୁ ଦାସ ତା ବାଡ଼ିରେ ପିଜୁଳି ଗଛରେ ଚଢ଼ି ପିଜୁଳି ତୋଳୁଛି ବୋଲି । ସେ ହଠାତ୍ ପାଟି କରି ଉଠିଲା—ମୋ କାନର ମାକଡ଼ିଟା ଧନୁଦାସ ଟାଣି ନେଇଗଲା ! ଲୋକେ ଧାଇଁଲେ—ଦେଖିଲେ ଧନୁ ଦାସ ତା'ଘରେ ଅଛି । କଥା ବୁଝି ବୁଝି କଣ ନା ଧନୁ ଦାସ ପିଜୁଳି ଗଛରେ ଚଢ଼ି

ଆଙ୍କୁଡ଼ ବା ନଗୀ ସାହାଯ୍ୟରେ ପଡ଼ଶା 'ଦନ୍ଦ' ମାନ ଝିଅର କାନର ମାକଡ଼ିକୁ ଏପରି ଟାଣି ଦେଲି ଯେ ତାହା ଛୁଡ଼ିଯାଇ ନଜ ବାଡ଼ି ଭିତରେ ପଡ଼ିଲା । ଏହିପରି ଶହ ଶହ ଅସମ୍ଭବ ବିଚିତ୍ର କାର୍ଯ୍ୟ ଧନ୍ ଦାସ କରିବାର ଶୁଣା ଅଛି ।

ଏ ଯାହା ହେଉ, ଗାଁର ଗୌରବକୁ ଜପର ଫେରାଇ ଆଣିବାକୁ ହେବ ଗ୍ରାମବାସୀ ସେ ଦିନ ସ୍ଥିର କଲେ । ସେମାନେ ତା ଆରଦିନ ସକାଳୁ ଥାନାରେ ଯାଇ ପହଞ୍ଚି ଥାନା ବାବୁଙ୍କୁ ନିବେଦନ କଲେ ଯେ ଧନୁ ଦାସ ଉପରେ ଆପଣ ଆଉ ଦୃଷ୍ଟି ଦିଅନ୍ତୁ ନାହିଁ, ତା' କଥା ଆମେ ବୁଝିବୁ । ସେ ଭଲ ମଣିଷ ହେବ—ଆମକୁ ଜବାବ ଦେଇଛି । ଥାନା ବାବୁ ମାସେ ସମୟ ଦେଲେ । ମାସକ ଭିତରେ ଧନୁଦାସ ଦୁଆରକୁ ଆଉ ଚୌକିଦାର ସୁଦ୍ଧା ଗଲେ ନାହିଁ । ଥାନା ପକ୍ଷରୁ ତାର ଖୋଜ ଖବର କିଛି ନିଆଗଲା ନାହିଁ । ତେଣେ ଗ୍ରାମବାସୀ କଣ କଲେ ନା, ଅଧର ପିଛା ଗୃହା ଅସୁଲ କରି ଧନ୍ ଦାସର ସକଳ ଅଭାବ ମେଣ୍ଟାଇବାକୁ ଲାଗିଲେ । ତା'ର ପିଲାମାନେ ସ୍କୁଲକୁ ପଢ଼ିବାକୁ ଗଲେ । ତେଣିକି ଦେଖାଗଲା, ଧନ୍ ଦାସ ତା ଦୁଆର ମୁହଁରେ ବସି ଭାଗବତ ଆବୃତ୍ତି କରିବାରେ ଲାଗିଲା—

'ତୁ ନାଥ ପରମ ଦୟାଳୁ
ଦୁଷ୍ଟ ନିବାର ସନ୍ଥ ପାଳୁ ।'

ଏ ଘଟଣାର ବାର ବର୍ଷ ପରେ···ଭାରତ ସ୍ୱାଧୀନ ହୋଇଛି । ସ୍ୱାଧୀନ ଭାରତରେ ଜାତିର ଜାଗରଣ ପାଇଁ ନାନା ଦିଗରେ ଗଠନମୂଳକ କାର୍ଯ୍ୟ ଆରମ୍ଭ ହେଉଛି । ବେକାର ସମସ୍ୟା ଦୂର ପାଇଁ ବହୁ ଲୋକ କାର୍ଯ୍ୟରେ ନିଯୁକ୍ତ ହେଉଚନ୍ତି । ଦେଶର ଅବହେଳିତ, ପରିତ୍ୟକ୍ତ ସଂଗୀତ କଳାର ବିକାଶ ପାଇଁ କେଳା କେଲୁଣୀ ସଙ୍ଗୀତ ଠାରୁ ଆରମ୍ଭ

କରି ଓଡ଼ିଶୀ ଶାସ୍ତ୍ରୀୟ ସଙ୍ଗୀତ ପର୍ଯ୍ୟନ୍ତ ଗୁରୁଆଡ଼େ ଶିକ୍ଷା ଦିଆଯାଉଛି । ପ୍ରାଚୀନ ସାହିତ୍ୟର ଅବଶେଷ ଲୁପ୍ତପ୍ରାୟ, ଲୋକକଥା, ଗୀତମାଳ ସଂଗ୍ରହ କରାଯାଉଛି । ପୁରୁଣା ଶିରା ପ୍ରଶିରାରେ ନୂଆ ରକ୍ତର ସଞ୍ଚାର ହେଉଛି । ଏ ଭିତରେ କେତେବେଳେ ଏଇ ଗଳ୍ପର ନାୟକ ଧନୁ ଦାସ ହଠାତ୍ 'ଧନେଶ୍ୱର'ରେ ପରିଣତ ହୋଇଛନ୍ତି, ଆଉ ସେ ଲାଗି ପଡ଼ିଛନ୍ତି ପ୍ରଚାର କାର୍ଯ୍ୟରେ । ତାଙ୍କର ପିନ୍ଧିବାରେ ଏକ ଗେରୁଆ ବସନ ଓ ହାତରେ ଲମ୍ବା ବାଡ଼ି । ତେଣେ ଗ୍ରାମବାସୀଙ୍କ ସଂଗଠନ ଫଳରେ ତାଙ୍କ ଘରେ ଅବସ୍ଥା ବଦଳି ଯାଇଛି । ମାଟି ବାଡ଼ ଯାଗାରେ ଇଟା କାନ୍ଥ ହୋଇଛି, ଆଉ ସାନ ପୁଅ ଦୁଇ ବର୍ଷ ମାଟ୍ରିକ୍ ଫେଲ ହୋଇ ଭୁବନେଶ୍ୱର ବିଭାଗ ସେକ୍ରେଟେରିଏଟରେ ପ୍ରଚାର ବିଭାଗରେ କାର୍ଯ୍ୟ କରୁଛି । ଲୋକେ କ୍ରମେ ଭୁଲି ଯାଇଛନ୍ତି ଯେ କେବେ ଧନେଶ୍ୱର ଦାସଙ୍କ ନାଁ ଧନୁ ଦାସ ଥିଲା । ଅତୀତର କଥା ଗ୍ରାମବାସୀଙ୍କ ମନରୁ ପାଶୋରି ଯାଉଛି । ସେ ଗାଁର ପନ୍ଦର ଜଣ ସରକାରୀ କର୍ମଚାରୀଙ୍କ ଭିତରୁ ଏବେ ଧନୁ ଦାସଙ୍କ ପୁଅ ଜଣେ ।

ଏ ଘଟଣାର ପ୍ରାୟ ଦେଢ଼ ବର୍ଷ ପରେ ବୟୋବୃଦ୍ଧ ପ୍ରଚାର କର୍ମୀ ବାବୁ ଧନେଶ୍ୱର ଦାସ ଦିନେ ସନ୍ଧ୍ୟାରେ ଘରକୁ ଫେରି ଦେଖନ୍ତି ଥାନାର ପୁଲିସ ଦାରୋଗା ଦୁଇଜଣ କନେଷ୍ଟବଳଙ୍କ ସହିତ ତାଙ୍କ ପିଣ୍ଡାରେ ଆସି ହାଜର ହୋଇଛନ୍ତି । ତାଙ୍କୁ ଦେଖି ରଙ୍ଗମଞ୍ଚର ପରଦା ଉଠିଲା ପରି ଧନେଶ୍ୱର ଦାସଙ୍କ ହୃଦୟ ଭିତରୁ ଏକ ପରଦା ଉଠିଲା । ଦେଖିଲେ ତାହାର ଭିତରେ ସେ ଏକ 'ଧନୁଦାସ' । ସେ ଧନୁ ଦାସର ହାତରେ ପୁଲିସର କଡ଼ା ପଡ଼ୁଛି । ତା ଚାରିପାଖେ ଗାଁର ଆବାଳ ବୃଦ୍ଧ ବନିତା ଘେରି ରହି କିଏ କଣ କହି ଥଟ୍ଟା କରୁଛନ୍ତି । ଭଙ୍ଗା ଘର ଭିତରୁ କବାଟକୁ ଆଉଜେଇ କରି ଜଣେ ବିଷଣ୍ଣମୁଖୀ ଯୁବତୀ ଲୁହ ଛଳ ଛଳ ଆଖିରେ ଚାହିଁଛି । ଆଉ ଦୁଇ ତିନୋଟି ପିଲା ପିଣ୍ଡା ଉପରେ

ଠିଆ ହୋଇ ବାପା ବାପା ବୋଲି କାନ୍ଦୁଚନ୍ତି । ସେତେବେଳେ ସେ ଧନୁ ଦାସ କହୁଚି—"ତୁମ ହୁଅ, ତୁମ ବାପା ଏ ଗାଁ ଲୋକଙ୍କ ପରି ଖରାପ ନୁହେ ସେ କାହାକୁ ଧରେଇ ଦେଇଚି । ତୁମ ମୁହଁରେ ଚୋରୁଣି ଦେବା ପାଇଁ ସେ ପରିଶ୍ରମ କରିଚି । ତୁମକୁ ବଞ୍ଚେଇବା ପାଇଁ ଏ ପୁଲିସଗୁଡ଼ାକ ନାହିଁ କରୁଛନ୍ତି , ମାତ୍ର ଏ ଧନୁ ଦାସ ତାହା ବୁଝିବ ନାହିଁ, ତା ପିଲାଙ୍କୁ ସେ ବଞ୍ଚେଇବ—ତାକୁ ଲୋକେ କହିବେ ଚୋର ? ସେ ଚୋର ନୁହେଁ । ତାର ଦାୱା ହେଉଚି, ଯାହାର ସେ ହାତ ଧରିଚି, ଯାହାଙ୍କୁ ସେ ଜନମ ଦେଇଚି ତାଙ୍କୁ ଖାଇବାକୁ ଦେବା । ତେଣୁ ଭୟ କର ନାହିଁ । ଏ ଧନୁ ଦାସ ଫେରି ଆସିବ ନିକଟରେ ।"

ଧନେଶ୍ୱର ଦାସ ଅର୍ଦ୍ଧନିମୀଳିତ ନେତ୍ରରେ ଉପରକୁ ଗୁହିଁ ଏଇପରି ଭାବରେ ଅତୀତକୁ ଦେଖୁଥିଲେ । ଦେଖି ଦେଖି ସେ ଦୁଆର ମୁହଁରେ ପହଞ୍ଚି ହଠାତ୍ ଅତର୍କିତ ଭାବରେ କହି ପକେଇଲେ—"ତା ହେଲେ ମତେ କଣ ଥାନାକୁ ଯିବାକୁ ପଡ଼ିବ ?" ତାଙ୍କ କଥା ଶୁଣି ଦାରୋଗା ବାବୁ କିଛି ବୁଝି ପାରିଲେ ନାହିଁ । ସେ ତିରିଶି ବର୍ଷ ତଳର ଦାରୋଗା ବାବୁ ନୁହନ୍ତି । ସେ ଏବର ଟୋକା, ସ୍ୱାଧୀନ ଭାରତର କଲେଜ ଫେରନ୍ତା ନୂତନ ପୁଲିସ କର୍ମଗୃଗ୍ୱ । ଭଦ୍ରାମି ଜାଣନ୍ତି କାହାକୁ କପରି କହିବାକୁ ହେବ । ଓଡ଼ିଶା ସରକାରଙ୍କ ପ୍ରଗ୍ଧର ବିଭାଗର ଜଣେ କର୍ମଗୃଗ୍ୱଙ୍କୁ ଯେପରି ବ୍ୟବହାର ଦେଖାଇବା କଥା ସେପରି ଦେଖାଇ ସଂଭ୍ରମର ସହିତ କହିଲେ—"ଆସନ୍ତୁ ଧନେଶ୍ୱର ବାବୁ ! ଗୋଟାଏ କଥା ମୁଁ ବୁଝିବାକୁ ଆସିଥିଲି । ଆପଣଙ୍କ ଅପେକ୍ଷାରେ ବସି ରହିଚି ।"

ଧନେଶ୍ୱର ବାବୁଙ୍କ ମୋହ ଭାଙ୍ଗିଗଲା । ସେ ଉଜ୍ଜ୍ୱଳ ଦିବା-ଲୋକରେ ଦେଖିଲା ପରି ଦେଖିଲେ; ସରକାରଙ୍କର ଜଣେ ବୟୋଜ୍ୟେଷ୍ଠ ପ୍ରଗ୍ଧର କର୍ମୀଙ୍କ ତାଲିକା ଭିତରେ ସେ ଅଛନ୍ତି । ଦିନକେ ତିନିଖଣ୍ଡ ଗାଁ ବୁଲନ୍ତି । ସାତ ଦିନରେ ତିନିଟା ମଭା କରନ୍ତି । ମାସକୁ ପଞ୍ଚସ୍ତରି ଟଙ୍କା ଦରମା ପାଆନ୍ତି—ସେ ନିଜେ ହେଉଚନ୍ତି ବାବୁ ଧନେଶ୍ୱର ଦାସ ।

ଧନେଶ୍ୱର ବାବୁଙ୍କ ଘର ଭିତରେ ଚୌକିରେ ବସି ଟେବୁଲରେ ଗୃ'ଖିଆ ଶେଷ ହେଲା । ଧନେଶ୍ୱର ବାବୁ ଶୁଣିଲେ ଦାରୋଗା ବାବୁଙ୍କ

ମୁହଁରୁ ସେକ୍ରେଟେରିଏଟର ପ୍ରକୃତ ବିଭାଗରୁ ସୂତା ଛୁଞ୍ଚି ପେନସିଲ୍ ତ ଚୋରି ଯାଇଛି, କେତେକ ଚୌକି ଟେବୁଲ ବି ଚୋରିଯାଇଛି । ସେ ଯେଉଁ ଚୌକିରେ ବସି ଯେଉଁ ଟେବୁଲ ଉପରେ ଗୃହା ଖାଇଲେ ସେ ସବୁ କିନ୍ତୁ ସେ ଜିନିଷ ନୁହେ । ତାଙ୍କର ହୃଦ୍‌ବୋଧହେଲା—ସେ ଧନେଶ୍ୱର ବାବୁଙ୍କୁ ସମ୍ମାନରସହିତ ନମସ୍କାର ଜଣାଇ ଗନ୍ତବ୍ୟ ପଥରେ ଫେରିଗଲେ । ତା ପର ସେ ସ୍ଥାନରୁ ଫେରି ତଦନ୍ତର କି ରିପୋର୍ଟ ଦେଇଥିବେ ଜଣା ନାହିଁ; କିନ୍ତୁ ଧନେଶ୍ୱର ବାବୁ ସେଇ ଚୌକିରେ ପୁଅକୁ ପାଖରେ ବସାଇ କହିବାର ଶୁଣାଗଲା—ଆହା ! ଚୋରି କରିବା ବାଟ ଆଜିକାଲି ଏତେ ସହଜ ହୋଇ ପଡ଼ିଛି ! ସେତେବେଳେ ହେଲେ ଏପରି ସମସ୍ୟା ଥାଆନ୍ତା । ଏହା କହି ଗୋଟାଏ ଦୀର୍ଘ ନିଶ୍ୱାସ ପକାଇଲେ ! ! !

# ଓଡ଼ିଶାର ଆତ୍ମା

ସେ ଦିନ ସନ୍ଧ୍ୟା ଆଠଟା କି ସାଢ଼େ ଆଠଟା । ଭୁବନେଶ୍ୱରର ଅନନ୍ତ ଆକାଶ ଉପରେ ଅଗଣିତ ତାରକା ଫୁଟି ହସୁଛନ୍ତି । ତଳେ ବିଜୁଳି ଆଲୁଅ ବିଛେଇ ହୋଇଯାଇଛି । ଗାଡ଼ି ମୋଟର ଶବ୍ଦରେ ବାଟଘାଟ ମୁଖରିତ । ଏହିପରି ସମୟରେ ଜଣେ କିଏ ନବାଗତ ନୂଆ ରାଜଧାନୀର ପ୍ରଥମ ଛକ ପାଖେ ଯାଇ ପହଞ୍ଚିଲେ । ଆଜାନୁଲମ୍ବିତ ବାହୁ, ଗୌର ତନୁ, ମୁଖରେ ଶୁଭ୍ର ଶ୍ମଶ୍ରୁମଣ୍ଡଳ, ଆଖିରେ ଉଜ୍ଜ୍ୱଳ ଜ୍ୟୋତି, ଆଉ, ପରିଧାନରେ ଆଣ୍ଠୁଉଆଁ ମୋଟା ଖଦଡ଼ । ଦେହରେ ଖଣ୍ଡିଏ ହୁଗୁଳା କାମିଜ । ଜଣା ପଡ଼ୁଥିଲା ସେଠାରେ ସେ ସମ୍ପୂର୍ଣ୍ଣ ନୂଆ । ପହଞ୍ଚିବା ମାତ୍ରେ ଚାରିଆଡ଼କୁ ଛନ ଛନ ହୋଇ ଚାହିଁଲେ । ସତେ ଯେପରି ସେ ବାଟ ଖୋଜୁଥିଲେ । ଦେଖିଲେ ଠାଏ ଲେଖାଅଛି—'ଏହି ବାଟ ବିଦେଶୀ ମଦ ଦୋକାନକୁ ।' ସେ ଆଶ୍ଚର୍ଯ୍ୟ ହୋଇ କିଛି ସମୟ ସେହି ଲେଖାକୁ ଚାହିଁ ରହିଲେ । ତାପରେ ଆଗକୁ ଚାଲିଲେ । ଯାଇ ଯାଇ ଠାଏ ଏକ କୋଠି ନିକଟରେ ପହଞ୍ଚିଲେ । ଦେଖିଲେ ସେ ଭିତରେ କେତୋଟି ଲୋକ କୌଣସି ଆଲୋଚନାରେ ଲାଗିଛନ୍ତି । ବେଳେ ବେଳେ ପାଟି ଭୁଣ୍ଡ ବି କରୁଛନ୍ତି । ସେଠାରୁ କିଛି ଖବର ପାଇବା ଆଶାରେ ସେ ହତା ଭିତରକୁ ଯାଇ ଦୁଆର ମୁହଁରେ ଠିଆ ହୋଇ ରହିଲେ । ଶୁଣିଲେ; ସେମାନଙ୍କ କଥା ଭାଷା ଚାଲିଛି—ତୁମେ ତ ଛଅ ବୋତଲ ରଖିବା କଥା, ତେର ବୋତଲ କିମିତି ରଖିଲ ? ଉତ୍ତରରେ ଆଉ ଜଣେ କହୁଛନ୍ତି—ମୋର ଏଠାରେ ଛଅ ବୋତଲ ଥିଲା, ତୁମେ ତୁମ କାରରେ ଆଉ ସାତ ବୋତଲ ଆଣି ଏଠି ରଖି ଦେଇଛ । ତୁମେ ଏତେ କେଉଁଠୁ ଆଣିଲ ? ସେ ବ୍ୟକ୍ତି ରାଗି କରି କହୁଛନ୍ତି—ମୋ ପକ୍ଷରେ ସବୁ ଛୁଡ଼ା ।

ମୋର ଘର ଜାଗାରେ ଗୋଟିଏ ଘର । ସାତ ବୋତଲ ରଖିବା ମୋର ଅଧିକାର ଥିଲେ ମଧ୍ୟ ପ୍ରତ୍ୟେକ ଘରେ ମୁଁ ସାତ ସାତ ବୋତଲ ରଖିପାରେ !

ବୋତଲରୁ ଗ୍ଲାସକୁ ଢଳା ଚାଲିଛି । ପିଆ ଚାଲିଛି । କିଏ ବାନ୍ତି କରୁଛି, କିଏ ନିଜକୁ ସମ୍ଭାଳି ନ ପାରି ଢଳି ପଡ଼ୁଛି । କିଏ ଛେପ ପକାଉଛି, ଆଉ କିଏ ସେ ଛେପକୁ ଚାଟିବାରେ ଲାଗିଛି । କିଏ କାହା ଉପରେ ଘୋଡ଼ା ବସୁଛି । ଏହା ସବୁ କେବଳ ତିନି ଚାରିଜଣଙ୍କ ଭିତରେ ଚାଲିଛି । ଅନ୍ୟମାନେ ଯେ କେତେ ଜଣ ନୀରବ ଦର୍ଶକ ମାତ୍ର ।

ବୃଦ୍ଧ କିଛି ସମୟ ବାହାରେ ଠିଆ ହୋଇ ଟିକିଏ ଆଖି ବୁଜି କ'ଣ ଚିନ୍ତାକଲେ । ତା'ପରେ ଧୀରେ ଧୀରେ ଘର ଭିତରକୁ ପଶି ପ୍ରଶ୍ନ କଲେ—ଏଇଟା କ'ଣ ? ଜଣେ ବିଶାଳବପୁ, ଆରକ୍ତଲୋଚନ, ଦୀର୍ଘବାହୁ, ସ୍ଫୀତ ବକ୍ଷ ବ୍ୟକ୍ତି ଜବାବଦେଲେ—ଏଇଟା ହେଉଛି 'ଓଡ଼ିଶା' । ତୁମେ କିଏ ?

ବୃଦ୍ଧ ବଡ଼ ବିନମ୍ର ଭାବରେ ଉତ୍ତରଦେଲେ—ମୁଁ ? ମୁଁ ହେଉଛି ଓଡ଼ିଶାର ଆତ୍ମା । ତା'ଙ୍କ ମୁହଁରୁ ଏକଥା ବାହାରୁ ନ ବାହାରୁ ସେ ବ୍ୟକ୍ତି ଏପରି ଠୋ ଠୋ ହସି ଉଠିଲେ ଯେ, ଜଣାଗଲା ମନେ ଯେପରି କି ନୂଆ ରାଜଧାନୀର ସମଗ୍ର ସିମେଣ୍ଟ କଂକ୍ରିଟ କୋଠା ଫାଟି ଖଣ୍ଡ ଖଣ୍ଡ ହୋଇଯିବ । ପୁଣି ସେ ତୀବ୍ର ସ୍ୱରରେ ତାଚ୍ଛଲ୍ୟର ସହିତ ପ୍ରଶ୍ନ କଲେ—ଓଡ଼ିଶାର ଆତ୍ମା ? କୁଆଡ଼େ ? କୁଆଡ଼େ ବିଜେ କରିଛନ୍ତି ? ବୃଦ୍ଧ ଅତି ନମ୍ରତାର ସହିତ କହିଲେ—ମୁଁ ଆସିଛି କେତେଜଣଙ୍କୁ ଖୋଜିବାକୁ । ମୁଁ ଖୋଜି ଖୋଜି ସେମାନଙ୍କୁ ପାଉ ନାହିଁ । ସେମାନେ ହେଉଛନ୍ତି ଓଡ଼ିଶାର ଶିକ୍ଷା, ସଭ୍ୟତା, ସଂସ୍କୃତି, ଆଧ୍ୟାତ୍ମିକତା, ଭଦ୍ରତା, ସମ୍ମାନ, ଆଉ ଲଜ୍ଜା । ସେମାନେ ଗଲେ କୁଆଡ଼େ ?

ବୃଦ୍ଧଙ୍କର ଏ ପ୍ରଶ୍ନ ଶୁଣି ଉକ୍ତ ବ୍ୟକ୍ତି ବଡ଼ ନିଷ୍ଠୁର ଭାବରେ ଉତ୍ତରଦେଲେ—ଅନ୍ୟଠି ଖୋଜ, ଏଠି ନାହାନ୍ତି ।

'ଓଡ଼ିଶାର ଆତ୍ମା' ଗୋଟାଏ ଦୀର୍ଘ ନିଶ୍ୱାସ ପକାଇ ଫେରକୁ ଘୂରି ଆସିଲେ । ତାପରେ ନୂଆ ରାଜଧାନୀର ପିଚୁ ରାସ୍ତା ଉପରେ, ଅଧାଡଆର ରାସ୍ତା ଉପରେ ବୁଲି ବୁଲି ପୁଣି ଖୋଜିବାରେ ଲାଗିଲେ । ଯାଉ ଯାଉ ଗୋଟାଏ ବଡ଼ଗଛ ଛକ ନିକଟରେ ଆଉ ଜଣେ ବୃଦ୍ଧଙ୍କ ସହିତ ଦେଖା ହେଲା । ବୃଦ୍ଧଙ୍କର କାନ୍ଧରେ ଚପରାଶିର ଗୁଡ଼ା ଥିଲା । ଏ ପଚାରିଲେ— କହି ପାରିବ କି ଓଡ଼ିଶାର ଶିକ୍ଷା, ସଭ୍ୟତା, ସଂସ୍କୃତି ଆଦି କୁଆଡ଼େ ଯାଇଛନ୍ତି ? ଚପରାଶି ବୁଢ଼ା ଏ ସମସ୍ତଙ୍କ ନାଁ ଶୁଣି ଥକା ହୋଇ ଠିଆ ହୋଇ ପଡ଼ିଲା । କହିଲା—ବାବୁ, ତୁମେ ବୋଧହୁଏ ଏଠାରେ ନୂଆ ଲୋକ । ରାତି ହେଲାଣି ଦଶଟା ଉପରେ । ତୁମେ ଯାହାଙ୍କୁ ଖୋଜୁଛ ସେମାନେ ତ ଆଉ ଏଠାରେ ନାହାନ୍ତି । ତିନି ନମ୍ବର ୟୁନିଟରେ ଥିଲେ, ଏବେ ଚାଲିଗଲେ । ଏତିକି କହି, ନବାଗତ ବୃଦ୍ଧଙ୍କ ପାଖକୁ ଲାଗିଯାଇ ଦାଢ଼ିକୁ ମୁହଁ ଲଗାଇ ଟିକିଏ ନିରୀକ୍ଷଣ କରି କହିଲା—ଆଜ୍ଞା, ଆପଣଙ୍କୁ ମୁଁ କେଉଁଠି ଦେଖିଲା ପରି ମୋର ମନେହେଉଛି । ସେହି ନବାଗତ ବୃଦ୍ଧ କହିଲେ—ହଁ, ହଁ, ଦେଖି ଥାଇପାର । ମାତ୍ର ଆଜି କି ତିରିଶି ବର୍ଷ ତଳେ ଦେଖିଥିବ । ମୁଁ ସେତେବେଳେ ଏ ରାଜ୍ୟରେ ଥିଲି । ମୋ ଲୋକମାନଙ୍କୁ ମୁଁ ଖୋଜିବାକୁ ଆସିଛି । ଜାଣିଥିଲେ କହ ସେମାନେ କୁଆଡ଼େ ଗଲେ ? ଚପରାଶି ବୁଢ଼ା ସେହି ବଜ୍ରଳ ଆଲୁଅ ତଳେ ଛଳ ଛଳ ନେତ୍ରରେ ବାଷ୍ପାକୁଳ କଣ୍ଠରେ ଅତି ବିଚଳିତ ହେଲାପରି କହିଲା—ବାବୁ କାହାକୁ କହିବେ ନାହିଁ, ମୋ ଚାକିରି ଖଣ୍ଡିକ ଚାଲିଯିବ । ସେମାନେ ଏବେ ଏଇ ବାଟେ ଗଲେ ଏଇ ପାହାଡ଼ଆଡ଼େ । କିଛି ଦୂରଗଲେ ଦେଖି ପାରିବ । ଡାକିଲେ ସେମାନେ ଶୁଣି ନ ପାରନ୍ତି । କାରଣ, ସେମାନେ ଏହି ରାଜ୍ୟରୁ ତଡ଼ା ହେଲା ପରି ଚାଲି ଯାଇଛନ୍ତି । ଧରା ପଡ଼ିଲେ ସେମାନଙ୍କୁ ବନ୍ଦୀ କରାଯିବ । ଏହା କହି ଚପରାଶି ବୁଢ଼ା କିଛି ନ ଜାଣିଲା ପରି, କେହି ନ ଦେଖିଲା ପରି ହୋଇ ବାଟେ ବାଟେ ଚାଲିଗଲା । ନବାଗତ ବୃଦ୍ଧ ନିର୍ବାକ ଭାବରେ ଥରେ ଅନନ୍ତ ଆକାଶକୁ, ଥରେ ହାତଗଢ଼ା ସେହି ଖଣ୍ଡ ପୃଥିବୀକୁ ଚାହିଁ କିଛି ସମୟ ସେଠାରେ ଠିଆ ହେଲେ । ତା ପରେ ଚାଲିଲେ ଆଗକୁ ।

ଖଣ୍ଡଗିରିର ନିର୍ବାକ ଚରୁଶ୍ରେଣୀ ନିର୍ଜୀବ ବାଲି, ଗୋଡ଼, ପଥର ପାର ହୋଇ ହୋଇ ସେହି ବୁଢ଼ା ଯାଇ ପହଞ୍ଚିଲେ ଏକ ଗୁମ୍ଫା ନିକଟରେ । ସେ ଭିତରକୁ ପଶିଯାଇ ଦେଖିଲେ—ସେ ଯାହାଙ୍କୁ ଖୋଜୁଥିଲେ ସମସ୍ତେ ସେଇଠାରେ । ତାଙ୍କ ପ୍ରାଣ ଆନନ୍ଦରେ ଗଦ୍‌ଗଦ୍ ହୋଇ ଉଠିଲା । ବିଶାଳ ବାହୁକୁ ମେଲାଇ ସାଙ୍କ ପକାଇବାକୁ ଯାଇ କହିଲେ—ବନ୍ଧୁଗଣ, ତୁମେ ଯେ ଏଠାରେ, ଆଉ ରାଜ୍ୟରେ କିଏ ? ଚାଲ, ଚାଲ, ଓଡ଼ିଶା ଯେ ଧ୍ୱଂସ ହେବାକୁ ଯାଉଛି । ତୁମେ ରକ୍ଷା ନ କଲେ ଆଉ କିଏ ରକ୍ଷା କରିବ ? ସେ କୁଳାଙ୍ଗାରେ କଣ କରିବେ ?

ସମ୍ମାନର ସହିତ ହାତ ଯୋଡ଼ି 'ଶିକ୍ଷା' ଉଠି ଠିଆ ହେଲେ । ବିଶାଳ ଶ୍ମଶ୍ରୁ ନାଭି ମଣ୍ଡଳକୁ ସ୍ପର୍ଶ କରୁଛି, ସମଗ୍ର କେଶଗୁଚ୍ଛ ପାଚି ଯାଇଛି । ବିଜୁଳି ବାହାରିଲା ପରି ଆଖିରୁ ନିଆଁ ବାହାରୁଛି । ସେ ଧୀରେ ଧୀରେ କହିଲେ—ନା, ମୁଁ ଯାଇପାରିବି ନାହିଁ । ସେମାନେ ମୋର ଚୋଟି ଛପି ଦେଇଛନ୍ତି । ମୁଁ ମଣିଷ ଗଢ଼ିବାକୁ ଗଲାବେଳେ, ସେମାନେ ପଶୁ ଗଢ଼ିବାକୁ କହୁଛନ୍ତି । ସେମାନଙ୍କ ଅନ୍ତେ ମୁଁ ଯିବ, ଏବେ ନୁହେଁ ।

ଏହା କହି ସେ ବସୁ ବସୁ 'ସଭ୍ୟତା' ଉଠିଲେ । ତାଙ୍କର ବପୁ ସ୍ୱର୍ଣ୍ଣ । ପରିଷ୍କାର ପରିଚ୍ଛନ୍ନ ପୋଷାକ, କଥା ଅତି ପ୍ରାଞ୍ଜଳ, ଗୃହାଣୀରେ ଧ୍ୟାନ ଛଡ଼ା ଆଉ କିଛି ନାହିଁ । ଗର୍ବ, ଅହଙ୍କାର, ଅଭିମାନ—ସବୁ ସେ ଛାଡ଼ି ଦେଇଛନ୍ତି । ଧୀରେ ଧୀରେ କହିଲେ—ମୁଁ ଯିବାର ବେଳ ଏ ନୁହେଁ । ମୋତେ ସେମାନେ ନିର୍ବାସିତ କରି ଦେଇଛନ୍ତି । ବିଦ୍ୟାଳୟରେ ସେମାନେ ମୋତେ ପଦାଘାତ କରିଛନ୍ତି । ସାମାଜିକ ଜୀବନରେ ଉପହାସ କରିଛନ୍ତି । ତେଣୁ ମୁଁ ସୁଯୋଗକୁ ଅପେକ୍ଷା କରୁଛି ।

'ସଭ୍ୟତା' ବସୁ ବସୁ 'ସଂସ୍କୃତି' ଉଠିଲେ । ଲମ୍ବା ପୋଷାକ, ପାଦରେ ଉପାନହ, ଗଳାରେ ଚଦର, ହାତରେ ପୋଥିପତ୍ର, ଆଉ, ମୁହଁରେ ସତ୍ୟ ଶାନ୍ତ ଅହିଂସାର ଗୃହାଣୀ । ଓଡ଼ିଶାର ଆତ୍ମା ତାଙ୍କୁ ଦେଖି ଆଖି ଛଳ ଛଳ କରିଦେଲେ । ବୃଦ୍ଧ କହିଲେ—ତିରିଶିବର୍ଷ ପରେ ଦେଖୁଛି ତୁମେ ବହୁତ ବଦଳି ଯାଇଛ । 'ସଂସ୍କୃତି' ଉତ୍ତର ଦେଲେ-- ମୁଁ ବଦଳି ନାହିଁ ଆଜ୍ଞା, ମୋତେ ଏମାନେ ବଦଳାଇ ଦେଇଛନ୍ତି ।

ଏମାନଙ୍କ ହାତରୁ ରକ୍ଷା ପାଇବାପାଇଁ ମୁଁ ଆସି ଏ ବଣରେ ଆଶ୍ରୟ ନେଇଛି । ସଙ୍ଗେ ସଙ୍ଗେ 'ଆଧ୍ୟାତ୍ମିକତା' ଉଠିଲେ । ତାଙ୍କର ଆଖିକୁ ଆଉ ଦେଖା ଯାଉନାହିଁ । ସତେ ଯେପରି ଆଶ୍ଚର୍ଯ୍ୟ ହରହର ! କହିଲେ—ଚାଲି ଆସିବା ଛଡ଼ା ଆଉ ଅନ୍ୟ ଗତିନାହିଁ । ସବୁ ଏବେ ମୃତ୍ୟୁ ଆଡ଼କୁ ଚାଲିଛନ୍ତି । ମଦବୋତଲ ସହିତ ଗଞ୍ଜେଇ ଅଫିମର ମହାମିଳନ ଆରମ୍ଭ ହୋଇଛି । ବେଶିଦିନ ରହିବ ନାହିଁ । ସେହି ଦିନକୁ ଅପେକ୍ଷା କରିଛି, ବନ୍ଧୁ !

ତା ପରେ ଉଠିଲେ 'ଭଦ୍ରତା' । କହିଲେ—ଠିକ୍ କରିଛି ମୁଁ ଆଉ ଫେରିବ ନାହିଁ । କାରଣ, ସେଠାରେ ବିଜୟାନନ୍ଦରେ ସେମାନେ ମାତିଛନ୍ତି । ମୋର ସେଠାରେ ସ୍ଥାନ କାହିଁ ? ତାଙ୍କ ପଛେ ପଛେ 'ସମ୍ମାନ' ଉଠି କହିଲେ—ମୁଁ ବିଦାୟ ନେଇ ଚାଲିଆସିଛି । ଗଲେ ସେମାନେ ମୋତେ ମାଡ଼ି ବସିବେ । ମୋର ସମ୍ମାନ ଚାଲିଯିବ । ଶେଷରେ ଗୁମ୍ଫା ଭିତରେ ଏକ କୋଣରେ ଠିଆ ହୋଇଥିବା 'ଲଜ୍ଜା' ଉଠି ଆଉ ବୃଦ୍ଧାଣୀରେ ଚାହିଁ କହିଲେ—ମୋତେ ସେମାନେ ତଡ଼ି ଦେଲେ । କହିଲେ —ଆଉ ତୋର ଆବଶ୍ୟକତା ନାହିଁ । ମୁଁ ବାଧ୍ୟ ହୋଇ ଏମାନଙ୍କ ପଛେ ପଛେ ଏଠାକୁ ଚାଲିଆସିଲି ।

ଓଡ଼ିଶାର ମାନସମ୍ମାନ ଓ ଜାତୀୟତା ଉପରେ ଆଘାତ ଲାଗିଲେ ଉତ୍କଳମଣି ଗୋପବନ୍ଧୁଙ୍କ ଆଖିରୁ ଯେପରି ଝର ଝର ଲୁହ ବହେ, ଠିକ୍ ସେହିପରି 'ଓଡିଶାର ଆତ୍ମା' ସେହି ବୃଦ୍ଧଙ୍କ ଆଖିରୁ ଲୁହ ବହି ଗଣ୍ଡମଣ୍ଡଳ ଓଦା ହୋଇଗଲା ।

ଅଢ଼େଇ ହଜାର ବର୍ଷ ତଳର ସେହି ପ୍ରାଚୀନ ଗୁମ୍ଫା ଭିତରେ ଓଡ଼ିଶାର ଆତ୍ମା ଯେ କାନ୍ଦିଲେ ତାହା ସେଠାରେ ଉପସ୍ଥିତ ଥିବା ଶିକ୍ଷା, ସଭ୍ୟତା, ସଂସ୍କୃତି, ଲଜ୍ଜା ପ୍ରାଣରେ ପ୍ରତିଧ୍ୱନିତ ହେଲା । ଆଶୀର୍ବାଦ କଲାପରି ଓଡ଼ିଶାର ଆତ୍ମା ତାଙ୍କର ଜୀବନ୍ତ ବାହୁ ଯୁଗଳକୁ ଉପରକୁ ଟେକି ବନ୍ଧୁମାନଙ୍କୁ କହିଲେ—ଧୈର୍ଯ୍ୟ ଧର, ବନ୍ଧୁଗଣ, ଆଉ ବେଶିଦିନ ଏ ଅଭିନୟ ଚାଲିବ ନାହିଁ । ଚାଲିଲେ ଏ ଭୂଇଁ, ଓଡ଼ିଶା ହୋଇ ରହିବ ନାହିଁ । ଭ୍ରମରମାନଙ୍କ ସହ ସୁଯୋଗକୁ ମୋତେ ଏଇଠାରେ ହିଁ ଅପେକ୍ଷା କରିବାକୁ ହେବ ।

ସେତେବେଳକୁ ଓଡ଼ିଶାର ନୂଆ ରାଜଧାନୀର ବାଟେ ଘାଟେ ମନ୍ତ୍ରିମଣ୍ଡଳକୁ ରକ୍ଷା କରିବା ପାଇଁ ମିଲିଟାରୀ ପୋଲିସର ପଦଧ୍ୱନି ଶୁଣା-ଯାଉଥିଲା ଏବଂ ତାକୁ ଉପହାସ କଲାପରି ଆକାଶବାଣୀ ଶୁଣାଗଲା—

ଭୂମିକମ୍ପ ହେବ, ଧରଣୀ ଫାଟିବ
ଉଠିବେ ସହସ୍ରଭୁଜା !!!

——※——